ସ୍ୱର୍ଗତ

କେଶବ ଚନ୍ଦ୍ର ନନ୍ଦଙ୍କ

ସ୍ମରଣେ

# ସ୍ମୃତିମାଲ୍ୟ

୨୦୦୬

ସମ୍ପାଦକ

ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀ

ପ୍ରହରାଜ ପ୍ରତିଭା ପୂଜା ପରିଷଦ

ସିଦ୍ଧେଶ୍ୱରପୁର, କଟକ



ଆବିର୍ଭାବ ୨୮.୦୧.୧୯୧୪

ତିରୋଧାନ ୨୪.୦୭.୨୦୦୫

ପ୍ରକାଶକ

**ପ୍ରହରାଜ ପ୍ରତିଭା ପୂଜା ପରିଷଦ**

ସିଦ୍ଧେଶ୍ୱରପୁର, କଟକ

ମୁଦ୍ରଣ

ସଂସାର ପ୍ରେସ୍

ତଳତେଲେଙ୍ଗାବଜାର, କଟକ-୭୫୩୦୦୯

ଫୋନ୍ ୨୪୨୦୦୭୪ ୨୪୨୨୫୯୭



# ସମ୍ପାଦକୀୟ

*"ଅଳ୍ପାନାମପି ବସ୍ତୂନାଂ ସଂହତିଃ କାର୍ଯ୍ୟସାଧିକା,*
*ତୃଣୈର୍ଗୁଣତ୍ୱ ମାପନ୍ନୈ ର୍ବଧ୍ୟନ୍ତେ ମତ୍ତଦନ୍ତିନଃ ।"*

--ଅଳପ ଅଳପ ବସ୍ତୁଗୁଡ଼ିକର ସମଷ୍ଟି କାର୍ଯ୍ୟ ସାଧନ କରେ । ଯେପରି ତୃଣସମୂହରେ ତିଆରି ହେଉଥିବା ଦଉଡ଼ିରେ ମତ୍ତଆଳ ହାତୀଟି ବନ୍ଧା ଯାଇ ପାରୁଛି ।

ଉକ୍ତ ନୀତିବାକ୍ୟ ଆବୃତ୍ତିରେ ଔପଗ୍ରରିକତା ପ୍ରଦର୍ଶନ କରିବା ଗୋଟିଏ କଥା ଏବଂ ଏହାର ଆଦର୍ଶରେ ଅନୁପ୍ରାଣିତ ହୋଇ ଜୀବନରେ ସଫଳ ପ୍ରୟୋଗ କରିବା ଅନ୍ୟ ଗୋଟିଏ କଥା । କର୍ମନିଷ୍ଠ ଲୋକଟିଏ ନଡ଼ିଆ କତାକୁ ପାଣିରେ ପଗ୍ରଇ, ପିଟଣାରେ ବାଡ଼େଇ, ସେଥିରୁ ରୁଆ/ତନ୍ତୁ ବାହାର କରି ଛୁଇଁ ତିଆରି କରିବା ପରେ ସେଗୁଡ଼ିକ ଦ୍ୱାରା ଦଉଡ଼ି ବଳେ । ଆବଶ୍ୟକସ୍ଥଳେ ଉକ୍ତ ଦଉଡ଼ିକୁ ବହୁଗୁଣିତ କରି ବିଭିନ୍ନ କାର୍ଯ୍ୟ ସାଧନ କରାଯାଇଥାଏ । କତା ଦଉଡ଼ି ବା ଅନ୍ୟ ଯେ କୌଣସି ଦଉଡ଼ି ହେଉ, ପ୍ରସ୍ତୁତି ପ୍ରଣାଳୀ ଏକପ୍ରକାର । ଏଗୁଡ଼ିକର ପ୍ରସ୍ତୁତକର୍ତ୍ତା ନୀତି ବାକ୍ୟଟିର ସାର୍ଥକ ବା ସଫଳ ବିନିଯୋଗକାରୀ ଅଟେ । ବିନା ଶ୍ରମରେ ଦାନରେ ବା ଅର୍ଥ ବିନିମୟରେ ମହଜୁଦ୍ କରିଥିବା ଦଉଡ଼ି ମାଲିକ, ପ୍ରସ୍ତୁତକାରୀ ସହିତ ତୁଳନୀୟ ହୋଇପାରିବ ନାହିଁ କିମ୍ବା ଆଦର୍ଶ ଓ ପ୍ରଶଂସାର ପାତ୍ର ମଧ୍ୟ ନୁହେଁ ।

ଶହ ଶହ ବର୍ଷ ଧରି ପରାଧୀନ ଶାସନରେ ଅଣନିଶ୍ୱାସୀ ହୋଇ ଅଭାବନୀୟ ଦୁର୍ଦ୍ଦଶା ଭୋଗୁଥିବା ଦେଶବାସୀଙ୍କର ଦୁଃଖ ଦୂରପାଇଁ ସେ ସମୟର ସ୍ୱାଧୀନଚେତା ତଥା ଗଣତନ୍ତ୍ରପ୍ରେମୀ ଜନନାୟକମାନେ ଅତୁଳନୀୟ ଆତ୍ମୋତ୍ସର୍ଗ କରିଥିଲେ । ଲାଭ, ଲୋଭ, ଭୋଗ, ବିଳାସକୁ ଭ୍ରୁକ୍ଷେପ ନ କରି ସ୍ୱାଧୀନତା ସଂଗ୍ରାମର ପ୍ରଜ୍ୱଳିତ ଅଗ୍ନିରେ ଯେପରି ଝାସ ଦେଇଥିଲେ, ତା'ର ପଟାନ୍ତର ନାହିଁ । ଜାତି, ଧର୍ମ, ବର୍ଣ୍ଣ ସଂପ୍ରଦାୟ, ଭାଷା ନିର୍ବିଶେଷରେ ଗଣଙ୍କୁ ଏକତ୍ର କରି ସମସ୍ତଙ୍କୁ ସ୍ୱାଧୀନତାର ସ୍ୱାଦ

ବଖାଇଦେଲେ । ଦେଶରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା ଦ୍ୱାରା ଉତ୍ତରୋତ୍ତର ଉନ୍ନତି ପଥରେ ଦେଶ ତଥା ଦେଶବାସୀ କ୍ରମଶଃ ଆଗେଇ ଚାଲିଲେ । ଏଇଆ ଥିଲା ସେ ସମୟର ଜାତୀୟ ସ୍ତର କଥା ' କିନ୍ତୁ ସାମାଜିକ ସ୍ତରର ମଧ୍ୟ କମ୍ ଅବଦାନ ନ ଥିଲା । ମୂଳ ମଜବୁତ୍ ନ ଥିଲେ ଫଳ କିପରି ଫଳିଥା'ନ୍ତା ?

ସାମାଜିକ ସ୍ତରରେ ମଧ୍ୟ ସେ ସମୟର ସ୍ୱାଧୀନତା ଆନ୍ଦୋଳନ ଓ ଗଣ ଏକତ୍ରୀକରଣ କାର୍ଯ୍ୟ କତିପୟ ମାନବବାଦୀ ଉଦ୍‌ଯୋଗୀ, ଉତ୍ସାହୀ ଯୁବମାନସରେ ପ୍ରଭାବ ନ ପକାଇଥିବ ବୋଲି ନୁହେଁ । ୧୯୪୭ ମସିହାରେ ଦେଶ ସ୍ୱାଧୀନତା ଲାଭ ପରେ ପରବର୍ତ୍ତୀ ଯୁବପୀଢ଼ି ଉପରେ ଦେଶ ଓ ସମାଜ ଗଠନର ଗୁରୁ ଦାୟିତ୍ୱ ଉତ୍ତର ଦାୟାଦ ସୂତ୍ରେ କ୍ରମାନୁସାରେ ପଡ଼ିଲା । ଦେଶର ସବୁ ଯୁବକମାନେ ଯେ ଦେଶ ଗଢ଼ିବାକୁ ଡେଇଁ ପଡ଼ିଲେ, ତାହା ନୁହେଁ । କୋଟିକରେ ଗୋଟିଏ ଗୋଟିଏ ହାତଗଣତି ମଣିଷପ୍ରେମୀ ଯୁବକ, ଯେଉଁମାନେ କି ଏ ପ୍ରକାର ଦୁଃସାହସ କରିବାକୁ ସମର୍ଥ ହୋଇଥିଲେ । ଏଭଳି ଅଗ୍ନି ପରୀକ୍ଷାର ସମ୍ମୁଖୀନ ହେବା ସହଜ କଥା ନୁହେଁ ।

ଆଉ ମଧ୍ୟ ଦେଶ ପରାଧୀନ ହୋଇଥିବା ସମୟରେ ବିଦେଶୀ ଶାସକ, ରାଜା, ଜମିଦାରମାନଙ୍କୁ ଆୟୁଧ କରି ପ୍ରଜା ଶୋଷଣ କରି ଚାଲିଥିଲେ । ଶୋଷଣ, ଅତ୍ୟାଚାର ସାଙ୍ଗକୁ ପ୍ରାକୃତିକ ବିପର୍ଯ୍ୟୟ ଜନସମାଜକୁ ହା ହତାଶ କରି ଦେଉଥିଲା । ତା' ସାଙ୍ଗକୁ ସଂକୀର୍ଣ୍ଣତାର ବିବିଧତା ବିଚିତ୍ର ବିଦ୍ୱେଷଭାବ ସୃଷ୍ଟିକରି ଜନସାଧାରଣଙ୍କୁ ଭାଗ୍ୟବାଦୀ ହେବାକୁ ବାଧ୍ୟ କରିଥିଲା । ସବୁଠାରୁ ଶୋଚନୀୟ ଅବସ୍ଥା ଥିଲା, ଗ୍ରାମାଞ୍ଚଳ ବାସୀଙ୍କର । ସ୍ୱାଧୀନତା ଲାଭ ପରେ ଜାତୀୟ ସ୍ତରର ନେତା ତଥା ପ୍ରଭାବଶାଳୀ ଧନୀ, ଜମିଦାରମାନଙ୍କର ଦୃଷ୍ଟିକୋଣ, ସ୍ୱପ୍ରଭାବ, ପ୍ରଭୁତ୍ୱ ତଥା ଆତ୍ମବଡ଼ିମା ଆଦି ପ୍ରତିଷ୍ଠା ଦିଗରେ ହେଉ ବା ବଦାନ୍ୟତା ଭିତ୍ତିରେ ହେଉ ବିନିଯୋଗ ହେଉଥିବାରୁ ସହରାଞ୍ଚଳର ବିକାଶ ଘଟୁଥିଲା । ସ୍ଥାନେ ସ୍ଥାନେ ବଦାନ୍ୟ ରାଜା, ଜମିଦାରମାନେ ଜନହିତକର କାର୍ଯ୍ୟ କରିବାକୁ ଆଗେଇ ଆସିଥିଲେ । ଅଜସ୍ର ଅର୍ଥ ନିଜ ରାଜକୋଷ ବା ଜମିଦାରୀରୁ ବ୍ୟୟ କରି ବିଭିନ୍ନ ଅନୁଷ୍ଠାନ ମଧ୍ୟ ଗଢ଼ିଥିଲେ ।

କିନ୍ତୁ ସବୁଠାରେ ତ ରାଜା, ଜମିଦାର ନ ଥିଲେ କିମ୍ବା ଥିଲେ ମଧ୍ୟ ବଦାନ୍ୟତା ନ ଥିଲା । ଏଣୁ ସେ ଅଞ୍ଚଳ ବାସିନ୍ଦାମାନଙ୍କର ଦୁଃଖ-ଦୁର୍ଗତି ଅବର୍ଣ୍ଣନୀୟ ।

ଦୀପତଳ ଅନ୍ଧାର ପରି କଟକ ସହର ତଳି ଅଞ୍ଚଳ କନ୍ଦରପୁର । ସେତେବେଳେ ଏଠାରେ ରାଜା, ଜମିଦାର, ନେତା କେହି ନ ଥିଲେ । ଏଠାରେ ତ ପୁଣି ମଣିଷ ବାସ କରିଛନ୍ତି, ଭୋଟ୍ ଓ ରାଜସ୍ୱ ଦେଉଛନ୍ତି । ଏମାନଙ୍କର କ'ଣ ମଣିଷ ପରି ବଞ୍ଚିବାର ଅଧିକାର ନାହିଁ ? ଯଦି ଅଛି, ସେ ଅଧିକାର ସାବ୍ୟସ୍ତ ହେବ କିପରି ? ଦାନାକନା ଯୋଗାଡ଼ରେ ଦିନରାତି ବ୍ୟସ୍ତ ରହୁଥିବା ଗ୍ରାମବାସୀଙ୍କର ଶିକ୍ଷା-ଦୀକ୍ଷା ବିଷୟରେ ଚିନ୍ତା କରିବାର ମାନସିକତା ତଥା ବେଳ କି ବଳ ନଥିଲା । ସେ ସମୟରେ ଗ୍ରାମାଞ୍ଚଳର ଉନ୍ନତି କହିଲେ, ପ୍ରାୟତଃ ଆର୍ଥିକ ସ୍ୱଚ୍ଛଳତାକୁ ବୁଝାଉଥିଲା । ଏଣୁ ଅଧିକାଂଶ ମାଟିକୁ ଝୁଣିବାରେ ମାତିଥିଲେ ।

ସେହି ସମୟରେ ..... କୃଷ୍ଣପକ୍ଷର ଘନ-ଅନ୍ଧାର ରାତ୍ରିର କୋଳରେ ଆନନ୍ଦଦାୟକ ଏକ ଉଜ୍ଜ୍ୱଳ ଚନ୍ଦ୍ରଲେଖା ଦୃଶ୍ୟମାନ ହେଲା ଅଜ୍ଞାନ ତିମିରାଚ୍ଛନ୍ନ କନ୍ଦରପୁର ଗ୍ରମାଞ୍ଚଳ ଆକାଶରେ । ଏକଶୃନ୍ଦ୍ରସ୍ତମୋହନ୍ତି ନ୍ୟାୟରେ ଦିନକୁ ଦିନ୍ ଆସ୍ତେ ଆସ୍ତେ ସମସ୍ତଙ୍କ ଅଜ୍ଞାତରେ ଅନ୍ଧକାରର ମାତ୍ରା ଯେପରି କମିବାକୁ ଲାଗିଲା । କ୍ରମବର୍ଦ୍ଧିଷ୍ଣୁ ଚନ୍ଦ୍ରକଳା ନିକଟରେ ପାତରଅନ୍ତର ବା· ଭେଦଭାବ ନ ରହିବା ସ୍ୱାଭାବିକ କଥା । ଉତ୍ତପ୍ତ ସୌରରଶ୍ମି, ଶୀତଳ ଚନ୍ଦ୍ରକିରଣ, ଧୀର ସମୀରଣ ସମୀପରେ କୌଣସି ଭେଦଭାବ ନ ଥାଏ । ପରିଷ୍କାର-ଅପରିଷ୍କାର, ସୁଗନ୍ଧ-ଦୁର୍ଗନ୍ଧ, ପବିତ୍ର-ଅପବିତ୍ର ସବୁ ସ୍ଥଳରେ ଅବାରିତ ସେବାପଣ ଜାରି ରହିଥାଏ । ଯେଉଁ ସଚେତନ ଏଗୁଡ଼ିକର ସେବାର ସୁଯୋଗ ନିଏ, ସେ ସୁଫଳ ଲାଭ କରେ ଏବଂ ଅପବ୍ୟବହାରକାରୀ ବା ପ୍ରଦୂଷଣକର୍ତ୍ତା ପ୍ରତାରିତ ହୁଏ ।

ସ୍ୱପ୍ନରେ ସୁଦ୍ଧା ଦିନେ ଭାବି ନଥିବା ବା ଆଶା କରି ନଥିବା ସୁସମ୍ବାଦ ସଞ୍ଚାରିତ ହେଲା ସମସ୍ତଙ୍କ ସମୀପରେ । କୃଷକ, ଗୃହୀ, ଶ୍ରମିକ ଓ ମୂଲିଆ ଏକ ଅସମ୍ଭବ କଥା ଶୁଣିଲେ ନୂଆକରି । ସେତେବେଳେ ଯାହାକୁ ରାଜା, ଜମିଦାର ବା ସରକାର ଗ୍ରହିଁଲେ ସମ୍ଭବ ହୁଏ । ତାହା ହେଉଛି ଉଚ୍ଚ ଶିକ୍ଷାନୁଷ୍ଠାନ ....

ଏ ଅଞ୍ଚଳରେ ରାଜା, ଜମିଦାର ତ ନାହାନ୍ତି । ସରକାରୀ ଦୃଷ୍ଟି ପଡ଼ିବାର ସୁବିଧା ସେପରି ନାହିଁ । ପିଲା ଉଚ୍ଚଶିକ୍ଷା ଲାଭ କରିବାକୁ ବାପ, ମା' ଗ୍ରହୁଁନାହାନ୍ତି । ସମସ୍ତଙ୍କୁ ଡରମାଡୁଛି । କେତେ କୁଆଡ଼େ କାଳେ ଖର୍ଚ୍ଚ ହୋଇଯିବ । ଶିକ୍ଷକ ମିଳିବା କଷ୍ଟକର ବ୍ୟାପାର । ଗଚ୍ଛିତ ଅର୍ଥ କଥା ଛାଡ଼ । ଜମି, ଘର ଠିକ୍ ନାହିଁ । ସବୁ ନାହିଁରେ ଏ ପ୍ରକାର ସାରସ୍ୱତ କ୍ଷେତ୍ର କିପରି ପ୍ରସ୍ତୁତ ହେବ ? କିନ୍ତୁ ଚନ୍ଦ୍ରଲେଖା

ବଢ଼ିବାରେ କେହି ବାଧା ଦେଇ ପାରେ ନା । କ୍ରମବର୍ଦ୍ଧମାନ ଚନ୍ଦ୍ରଲେଖା ପୂର୍ଣ୍ଣଚନ୍ଦ୍ରରେ ପରିଣତ ହେବ ହିଁ ହେବ । ଛାର ଅମା ଅନ୍ଧକାର କେତେ ଦିନ ରହିପାରିବ ?

ଗଣ ଏକତ୍ରୀକରଣର କୌଶଳ ପୋଥିବାଇଗଣ ହୋଇ ରହିଲା ନାହିଁ । ପ୍ରତ୍ୟକ୍ଷରେ ବାଡ଼ି ବାଇଗଣ ହେଲା, କର୍ମନିଷ୍ଠ ସାଧକ ପାଖରେ । କି ଅଦମ୍ୟ ଉଦ୍ୟମ ! ଘରଘର, ଦ୍ୱାରଦ୍ୱାର, ଛୁଆଁ ଅଛୁଆଁ, ସାନବଡ଼, ସର୍ବତ୍ର ସଞ୍ଚାରିତ ହେଲା ଉଚ୍ଚଶିକ୍ଷାନୁଷ୍ଠାନ ଗଢ଼ାହେବ । ମାନ-ଅପମାନ, ନିନ୍ଦା-ପ୍ରଶଂସା, ରାତି-ଦିନ, ବାଛ ବିଗ୍ଭର ରହିଲା ନାହିଁ କର୍ମନିଷ୍ଠ ପାଖରେ । ଗ୍ଭଲିଲା ଗ୍ଭନ୍ଦା ଆଦାୟ ଅଭିଯାନ ସହିତ ଛଣ-ବାଉଁଶ, ପିଲା-ଶିକ୍ଷକ ଯୋଗାଡ଼ । ସାମାଜିକ ସ୍ତରରେ ଗଣଙ୍କୁ ଏକତ୍ରୀକରଣ କରିବା ସହିତ ସାରସ୍ୱତ ସମ୍ପଦ ଅର୍ଜନର ଆଧାରକୁ ଉନ୍ନତି ପଥରେ ଆଗେଇ ନେବାର ପ୍ରତ୍ୟକ୍ଷୀଭୂତ ପ୍ରମାଣ ।

*ପରିବର୍ତ୍ତିନି ସଂସାରେ ମୃତଃ କୋବା ନ ଜାୟତେ ?*
*ସ ଜାତୋ ଯେନ ଜାତେନ ଯାତି ବଂଶଃ ସମୁନ୍ନତିମ୍ ।।*

ମଧ୍ୟବିତ୍ତ ପରିବାରରେ ଜନ୍ମ ହୋଇ ବନ୍ଧୁ ପାରିବାରିକ ସମସ୍ୟାର ସମ୍ମୁଖୀନ ସବୁ ସମୟରେ ହେବା ସ୍ୱାଭାବିକ କଥା । ତା'ସତ୍ତ୍ୱେ ବିଭିନ୍ନ ଗତି, ମତି, ପ୍ରକୃତି ଓ ସ୍ଥିତିର ଗଣଙ୍କୁ ଏକତ୍ରୀକରଣ କରି ସେମାନଙ୍କର ସହାନୁଭୂତି ଓ ସମର୍ଥନସୂଚକ ସାହାଯ୍ୟ ସହଯୋଗରେ ମଣିଷ ଜୀବନର ସର୍ବଶ୍ରେଷ୍ଠ ସାରସ୍ୱତ ସମ୍ପଦ ପ୍ରାପ୍ତିର ସହଜ ସୁବିଧା ସୃଷ୍ଟିରେ ସହାୟକ ହୋଇ ସମସ୍ତଙ୍କ ସ୍ମୃତିରେ ସବୁଦିନ ପାଇଁ ସାଇତା ହୋଇ ରହିଗଲେ ସେହି ସାରସ୍ୱତପ୍ରେମୀ, ଯାହାଙ୍କ ସମ୍ମାନ ପାଇଁ ଏହି "ସ୍ମୃତିମାଲ୍ୟ" ଅର୍ପିତ ହୋଇଛି ।

*ଜୟ ତୁ ଉତ୍କଳ ଜନନୀ,*
*ଯୋଗ୍ୟପୁତ୍ର ପ୍ରସବିନୀ ।*



ଯେଉଁମାନେ

ସ୍ମୃତିଗ୍ରନ୍ଥ

କରିଛନ୍ତି .......



ସମ୍ପାଦକୀୟ

# ପ୍ରିୟ ପ୍ରତ୍ୟାଶା

✦ ଶ୍ରୀ କାଳୀ ପ୍ରସାଦ ମହାପାତ୍ର

ଜ୍ଞାନୀ, ଗୁଣୀ, ଉଦାର ତଥା ଅସାଧାରଣ ବ୍ୟକ୍ତିତ୍ୱସମ୍ପନ୍ନମାନଙ୍କୁ ଏ ସମାଜ ଯଥୋଚିତ ସମ୍ମାନ ଦେଇ ଆସିଛି । ଏ ପରମ୍ପରା ସମାଜର ବହୁ ପ୍ରାଚୀନ । ଅତି ସାଧାରଣ ବ୍ୟକ୍ତିର ମୃତ୍ୟୁରେ ତା'ପାଇଁ ଆହା ଟିକିଏ ଉଚ୍ଚାରଣ କରିବା ବା ଶେଷ ନମସ୍କାରଟିଏ କରିବା ମଧ୍ୟ ଦିବଂଗତ ଆତ୍ମା ପ୍ରତି ସ୍ମରଣ ତଥା ସ୍ମୃତିଗ୍ରହଣର ଗୋଟିଏ ଗୋଟିଏ ଛୋଟ ନମୁନା ।

ଏହି ପ୍ରକ୍ରିୟା ଅଧୁନା ସମାଜରେ ଏବେ ନାନା ଆଖିଦୃଶିଆ ରୂପ ନେଇଛି । କାହା ପାଇଁ ତିଳତର୍ପଣ ତ କାହାପାଇଁ ସ୍ମୃତିଗ୍ରହଣ, ଆଉ କେଉଁଠାରେ ଶୋକସଭା ଆଦି ପର୍ବରେ ପାଳିତ ହେଉଛି । ଏସବୁ ଅବଶ୍ୟ କରଣୀୟ । ଏହାକୁ କେହି ବି ବିରୋଧ କରିବା ଉଚିତ୍ ନୁହେଁ । ବରିଷ୍ଠଙ୍କୁ ପୂଜା ଆମ ସମାଜର ଏକ ସୁନ୍ଦର ବିଧାନ ତଥା ସାଂସ୍କୃତିକ ପରମ୍ପରା । ତେଣୁ ପୂଜ୍ୟର ପୂଜା ହେବା ସର୍ବସମ୍ମତ ଓ ସଂସ୍କୃତିସମର୍ଥିତ ।

ଉପରୋକ୍ତ ଏତେସବୁ କର୍ମକାଣ୍ଡ ଭିତରେ ଗୋଟିଏ ଛୋଟକଥା ମନକୁ ଆସେ । ସ୍ମୃତିଗ୍ରହଣ ମଞ୍ଚରେ ଅତିଥି ବକ୍ତାମାନେ ସ୍ୱର୍ଗତ ଆତ୍ମାର ଜୀବନ ଚିତ୍ର ବର୍ଣ୍ଣନା କରି ବିଦଗ୍ଧ ହୋଇଉଠନ୍ତି । ଅତିଶୟ ଭାବପ୍ରବଣତା, ବାଷ୍ପାକୁଳତା ସେମାନଙ୍କ ବକ୍ତବ୍ୟର ସ୍ୱର ସାବଲୀଳତାକୁ ତଥା ସୁଶ୍ରବଣୀୟତାକୁ ବିକୃତ କରେ । ଅପରପକ୍ଷେ ଶ୍ରୋତା ମହଲରେ ଅନୁରୂପ ଭାବାବେଗ ମଧ୍ୟ ପରିଲକ୍ଷିତ ହୋଇଥାଏ । ମନେହୁଏ ବିଦାୟୀ ଆତ୍ମାର ଅଧୁରା କାମମାନ ଏହି ବିଧୁରମାନଙ୍କ ଦ୍ୱାରା ପୂରଣ ହେବ । ସମାଜରୁ ସେମାନେ ସରିଯିବେନି । କିନ୍ତୁ ଦେଖାଯାଏ, ସେ ସବୁ ମଞ୍ଚର ଏକ ସୁନ୍ଦର ନାଟକମାତ୍ର । ବକ୍ତାମାନଙ୍କ ବିଦଗ୍ଧ ଅଭିଭାଷଣ ତଥା ନିଜକ ଅନ୍ୟ

ବକ୍ତାମାନଙ୍କଠାରୁ ଉତ୍କୃଷ୍ଟଭାବେ ପ୍ରତିପାଦନ କରାଇବାର ବାକ୍-ବଳ ପ୍ରତିଯୋଗିତା, ଅଭିଭାଷଣାଦି ସେହି ମଞ୍ଚରୁ ଓହ୍ଲାଇଲା ବେଳଠୁଁ ହିଁ ମିଳାଇଯାଇଥାଏ । ତା'ପରେ 'କାଣିଆ କପିଳା'ର ଭେଟ ନଥାଏ । କର୍ମକୁଣ୍ଠ, ବେକାର, ଅଘରୀ କେତେଜଣ ଯୁବକ ସାମୟିକ ଆତ୍ମସ୍ଫୀତି ଓ ଆତ୍ମୋଲ୍ଲାସରେ ସ୍ମରଣିକାଟିଏ ପାଇଁ— ସେହିପରି ସମାଜ ସେବା, ସାହିତ୍ୟ ସାଧନା ରୋଗରେ ରୋଗିଣା ଆଉ କେତେଟାଙ୍କୁ ଧରି ବାରଦ୍ୱାର ଶୁଣ୍ଢିପିଣ୍ଡା ହୁଅନ୍ତି ।

ଯାହାହେଉ ଆଜି ସମାଜସେବୀ ସ୍ୱର୍ଗତ କେଶବଚନ୍ଦ୍ର ନନ୍ଦଙ୍କ ଜୀବନୀକୁ ନେଇ ସ୍ମରଣିକାଟିଏ ପ୍ରକାଶ ପାଇବାକୁ ଯାଉଥିବା ଅବସରରେ ମନରେ ଅପାର ଆନନ୍ଦ ଅନୁଭବ କରୁଛୁ । ସମସ୍ତଙ୍କ ମୁହଁରେ ସ୍ୱର୍ଗତ ନନ୍ଦମହାଶୟ ଜଣେ ପ୍ରବଳରୁ ପ୍ରବଳ ଆତ୍ମବିଶ୍ୱାସୀ, ଏକାଗ୍ରନିବିଷ୍ଟ କର୍ମାନୁରାଗୀ, ଜଣେ ଶିକ୍ଷୋଦ୍ୟୋଗୀ, ଅପରାହତ ଉଦ୍ୟମୀ । ଅଧିକନ୍ତୁ ଗୋଟି ଗୋଟି ଅନୁଷ୍ଠାନ ରୋପିବାରେ ସର୍ବଶୁଭ ଲକ୍ଷଣଯୁକ୍ତ ଜଣେ ଯତ୍ନଶୀଳ ମାଳୀ । ସେତୁବନ୍ଧ ବାନ୍ଧିବାରେ ନିୟତ, ବ୍ୟାପୃତ ଗୋଟେ ଉତ୍ସର୍ଗୀ-ମୂଷିକ । ସର୍ବୋପରି ଜଣେ ସର୍ବୋପକାରୀ ଓ ଅଞ୍ଚଳ-ମଙ୍ଗଳ ଚିନ୍ତକ । ଯଦିଓ ବ୍ୟବସାୟ ଆସ୍ଥାନରୁ କି ଉଚ୍ଚ ପିଣ୍ଡା ଉପରୁ ହାତଟେକି ସୁଉକିଏ କି ଅଧୁଲିଏ, କୋଉ ଭିକାରୀକୁ ଫିଙ୍ଗିବାର ବାଦାନ୍ୟ ଚିତ୍ରରେ ତାଙ୍କୁ କେହି କେବେ ଦେଖିନାହିଁ । ଗାନ୍ଧି ଆଦର୍ଶର ସେ ଜଣେ ଛଳଶୂନ୍ୟ କର୍ମଠ ସମାଜ ଚିତ୍ରକର । ଅସୁମାରି ଅନୁଷ୍ଠାନର କାରିଗର । ମାତ୍ର କିଏ କେତେ ମାତ୍ରାରେ ତାଙ୍କ ଅସାଧାରଣ ଆଦର୍ଶଚୟକୁ ଗ୍ରହଣ କରିପାରିଛି, ତାହା କେବଳ ସେହିମାନଙ୍କ କର୍ମଧର୍ମ ହିଁ କହିବ, ଯଦି ସେମାନେ ନିଜ ବିବେକ ପାଖରେ ଉପସ୍ଥାପନ କରିପାରୁଥିବେ । ଆଦର୍ଶ କଥା କହିବା ଓ ଆଦର୍ଶମୟ ଜୀବନଯାପନ କରିବା ଭିତରେ କେତେ ତଫାତ୍, ତାହା କ୍ଷଣେମାତ୍ର ଚିନ୍ତା କରିବାର ଅବକାଶ ଯିଏ ନେଇଥିବ ସେହି ତ ଜାଣିଥିବ ସେ ଦୁଇଟା ଭିତରେ ବ୍ୟବଧାନ କେତେ । ଆତ୍ମବ୍ରୀଡ଼ାରେ, ପରାଜୟ ଭୟରେ ସେ କେବେ ବି ଜଣେ ଆଦର୍ଶବାଦୀ ବୋଲି କହିପାରିବ ନାହିଁ, ଯଦି ସତରେ ସେ ଆଦର୍ଶରେ ଜୀବନ ବିତାଉ ନଥିବ । (ଯେଉଁଟାକି ଆଜିକାଲି ଶତ ପ୍ରତିଶତ କହି ବୁଲୁଥିବା ଲୋକଙ୍କ ପାଖରେ ଦେଖାଯାଇଥାଏ) । ସ୍ୱର୍ଗତ ନନ୍ଦ ମହୋଦୟ ସ୍ୱାର୍ଥ, ପଦପଦବୀର ତୁଚ୍ଛ ମୋହ ଇତ୍ୟାଦିରୁ ବହୁ ଦୂରରେ ଥିଲେ । ଶିକ୍ଷାରହିତ ଅମାର୍ଜିତ ଏ ଅନ୍ଧାରି ମୂଲବରେ ଆଲୋକର ଦୀପଟିଏ ଜାଳିବାପାଇଁ ସେ ସୋମପୁର

ଠାରୁ ବିରିବାଟୀ, ବମ୍ଭୁରା ମହୁରା ଠାରୁ ଅଲାଣ୍ଡୋ ବିରିଡ଼ି ପର୍ଯ୍ୟନ୍ତ କାନ୍ଧରେ ଝୁଲା ପକାଇଥିଲେ । ବାଉଁଶ କାନ୍ଧେଇ ନଡ଼ା ମୁଣ୍ଡେଇଥିଲେ । ପିଲାଙ୍କୁ ସାଙ୍ଗରେ ନେଇ ଗହିର ଗହିର ବୁଲୁଥିଲେ । ଏ ଥିଲା ତାଙ୍କ ସମାଜସେବାର ଦେହଲଗା ଚିତ୍ର । ପ୍ରତିଷ୍ଠିତ ସମ୍ଭ୍ରାନ୍ତ ପରିବାରରେ ଜନ୍ମ ହୋଇ ସେ ପ୍ରତିଦିନ ତାଙ୍କ ବିଲବାଡ଼ିର କାମକୁ ଖାଲି ମୂଲିଆଙ୍କ ଉପରେ ଛାଡ଼ି ଦେଉନଥିଲେ । ଲଙ୍ଗଳରେ ପିଚିକିଳା ହୁଗୁଳି ଥିଲେ ଲଙ୍ଗଳକୁ କାନ୍ଧରେ ପକାଇ ବଢ଼େଇ ଦୁଆରେ ପହଞ୍ଚି ଯାଉଥିଲେ । ଗୋବର ଗାଣ୍ଡୁଆକୁ ମୁଣ୍ଡରେ ମୁଣ୍ଡାଇ ଗାଁ ଦାଣ୍ଡରେ ନିଃସଙ୍କୋଚରେ ଚାଲିବାର ଲୋକେ ତାଙ୍କୁ ଦେଖିଛନ୍ତି । ସାନ୍ନିଧ୍ୟରେ ଆସିଥିବା ଲୋକଙ୍କ ଠାରୁ ତାଙ୍କ ନିରଳସ ନିଃସଙ୍କୋଚ ତଥା ସମୟାନୁବର୍ତ୍ତୀ ଶ୍ରମପ୍ରୀତି ସମ୍ବନ୍ଧରେ ବହୁ କଥା ଶୁଣିବାକୁ ମିଳେ, ଯାହା ଆଜିର ତଥାକଥିତ ଶିକ୍ଷିତ ଯୁବକ ତଥା ବୟସ୍କ ବୁଦ୍ଧିଜୀବୀମାନଙ୍କ ପାଖରେ କ୍ୱଚିତ୍ ଦେଖିବାକୁ ମିଳେ ।

ତେବେ ପ୍ରଶ୍ନଉଠେ, ସ୍ମରଣିକା ଦେଇ ସ୍ମୃତିଚାରଣର ଉଦ୍ୟମରେ ସମାଜସେବୀ ସ୍ୱର୍ଗତ ନନ୍ଦଙ୍କ ଆଦର୍ଶ ଆମ୍ଭର ଏ ବିଦଗ୍ଧ ମନତଳେ କେତେ ଛଳଶୂନ୍ୟ ଜମାଟ ବାନ୍ଧି ପାରିଛି, ଯାହା ସମାଜକୁ ନ ହେଲେ ବି ଆମ ନିଜର ଦୈନନ୍ଦିନ ଜଞ୍ଜାଳକୁ ତୁଲାଇବାରେ କମ୍ ସହାୟକ ହେବନାହିଁ ।

ମହତ ବ୍ୟକ୍ତିମାନଙ୍କ ସ୍ମୃତିଚାରଣ ସ୍ମରଣିକା ପ୍ରକାଶନ ସମାଜରେ ସୁସ୍ଥ ପରମ୍ପରାକୁ ଜିଆଁଇ ରଖାଇବାରେ ଏକ ଅତ୍ୟାବଶ୍ୟକ କାର୍ଯ୍ୟକ୍ରମ । ଏହାଦ୍ୱାରା ବ୍ୟକ୍ତି ତଥା ସମାଜ ସ୍ୱସ୍ଥିତି ତଥା ଅଗ୍ରଗତିର ସତର୍କ ସଜାଗ ସମୀକ୍ଷା ପାଇଁ ମହନୀୟ ଏ ସମସ୍ତ ଅନୁଷ୍ଠାନକୁ 'ବତୀଘର' ତୁଲ୍ୟ ଦୃଷ୍ଟିରେ ରଖି ନିଜକୁ ପ୍ରତି ପଦକ୍ଷେପରେ ତଉଲୁଥାଏ । ଆଉ ନିଜ ଜାଣତ ବା ଅଜାଣତରେ କେବଳ ସୁସ୍ଥ ସଂଯତ ସୁରକ୍ଷିତ ହୋଇ ଚାଲୁଥାଏ । ତେଣୁ ଏ ପ୍ରକାର ଉଦ୍ୟମ କମ୍ ପ୍ରଶଂସାର୍ହ ନୁହେଁ । ଅବଶ୍ୟ ଏ ପ୍ରକାର କାର୍ଯ୍ୟକ୍ରମର ଦୃଷ୍ଟାନ୍ତ ଆଜିକାଲି ରାଶି ରାଶି ପରିଦୃଷ୍ଟ । ମାତ୍ର ସେ ସବୁ ଅନୁଷ୍ଠାନର ବିଜ୍ଞାପିତ ଲକ୍ଷ୍ୟ ଅଭିମୁଖ୍ୟ ବାସ୍ତବ କ୍ଷେତ୍ରରେ ବିଡ଼ମ୍ବିତ ତଥା ଅନନୁସୃତ ହେଉଥିବା ଦେଖିଲେ ଆଘାତ ଲାଗେ ।

ଭାଷାଭୂଷାର ଅଧୁନା ସମାଜର ବହୁରୂପୀ ଏ ମଣିଷ, ଯେମିତି ତା ନିଜ ଭିତର ବାହାରକୁ ନେଇ ନିଜେ ଖୁବ୍ ଭୟାର୍ତ୍ତ । ଶିକ୍ଷକ, ଡାକ୍ତର, ଯନ୍ତ୍ରୀ, ମନ୍ତ୍ରୀ,

ନେତା, ସେବକ, ଲେଖକ, ପାଠକ, ଭକ୍ତ, ପ୍ରବଚକ ସମସ୍ତେ ଯେମିତି ନିଜ ନିଜର ମୌଳିକ ସଂଜ୍ଞା ଦେବାରେ ଭୀତଶଙ୍କିତ । ନିଜକୁ ସଚ୍ଚୋଟ ସତ୍‌ବ୍ୟକ୍ତିଟିଏ କହିବାକୁ ସେ ଯେମିତି ମୂହୁର୍ମୂହୁ ଝୁଣ୍ଟି ପଡୁଛି ତା' ନିଜ ପାଖରେ, ତା' ଭିତରେ ଦିବ୍ୟଚେତନା— 'ବିବେକ' ପାଖରେ ।

ତେଣୁ ଆଜିର ଏ 'ସ୍ମରଣିକା' ଉଭୟେ ଲେଖକ ପାଠକଙ୍କୁ ସଂଶୋଧନ କରାଇବାର ତଥା ତୁଳି ତଉଲି ଠିକଣା ମଣିଷଟିଏ କରାଇବାରେ ସରଳ ଚେତା-ବନିଟିଏ ନୁହେଁ କି ? ତା ହେଲେ ସ୍ୱର୍ଗତ ନନ୍ଦଙ୍କ ଆତ୍ମା ଶାନ୍ତିରେ ସ୍ୱର୍ଗାବସ୍ଥାନ କରିପାରୁଥିବ ବୋଲି ବୁଝିବାକୁ ହେବ । ସେହି ସୁଯୋଗ ସୃଷ୍ଟିକରି ତାଙ୍କ ଉଦ୍ଦେଶ୍ୟରେ ଏ ସ୍ମରଣିକା ଆଜି ଆମ ହାତମୁଠାରେ ।

କହିବା ବାହୁଲ୍ୟ ଯେ କେଇ ପୃଷ୍ଠା କାଗଜର ଏ 'ଜୀବନଚିତ୍ର' ହୁଏତ କେତେ ମୂହୂର୍ତ୍ତପରେ ଅପସୃତ, ଅନାଦୃତ, ପରିତ୍ୟକ୍ତ ହୋଇ ଅଲୋଡ଼ା ଅଖୋଜାରେ ଧୂଳିମାଟିର ଧରାରେ ନିଶ୍ଚିହ୍ନ ହୋଇଯିବ । ମାତ୍ର ଯେତେଦିନ ପର୍ଯ୍ୟନ୍ତ ଗୋପାଳସ୍ମୃତି ବିଦ୍ୟାପୀଠ, ଚିନ୍ତାମଣିସ୍ମୃତି ବାଳିକା ବିଦ୍ୟାମନ୍ଦିର ଆଉ କନ୍ଦରପୁର ମହାବିଦ୍ୟାଳୟ ଅବିଭକ୍ତ କଟକ ଜିଲ୍ଲାର ଦୋସମାଳିରେ ଠିଆ ହୋଇ କଟକ-ଜଗତ୍‌ସିଂହପୁର-କିଶୋର ନଗର ନିର୍ବାଚନ ମଣ୍ଡଳୀର ଅଗଣିତ ଶିକ୍ଷାନୁରାଗୀ ଛାତ୍ରଛାତ୍ରୀଙ୍କୁ ଆପଣାର ସାରସ୍ୱତ କାନିରୁ ଅସରା ସ୍ନେହ ସୋହାଗ ବାଣ୍ଟୁଥିବ, ସେତେଦିନ ପର୍ଯ୍ୟନ୍ତ ସ୍ୱର୍ଗତ ନନ୍ଦଙ୍କ ଆତ୍ମା-ଜ୍ୟୋତିଷ୍କ ଏ ଅଞ୍ଚଳବାସୀଙ୍କ ହୃଦୟାକାଶରେ ବିମଳ ମଣ୍ଡଳଟିଏ ହୋଇ କୋଟି କଣ୍ଠରୁ 'ଆହା' ଆଶୀର୍ବାଦରେ ଧ୍ରୁବତ୍ୱ ଲଭୁଥିବ ।

*ପୁରାତନ ଛାତ୍ର*
*'ସଭାପତି', ପ୍ରହରାଜ ପ୍ରତିଭାପୂଜା ପରିଷଦ,*
*ସିଦ୍ଧେଶ୍ୱରପୁର, କଟକ*



# କଥାଟିଏ କହୁଁ

✦ ଶ୍ରୀ ବଟକୃଷ୍ଣ ମିଶ୍ର

ଏଣିକି ଶୁଣିଲେ ଆପଣ ନିଶ୍ଚୟ ପଚ୍ଚରିବେ—"କିସ କଥା ହୋ ବାବୁ ! ସାହାଡ଼ା ସୁନ୍ଦରୀ କଥା କି କଲୁରିବେଣ୍ଟ କଥା ?"

ମୋ'ର ଉତ୍ତର ହେଲା— ନାଇଁ ଆଜ୍ଞା, ନା, ମୁଁ ଯାହା କହିବାକୁ ଯାଉଛି ସେଇଟା କଳ୍ପନାପ୍ରସୂତ ମନଭୁଲାଣିଆ କାହାଣୀ ନୁହେଁ । ବ୍ୟକ୍ତିବିଶେଷଙ୍କ ସଂସ୍ପର୍ଶରେ ଆସି ଶୁଣିଥିବା ଓ ଦେଖିଥିବା କେତୋଟି ବାସ୍ତବ ଘଟଣାର କାହାଣୀ— ଅନ୍ୟ ଭାଷାରେ କହିଲେ, ଏକପ୍ରକାର ଅଙ୍ଗନିଭା କଥା ।

ବ୍ୟକ୍ତିଜଣକ ଅନ୍ୟ କେହି ନୁହଁନ୍ତି, ଆପଣଙ୍କ ସୁପରିଚିତ କେଶବବାବୁ । ସିଦ୍ଧେଶ୍ୱରପୁର ସଂଲଗ୍ନ କମାପୁର ନିବାସୀ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ ।

ଆରମ୍ଭରୁ କେଶବବାବୁ ଥିଲେ ଏକ ଭିନ୍ନ ଧରଣର ମଣିଷ । ଅର୍ଥ ଉପାର୍ଜନ ଦ୍ୱାରା ନିଜକୁ ସୁପ୍ରତିଷ୍ଠିତ କରିବା ତାଙ୍କର ଏକମାତ୍ର ଆକାଂକ୍ଷା ନ ଥିଲା । ଆଞ୍ଚଳିକ ସୁବିଧା ଅସୁବିଧା ପ୍ରତି ନଜର ରଖି ଯଥାସାଧ୍ୟ ଜନସାଧାରଣଙ୍କ ଉନ୍ନତି ବିଧାନ ପାଇଁ ସେ ସର୍ବଦା ଆଗ୍ରହୀ ଥିଲେ ।

ବର୍ତ୍ତମାନ ଶିକ୍ଷିତ ବେକାରଙ୍କ ସଂଖ୍ୟା ଅସମ୍ଭବ ଭାବରେ ବୃଦ୍ଧି ପାଇଲାଣି । ସରକାରୀ ଚାକିରିଟିଏ ପାଇବା କଷ୍ଟକର । ପରାଧୀନ ଭାରତରେ ନିଜ ଜୀବନର ପ୍ରାୟ ଏକ ତୃତୀୟାଂଶ ବିତାଇଥିବା କେଶବବାବୁ ଗୋଲାମଗିରି କରିବାକୁ ଶ୍ରେୟସ୍କର ମଣୁ ନ ଥିଲେ, ଯଦିଓ ସେତେବେଳେ ସ୍ୱଳ୍ପଶିକ୍ଷିତ ବ୍ୟକ୍ତି ସରକାରଙ୍କ ବିଭିନ୍ନ ବିଭାଗରେ ନିଯୁକ୍ତି ପାଇ ପାରୁଥିଲେ ଅନାୟାସରେ ।

ସେ ଥିଲେ ଉଦ୍ୟୋଗପ୍ରେମୀ । କଲେଜରେ ପାଠ ପଢ଼ିବା ସମୟରେ

ଖଣ୍ଡିଏ ପୁରୁଣା ବସ୍ ଯୋଗାଡ଼ କରି ସର୍ବସାଧାରଣଙ୍କ ଯାତାୟାତ ପାଇଁ ବ୍ୟବସ୍ଥା କରିଥିଲେ । ଅବଶ୍ୟ ଅଳ୍ପ ସମୟ ମଧ୍ୟରେ ବସ୍‌ଟି ଧୋକା ଦେଲା । କ୍ଷତି ବଢ଼ି ଚାଲିଲା । ସୁତରାଂ ଅନ୍ୟକିଛି ଆରମ୍ଭ କରିବାର ଅଭିଳାଷ ନେଇ ସେ କଲିକତା ପଳାଇଗଲେ । ସେଠାରେ କିଛିଦିନ ରହି ସାବୁନ କାରଖାନା ସ୍ଥାପନ କଲେ । ଆରମ୍ଭରୁ ସୁନାମ ଅର୍ଜନ କରି ମଧ୍ୟ କେତେକ କର୍ମଚାରୀଙ୍କ ଦୁର୍ନୀତି ଯୋଗୁ କ୍ଷତି ସହିବାକୁ ପଡ଼ିଲା ଓ ଶେଷରେ କାରଖାନା ବନ୍ଦ ହୋଇଗଲା ।

ଏ ଦୁଇଟି ମୋର ଶୁଣା ଘଟଣା । କିନ୍ତୁ ତାଙ୍କ ବାହାର ବାରଣ୍ଡାରେ ପଡ଼ିଥିବା ଭଙ୍ଗା ବସ୍‌ର କେତେକ ଯନ୍ତ୍ରାଂଶ ଓ ଘରେ ଜମା ହୋଇଥିବା ସାବୁନ କାରଖାନାର ପ୍ରଚାରପତ୍ର ମୁଁ ନିଜ ଆଖିରେ ଦେଖିଛି ।

ଦୁଇଟିଯାକ ଉଦ୍ୟୋଗରେ ବିଫଳ ହେବାରୁ ଆତ୍ମୀୟ ଓ ସାଙ୍ଗସାଥୀଙ୍କ ଘନଘନ ପ୍ରରୋଚନାରେ ବାଧ୍ୟ ହୋଇ ଶେଷକୁ ସରକାରୀ ଚାକିରିରେ ଯୋଗ ଦେଇଥିଲେ । ଚାକିରିଟି ଥିଲା ଅବକାରୀ ବିଭାଗର ସହ-ପରିଦର୍ଶକ ପଦବୀ (Sub-Inspector) ।

ପ୍ରୋକ୍ତ ବିଭାଗର ଅନ୍ୟ ଅନେକ କର୍ମକର୍ତ୍ତାଙ୍କ ପରି ଅସଦୁପାୟରେ ଅର୍ଥ ଅର୍ଜନ କରିବା ପ୍ରବୃତ୍ତି ତାଙ୍କର ନ ଥିବାରୁ ସାଧାରଣ ଭାବରେ ନିଜର ଖର୍ଚ୍ଚ ଚଳାଇବା କଷ୍ଟକର ହେଉଥିଲା । ଅନ୍ୟାନ୍ୟ ସ୍ଥାନରେ କିଛି କାଳ ବିତାଇବା ପରେ ଶେଷକୁ ସେ ପ୍ରାୟ ୧୯୪୩ ମସିହା ଶେଷରେ କଟକ ବଦଳି ହୋଇ ଆସିଲେ । କଟକରେ ନିଜର ଖଣ୍ଡେ ଘର ଥିବାରୁ ଓ ଗାଆଁ ପାଖ ହୋଇଥିବାରୁ ଅବସ୍ଥାର ଟିକିଏ ପରିବର୍ତ୍ତନ ଆସିଲା । ଫଳରେ ପତ୍ନୀ ଓ ପିଲାଙ୍କୁ ନେଇ କଟକରେ ରହିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସରିଗଲା; ମାତ୍ର କେତେକ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ଜନସାଧାରଣ ସହଜରେ ପାଇ ପାରୁ ନ'ଥାନ୍ତି । କଣ୍ଟ୍ରୋଲ ଦୋକାନୀମାନେ ଜିନିଷ ଆଣି ପ୍ରାୟ ବାଟମାରଣା କରନ୍ତି । ଏହା ଅନୁଭବ କରି ଚୌଧୁରୀ ବଜାର ଛକ ନିକଟ, କେଉଟ ସାହି ଗଳି ମୁଣ୍ଡରେ ସେ ଗୋଟିଏ ଦୋକାନ ଖୋଲିଲେ । ନିଜେ ତ ଚାକିରି କରିଥିଲେ । ଦୋକାନ ଖବର ବୁଝିବାକୁ ବେଳ ମିଳେନାହିଁ । ତେଣୁ ଦୁଇଜଣ ଲୋକ ରଖି କାମ ଚଳାଇବାକୁ ପଡ଼ିଲା । ଖାଉଟିମାନଙ୍କର ସିନା ସୁବିଧା

ହେଲା; କିନ୍ତୁ କ୍ଷତି ସହିବାକୁ ପଡ଼ିଲା । ଶେଷରେ ପୁଣି ବଦଳି ହୋଇ ଧର୍ମଶାଳା ଗ୍ଭଲିଯିବାରୁ ଦୋକାନ ଭାଙ୍ଗିଲା, ବସା ମଧ୍ୟ ଭାଙ୍ଗିଲା ।

ଠିକ୍ ସେହିପରି ଗାଆଁରେ ରହି ଗାଁ ମଧ୍ୟବିଦ୍ୟାଳୟକୁ ଉଚ୍ଚବିଦ୍ୟାଳୟରେ ପରିଣତ କରିବାକୁ ଲାଗି ପଡ଼ିବାବେଳେ ପାରିବାରିକ ଖର୍ଚ୍ଚ ତୁଲାଇବା ପାଇଁ ପ୍ରଥମେ ନିଜଘରେ ଖୋଲିଥିବା କଣ୍ଟ୍ରୋଲ ଲୁଗା ଦୋକାନର ଅବସ୍ଥା ପୂର୍ବବତ୍ ହେଲା । ଉଦ୍ୟୋଗ କ୍ଷେତ୍ରରେ ବାରମ୍ବାର ବିଫଳତା ସତ୍ତ୍ୱେ ଭାଙ୍ଗି ପଡ଼ିବା ଲୋକ ସେ ନ ଥିଲେ ।

"କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚ଼ନ" ଗୀତାର ଏହି ଉକ୍ତିଟି ସତେ ଯେପରି ଥିଲା ତାଙ୍କ ଜୀବନର ମୂଳମନ୍ତ୍ର ।

ଏଇଠି ମୋ ନିଜକଥା ଓ ତାଙ୍କ ସହିତ ମୋର ସଂପର୍କ ପ୍ରତିଷ୍ଠା ସମ୍ବନ୍ଧରେ ଟିକିଏ ସୂଚନା ଦେଉଛି । ଏବେ ସିନା ମୁଁ ତାଙ୍କ ପଡ଼ୋଶୀ ପାଲଟି ଯାଇଛି; କିନ୍ତୁ ଏ ଗାଆଁ ମୋର ଜନ୍ମଭୂମି ନୁହେଁ— ବରଂ କହିବାକୁ ଗଲେ କର୍ମଭୂମି । ମୁଁ ଏଠାରେ ଅଟକି ଯିବା ମୂଳରେ କେଶବବାବୁଙ୍କ ଅବଦାନ ଅବିସ୍ମରଣୀୟ ।

କେଶବବାବୁଙ୍କ ସହିତ ମୋର ବାସ୍ତବ ସଂପର୍କ ପ୍ରତିଷ୍ଠିତ ହେଲା ୧୯୪୪ ମସିହା ଜାନୁୟାରୀ ମାସରେ, ତାହା ପୁଣି ବଡ଼ ଆକସ୍ମିକ ଭାବରେ । ତାଙ୍କରି ଘର ପାଖରେ ମୋର ଗୋଟିଏ ପିଉସୀଙ୍କ ଘର । ଗାଆଁ ପ୍ରାଇମେରି ସ୍କୁଲରୁ ଉତ୍ତୀର୍ଣ୍ଣ ହେବା ପରେ ପିଉସୀ ମୋତେ ଆଣି ପାଖରେ ରଖି ସିଦ୍ଧେଶ୍ୱର ପୁର ଲ:ମ: ଇ ବିଦ୍ୟାଳୟରେ ପଢାଇଛନ୍ତି । ମାଇନର ପାସ ପରେ ନିଜ ଗାଆଁକୁ ସିନା ଗଲି ଆଉ ପଢିବାର ଅବସ୍ଥା ନ ଥିଲା । ଦୁଇବର୍ଷ କଟିଗଲା । ଏକ ବିଶେଷ କାମରେ କିଛିଦିନ ପାଇଁ ଏଠାକୁ ଆସିଥାଏ । ମୋତେ ସାଙ୍ଗରେ ଧରି ପିଉସୀ କେଶବବାବୁଙ୍କୁ ଭେଟିଲେ ଏବଂ ମୋ ପାଇଁ ଛୋଟମୋଟ ଗ୍ଭକିରିଟିଏ ଯୋଗାଡ କରିଦେବାକୁ ଅନୁରୋଧ କଲେ ।

ପିଉସୀଙ୍କ କଥା ରଖି କେଶବବାବୁ ମୋତେ ସାଙ୍ଗରେ ଧରି କଟକ ଗ୍ଭଲିଗଲେ । ନିଜ ବସାରେ ରଖି ମୋ ସହିତ କଥାବାର୍ତ୍ତା ହେବାବେଳେ ଯେତେବେଳେ ଶୁଣିଲେ କେବଳ ଆର୍ଥିକ ଅନଟନ ଯୋଗୁଁ ପାଠପଢା ଛାଡିଛି,

ସେ ଘୃକିରି ଖୋଜିବେ କ'ଣ ଓଲଟା ମୋର ଉଚ୍ଚଶିକ୍ଷା ପାଇଁ ସୁବିଧା କରିଦେଲେ । ତା'ପରେ ମୁଁ କିପରି ମାଟ୍ରିକ ପଢିଲି ଓ ପାସ କରି କଲେଜରେ ନାମ ଲେଖାଇଲି, ସେ ସବୁର ବର୍ଣ୍ଣନା ଏଠାରେ ନିଷ୍ପ୍ରୟୋଜନ । କିନ୍ତୁ ମୋର ଭବିଷ୍ୟତ ଗଠନ ଲାଗି ସେ ବାଟ ଖୋଲି ଦେଇଥିବାରୁ ତାଙ୍କର ତଥା ତାଙ୍କ ପତ୍ନୀଙ୍କ ସାହାଯ୍ୟ ସହାନୁଭୂତି ପାଇଁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ ।

ବିଭିନ୍ନ କ୍ଷେତ୍ରରେ ବିଫଳତା ସତ୍ତ୍ୱେ ଆଜି ଯେଉଁଥିପାଇଁ କେଶବବାବୁ ଆଦରଣୀୟ ଓ ସ୍ମରଣୀୟ ହୋଇ ପାରିଛନ୍ତି, ତାହା ହେଲା ନିଜ ଅଞ୍ଚଳରେ ଉଚ୍ଚଶିକ୍ଷା ପ୍ରସାର ଯୋଗୁଁ । ସିଦ୍ଧେଶ୍ୱରପୁର ଗୋପାଳ ସ୍ମୃତି ବିଦ୍ୟାପୀଠ, ଅଥଙ୍ଗା ଚିନ୍ତାମଣି ସ୍ମୃତିବାଳିକା ବିଦ୍ୟାମନ୍ଦିର ଓ କନ୍ଦରପୁର କଲେଜ ଭଳି ତିନୋଟି ଅନୁଷ୍ଠାନ ଗଠନ ଦିଗରେ ତାଙ୍କର କର୍ମନିଷ୍ଠା ପାଇଁ ସେ ଅବିସ୍ମରଣୀୟ ।

ସିଦ୍ଧେଶ୍ୱରପୁରର ଜମିଦାର ସ୍ୱର୍ଗତ ନରସିଂହ ପ୍ରହରାଜ ୧୮୭୯ ମସିହାରେ ନିଜ ଗ୍ରାମରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ପରେ ତାଙ୍କ ଯୋଗ୍ୟପୁତ୍ର ଭାଷାକୋଷକାର ଗୋପାଳବାବୁଙ୍କ ଚେଷ୍ଟାରେ ବିଦ୍ୟାଳୟଟି ବହୁ ଉନ୍ନତି କରି କଟକ ଜିଲ୍ଲା ବୋର୍ଡ ପରିଚାଳନାଧୀନ ହେଲା । ଏହା ଓଡ଼ିଶାର ଏକ ସୁପ୍ରତିଷ୍ଠିତ ବିଦ୍ୟାଳୟର ଖ୍ୟାତି ଅର୍ଜନ କଲା ସିନା, କିନ୍ତୁ ଗୋପାଳବାବୁଙ୍କ ଆନ୍ତରିକତା ସତ୍ତ୍ୱେ ଏହାକୁ ଉଚ୍ଚ ବିଦ୍ୟାଳୟରେ ପରିଣତି କରିବା ସମ୍ଭବ ହୋଇ ପାରିଲା ନାହିଁ । ଫଳରେ ଏ ଅଞ୍ଚଳରେ କେତୋଟି ଅଧାପାଠୁଆ ସୃଷ୍ଟି ହେବା ବ୍ୟତୀତ ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ହୋଇ ଦୁର୍ବିସହ ଜୀବନ ଯାପନ କରୁଥିଲେ । କାରଣ ସବୁଠାରୁ ନିକଟତମ ଉଚ୍ଚବିଦ୍ୟାଳୟଗୁଡ଼ିକ କଟକ ସହରରେ ପ୍ରାୟ ୧୫ରୁ ୨୦କିମି ଦୂର ଥିଲା ଏବଂ ପିଲାଙ୍କୁ କଟକରେ ରଖି ପଢ଼ାଇବା ଅବସ୍ଥା କ୍ୱଚିତ ଅଭିଭାବକଙ୍କର ଥିଲା ।

ପ୍ରୋକ୍ତ ବିଦ୍ୟାଳୟରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେବା ସତ୍ତ୍ୱେ ମୁଁ କାହିଁକି ଆଉ ଆଗକୁ ପଢି ପାରୁନଥିଲି ଓ ଦୀର୍ଘ ଦୁଇବର୍ଷ କାଳ ଇତସ୍ତତ ବୁଲି ବୁଲି ହତାଶ ହୋଇ ପଡ଼ିଥିଲି, ମୋ' ଠାରୁ ଶୁଣିବା ଦିନ ନିଜ ଅଞ୍ଚଳରେ ଉଚ୍ଚ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାର କଳ୍ପନା ବୋଧହୁଏ ତାଙ୍କ ମନରେ ଉଦୟ ହୋଇଥିଲା । ବିଭିନ୍ନ ଦିଗରୁ ଚିନ୍ତା କରୁକରୁ ଆହୁରି ତିନୋଟି ବର୍ଷ ବିତିଗଲା । ଶେଷରେ ୧୯୪୭ ମସିହା

ବେଳକୁ ମନ ଦୃଢ କରି ସରକାରୀ ଚାକିରି ଛାଡ଼ିଦେଲେ । ତା'ପରେ ଗାଆଁକୁ ଆସି ଏ ଦିଗରେ ଚେଷ୍ଟା ଚଳାଇଲେ ।

ଅଞ୍ଚଳର ନାମୀ ଲୋକଙ୍କୁ ନେଇ ପ୍ରଥମେ ସଭାଟିଏ ବସିଲା । ସାହାଯ୍ୟ ଓ ସହଯୋଗ ପାଇଁ କେଶବବାବୁ ସମସ୍ତଙ୍କୁ ଅନୁରୋଧ କଲେ ସିନା କେବଳ ବାଚନିକ ସହଯୋଗ ବ୍ୟତୀତ ଆଉ କିଛି ପାଇବାର ଆଶା ମିଳିଲା ନାହିଁ । ସମୟ ମଧ୍ୟ ଅନୁକୂଳ ନ ଥିଲା । ବିଶ୍ୱଯୁଦ୍ଧ ପରେ ସମସ୍ତେ ଅଭାବ ଅନଟନରେ କାଳାତିପାତ କରୁଥାଆନ୍ତି । ତଥାପି ହତାଶ ନ ହୋଇ ସିଦ୍ଧେଶ୍ୱରପୁର ମଧ୍ୟ ବିଦ୍ୟାଳୟର ପୁରାତନ ଛାତ୍ର ରତ୍ନାକର ପତିଙ୍କ ଦ୍ୱାରସ୍ଥ ହେଲେ ।

ପତି ମହାଶୟ ଏହି ଅଞ୍ଚଳର ଲୋକ, ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଜାମାତା । ରେଭେନ୍ସା କଲେଜ ଦର୍ଶନ ଅଧ୍ୟାପକ ପଦରୁ ଅବସର ଗ୍ରହଣ କଲା-ପରେ କଟକରେ ଅବସ୍ଥାନ କରୁଥାଆନ୍ତି । ଯାହାହେଉ ତାଙ୍କଠାରୁ ଆର୍ଥିକ ସାହାଯ୍ୟ ମିଳିବା ଆଶା ନ ଥିଲେ ବି ପ୍ରେରଣା ଓ ଆଶୀର୍ବାଦ ମିଳିଲା । ହାର୍ଦ୍ଦିକ ସହଯୋଗ ପାଇଁ ସେ ଆଗେଇ ଆସିଲେ ।

ଏମିତି ଗାଆଁ ଗାଆଁ ବୁଲି ଚାଲିଲା ଚାନ୍ଦା ସଂଗ୍ରହ । ଚାନ୍ଦା ତ ନୁହେଁ, ଭିକ୍ଷା ସଂଗ୍ରହ । ନିଜର ପଡ଼ୋଶୀ ଉପେନ୍ଦ୍ର ନାରାୟଣ ଆଚାର୍ଯ୍ୟଙ୍କୁ ସାଙ୍ଗରେ ଧରି ପ୍ରତି ଗ୍ରାମ ଓ ପ୍ରତି ଗୃହକୁ ଯାଇ ଅନୁରୋଧ କରନ୍ତି । ବେଶୀ ନ ହେଲେ ବି ଅନ୍ତତଃ ଗୋଟିଏ ଲେଖାଏଁ ଟଙ୍କା ଦେବାକୁ, ଅନେକ ସେତିକି ପାଇଁ ମଧ୍ୟ ପଛଘୁଞ୍ଚା ଦିଅନ୍ତି । ବାର୍ଦ୍ଧକ୍ୟାବସ୍ଥା ସତ୍ତ୍ୱେ ପତି ମହାଶୟ ବେଳେବେଳେ ଏମାନଙ୍କ ସହିତ ସହଯୋଗ କରନ୍ତି ।

ସାଧାରଣତଃ କେଶବବାବୁ ଗୃହସ୍ଥଙ୍କୁ ଭେଟି ନରମଭାଷାରେ ଉଦ୍ଦେଶ୍ୟ ବୁଝାନ୍ତି । ଉପେନ୍ଦ୍ରବାବୁ ଟିକିଏ କ୍ରୋଧୀ ଲୋକ । ଅନୁରୋଧ ନ ରହିଲେ ଟାଣଟାଣ କଥା କେଇପଦ ଶୁଣାଇବାକୁ ପଛାନ୍ତି ନାହିଁ । ତଥାପି କାର୍ଯ୍ୟସିଦ୍ଧି ନ ହେଲେ ଆସନ୍ତା ଥରକୁ ରତ୍ନାକରବାବୁଙ୍କୁ ସାଙ୍ଗରେ ନେବାକୁ ହୁଏ । ସେ ତାଙ୍କର ପ୍ରଭାବ ଓ ତାଙ୍କ ଜିଦ୍‌ଖୋର ପ୍ରବୃତ୍ତିର ପ୍ରୟୋଗ କରନ୍ତି । ସେଥିପାଇଁ ବଗୁଲିଆ ଟୋକାଏ ଏମାନଙ୍କୁ ଯଥାକ୍ରମେ ନରମ, ଗରମ ଓ ଚରମ ବୋଲି ନାଁ ଦେଇଥା'ନ୍ତି ।

କେବଳ ସେତିକି ନୁହେଁ, ପୂର୍ବରୁ ସର୍ବଦା ପ୍ୟାଣ୍ଟସାର୍ଟ ପରିହିତ କେଶବବାବୁ ଚାନ୍ଦା ସଂଗ୍ରହରେ ଯିବାବେଳେ ସାଦା ପୋଷାକରେ ଯାଆନ୍ତି । ପିନ୍ଧା ଖଣ୍ଡେ ଛୋଟ ଲୁଗା, ଓ ଗୋଟିଏ ସାଦା ହାଫ୍ଶାଇ, କାନ୍ଧରେ ଝୁଲୁଥାଏ ଗାନ୍ଧିମାର୍କା କନା ମୁଣିଟିଏ । ଏ ଅଦ୍ଭୁତ ବେଶ ଦେଖି ସାଙ୍ଗଙ୍କୁ ହସାଇବା ପାଇଁ କେହିଜଣେ ଗୀତ ପଦେ ଗାଇଦିଏ— "କେଶବ ଧୃତ ଯୋଗୀ ଶରୀର ଜୟ ଜଗଦୀଶ ହରେ" । ଅବଶ୍ୟ ଏହା ତାଙ୍କ ସାମନାରେ ନୁହେଁ, ନିଜ ନିଜ ଭିତରେ ଆଲୋଚନା ବେଳେ ।

ସେ, ଯାହାହେଉ ପରିଶେଷରେ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନଙ୍କ ଠାରୁ ଅନୁମତି ହାସଲ କରି ୧୯୪୮ ମସିହା ଜୁନ୍ ମାସରେ ପୂର୍ବୋକ୍ତ ସିଦ୍ଧେଶ୍ୱରପୁର ଲକ୍ଷ୍ମୀଧର ମଧ୍ୟ ଇଂରାଜୀ ବିଦ୍ୟାଳୟର ଗୋଟିଏ ବଖରାରେ ଉଚ୍ଚ ବିଦ୍ୟାଳୟର କାର୍ଯ୍ୟାଳୟ ଖୋଲାଗଲା । ଅଷ୍ଟମ ଓ ନବମ ଶ୍ରେଣୀରେ ନାମଲେଖା ଆରମ୍ଭ ହେଲା । ସେ ସମୟରେ ମଃ ଇ ବିଦ୍ୟାଳୟଗୁଡ଼ିକ ସକାଳୁଆ ଚାଲୁଥିବାରୁ ଦୁଇଟି ଶ୍ରେଣୀଗୃହରେ ପାଠପଢା କାମ ବି ଆରମ୍ଭ ହୋଇଗଲା । ଅଷ୍ଟମ ଶ୍ରେଣୀରେ ପ୍ରାୟ ୩୦ ଜଣ ପାଖାପାଖି ଛାତ୍ର ନାମ ଲେଖାଇଲେ ସିନା ନବମ ଶ୍ରେଣୀରେ ମାତ୍ର ତିନୋଟି ପିଲା ଜୁଟିଲେ, ଏପରିକି ଶେଷ ପର୍ଯ୍ୟନ୍ତ ଏହି ୩ଜଣ ଛାତ୍ର ରହି ମାଟ୍ରିକ ପରୀକ୍ଷା ଦେଲେ ଓ ଉତ୍ତୀର୍ଣ୍ଣ ହେଲେ ।

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ପ୍ରଣେତା ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜଙ୍କ ନାମରେ ବିଦ୍ୟାଳୟଟିର ନାମକରଣ କରାଯାଇଥିଲା ଗୋପାଳସ୍ମୃତି ବିଦ୍ୟାପୀଠ । ଆଶା ଥିଲା ତାଙ୍କ ନାମରେ ସ୍କୁଲଟି ପ୍ରତିଷ୍ଠିତ ହେଲେ ହୁଏତ ସମଗ୍ର ଓଡ଼ିଶାବାସୀ ଆର୍ଥିକ ସହାୟତା ଦେବେ । କିନ୍ତୁ ସେ ଆଶା କେବଳ ଆଶାରେ ରହିଲା । ଫଳରେ ବହୁ ବାଧାବିଘ୍ନ ମଧ୍ୟଦେଇ ଗତି କରିବାକୁ ପଡ଼ିଥିଲା ।

ମଧ୍ୟ ବିଦ୍ୟାଳୟର ଶିକ୍ଷକମାନେ ଥିଲେ ଜିଲ୍ଲାବୋର୍ଡ଼ ଅଧୀନ ଓ ଉଚ୍ଚବିଦ୍ୟାଳୟଟି ଘରୋଇ ପରିଚାଳନା ଅଧୀନ । ଉଚ୍ଚବିଦ୍ୟାଳୟର ଜାଗା ଜମି କିଛି ନାହିଁ । ତେଣୁ ଅନେକ ସମୟରେ ଅଯଥା ମନୋମାଳିନ୍ୟ ସୃଷ୍ଟି ହେଉଥିଲା ଉଭୟ ଗୋଷ୍ଠୀ ମଧ୍ୟରେ । ଭଗବାନ୍‌ଙ୍କ କୃପାରୁ ଜିଲ୍ଲାବୋର୍ଡ ୧୯୪୯ ମସିହା ଜୁଲାଇ ମାସରେ ପରିଚାଳନା ଭାର ତ୍ୟାଗ କରିବା ଦ୍ୱାରା ଏ ସମସ୍ୟାଟି ଦୂର ହେଲା । ଏବେ ଦୁଇଟିଯାକ ବିଦ୍ୟାଳୟ ମିଳିମିଶି କାମ କଲେ ।

ଆଉ ଗୋଟିଏ ବଡ଼ ଅସୁବିଧା ଥିଲା ଶିକ୍ଷକ ଯୋଗାଡ଼ କରିବା । ଓଡ଼ିଶାରେ ସେତେବେଳେ ସ୍ୱଳ୍ପସଂଖ୍ୟକ ଉଚ୍ଚଶିକ୍ଷିତ ଥାଆନ୍ତି । ସରକାରୀ ହାରରେ ନିୟମିତ ସମୟରେ ଦରମା ଦେଇ ମଧ୍ୟ ବହୁ କଷ୍ଟରେ ଯୋଗାଡ଼ କରି ନିଯୁକ୍ତି ଦେଇଥିବା ଶିକ୍ଷକମାନେ ଛଅମାସ କି ବର୍ଷେ ନ ବିତୁଣୁ ସରକାରୀ ଚାକିରି ପାଇ ପଳାଇ ଯାଆନ୍ତି । ଏପରିକି ୬୦୦ରୁ ଊର୍ଦ୍ଧ୍ୱ ଛାତ୍ରଛାତ୍ରୀ ଥିବା ବିଦ୍ୟାଳୟରେ ଜଣେ ଅଧେ ମଧ୍ୟ ତାଲିମପ୍ରାପ୍ତ ସ୍ନାତକ ଶିକ୍ଷକ ନ ଥା'ନ୍ତି । କିନ୍ତୁ ସେ ସବୁ ସତ୍ତ୍ୱେ ପତିମହାଶୟଙ୍କ ଦ୍ୱାରା ବାରମ୍ବାର ଶ୍ରେଣୀ ପରିଦର୍ଶନ ଓ ଉପଦେଶ ପ୍ରଦାନ ଯୋଗୁଁ ବିଦ୍ୟାଳୟର ସୁନାମରେ ଆଞ୍ଚ ଆସେ ନାହିଁ । ଶେଷରେ ୧୯୬୨ ମସିହା ମାର୍ଚ୍ଚ ମାସରେ ଓଡ଼ିଶା ସରକାର ପରିଚାଳନା ଦାୟିତ୍ୱ ଗ୍ରହଣ କରିବା ଫଳରେ ଅନେକ ସମସ୍ୟାର ଅନ୍ତ ଘଟିଲା ।

ଗୋପାଳ ସ୍ମୃତି ବିଦ୍ୟାପୀଠ ସରକାରୀ ହେବାପରେ କେଶବବାବୁ ସଂପାଦକ ଦାୟିତ୍ୱରୁ ମୁକ୍ତ ହେଲେ । ଏଣିକି ସେ ନାରୀଶିକ୍ଷାର ପ୍ରସାର ଦିଗରେ ଲାଗିଗଲେ । ୧୯୬୩ରେ ଆରମ୍ଭ ହେଲା ଅଥଙ୍ଗା ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର । ତାଙ୍କର କର୍ମନିଷ୍ଠା କ୍ରମେ ଅଞ୍ଚଳବାସୀଙ୍କୁ ଆକୃଷ୍ଟ କରିବାକୁ ଲାଗିଲା । ଅବସ୍ଥା ଟିକିଏ ବଦଳି ଆସିଥିଲା । ବାଳିକା ବିଦ୍ୟାଳୟ ସରକାରୀ ସାହାଯ୍ୟ ପାଇ ସ୍ଥାୟୀ ହେବାପରେ ବିଶିଷ୍ଟ ଲୋକମାନଙ୍କୁ ଏକତ୍ର କରି ଆରମ୍ଭ କରାଗଲା କନ୍ଦରପୁର କଲେଜ କାମ । ଏହିପରି ତିନୋଟି ଶିକ୍ଷା ପ୍ରଦୀପର ପ୍ରଜ୍ୱଳନ କେଶବବାବୁଙ୍କ ମହନୀୟତାର ନିଦର୍ଶନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସାଧାରଣତଃ ଶିକ୍ଷିତ ଓ ପ୍ରତିଷ୍ଠିତ ଲୋକେ କେତେକ କାମରେ ହାତ ଦେବାକୁ କୁଣ୍ଠା ପ୍ରକାଶ କରନ୍ତି । ମାତ୍ର କେଶବବାବୁ ସେପରି ବ୍ୟକ୍ତି ନ ଥିଲେ । ଚାକିରି ଛାଡ଼ିବା ପରେ ଯେତେବେଳେ ପାରିବାରିକ ଖର୍ଚ୍ଚ ତୁଲାଇବା କଷ୍ଟକର ହେଲା, ନିଜକୁ ଜଣେ ସାଧାରଣ ଚାଷୀ ମୂଲିଆ ଭଳି ନିୟୋଜିତ କରିବାକୁ ପଛେଇ ନ ଥିଲେ । ଖଣ୍ଡେ ଛୋଟ ଲୁଗା ପିନ୍ଧି ଓ ମୁଣ୍ଡରେ ତାଳପତ୍ର ତିଆରି ଗୋଟିଏ ଟୋପି ଲଗାଇ କୃଷିକ୍ଷେତ୍ରକୁ ବାହାରି ପଡ଼ନ୍ତି । ହାତରେ ଥାଏ କୋଡ଼ି ବା କୋଦାଳ । ମାଟିହଣା, ଧାନବୁଣା, ଧାନକଟା ଭଳି କାମ ଘଣ୍ଟା ଘଣ୍ଟା ଧରି କରିଚାଲନ୍ତି । କାମ କରୁଥିବା ବେଳେ ଖବର ପାଇଲେ ବିଦ୍ୟାଳୟ କାର୍ଯ୍ୟାଳୟକୁ ସିଧାସିଧା ଚାଲି

ଆସନ୍ତି କାଗଜପତ୍ର କାମ ପାଇଁ । ତାଙ୍କର ଏ ଅଦ୍ଭୁତ ବେଶପୋଷାକ ଦେଖି ଶିକ୍ଷକ ଓ ଛାତ୍ରଛାତ୍ରୀମାନେ କ'ଣ ଭାବିବେ ସେଥିପାଇଁ ଚିନ୍ତା ନ ଥାଏ ।

ଥରେ ବିଦ୍ୟାଳୟର ପୁରସ୍କାର ବିତରଣୀ ସଭାରେ ପିଲାମାନେ ଗୋଟିଏ ପାଲା ପରିବେଷଣ କରିଥିଲେ । ପାଲାଟି ଥିଲା ବ୍ୟଙ୍ଗାତ୍ମକ । ପରିଚାଳନା ସମିତି ସଭ୍ୟ, ସଂପାଦକ ଓ ଶିକ୍ଷିତମାନଙ୍କ ଚାଲିଚଳନ, ବେଶପୋଷାକକୁ ଲକ୍ଷ୍ୟ କରି ଲେଖାଯାଇଥିଲା । କେଶବବାବୁଙ୍କ ସମ୍ବନ୍ଧରେ ଲିଖିତ ପଦଟି ଥିଲା—

*"ଏ ଯେ ସେନାପତି, ଦେଖେଲୋ ମିତ କି ବପୁ କରିଛି*
*ହାଫ୍ ଲୁଗାକୁ ଟାଳ ଟୋପି ପିନ୍ଧା ପଣରେ ସରିଛି ।"*

ଅନ୍ୟମାନଙ୍କ ମଧ୍ୟରୁ ଅନେକ ନିଜନିଜ ଗୁଣଭେକ ବର୍ଣ୍ଣନା ଶୁଣି ରୁଷ୍ଟ ହେଲେ ସିନା, କେଶବବାବୁ ନିଜକଥା ଶୁଣି ମହାଖୁସି ।

କନ୍ଦରପୁର କଲେଜ ଆରମ୍ଭରୁ କେଶବବାବୁ ନିଜେ କଲେଜ ପରିଚାଳନା ସମିତିର ସଂପାଦକ ରହି ତା'ର ଉନ୍ନତିକଳ୍ପେ ମନପ୍ରାଣ ଢାଳି ଦେଉଥିଲେ । କିଛିବର୍ଷ ବିତିଗଲା, କଲେଜର ସ୍ଥିତି ସୁଦୃଢ ହେଲା; କିନ୍ତୁ ସବୁ ସମୟ ତ ସମାନ ଭାବରେ କଟେ ନାହିଁ । କେଜାଣି କାହିଁକି ଏକ ଅଜ୍ଞାତ କାରଣରୁ ନିଜକୁ ସେ ସେଥିରୁ ଖସାଇ ଆଣିଲେ । ସେତେବେଳକୁ ପତ୍ନୀହରା ହୋଇ ସାରିଥାଆନ୍ତି; ପୁଅମାନେ ପାଠପଢ଼ା ସାରି ଚାକିରି ବାକିରି କରି ନିଜ ନିଜ କ୍ଷେତ୍ରକୁ ଚାଲିଗଲା ପରେ ଘରେ ତାଙ୍କୁ ଏକୁଟିଆ ଜୀବନ ବିତାଇବାକୁ ପଡ଼ିଲା । କର୍ମଯୋଗୀ ତ, ସ୍ଥିର ହୋଇ ବସି ପାରୁଛନ୍ତି କେତେବେଳେ । ଏଣିକି ଆରମ୍ଭ ହେଲା ସାହିତ୍ୟ ସାଧନା । ଖଣ୍ଡିକ ପରେ ଖଣ୍ଡିଏ କରି ଦୁଇତିନୋଟି ଉପନ୍ୟାସ ଆତ୍ମପ୍ରକାଶ କଲା । ସାମାଜିକ ସମସ୍ୟା ସମ୍ବଳିତ ଏହି ଉପନ୍ୟାସଗୁଡ଼ିକ ଯେପରି ସରଳ, ସୁଖପାଠ୍ୟ, ସେହିପରି ମର୍ମସ୍ପର୍ଶୀ । ଏ କାମ ଚାଲିଲା ବାର୍ଦ୍ଧକ୍ୟ ପ୍ରପୀଡ଼ିତ ଜୀବନର ରୋଗାକ୍ରାନ୍ତ ଓ ସ୍ମୃତିହରା ହୋଇ ଶେଷକୁ ଶଯ୍ୟାଶାୟୀ ହେବା ପର୍ଯ୍ୟନ୍ତ ।

ପରିଶେଷରେ ଉପସ୍ଥିତ ହେଲା ବିଦାୟ ଲଗ୍ନ । କଟକ ବସାରେ ପଡ଼ି ଚିକିତ୍ସିତ ହେଉ ହେଉ ତା ୨୪.୭.୨୦୦୫ ରିଖରେ ଦେହାବସାନ ଘଟିଲା ।

ବଞ୍ଚିଥିବା ପର୍ଯ୍ୟନ୍ତ ନାନା ଘାତପ୍ରତିଘାତ ମଧ୍ୟ ଦେଇ ଗତି କରୁ କରୁ କିଏ

ମିତ୍ର ରୂପରେ ଆଗେଇ ଆସି ପ୍ରଶଂସା କରେ ତ ଆଉ କିଏ ଶତ୍ରୁ ସାଜି ଦାଉ ସାଧିବାକୁ ଚେଷ୍ଟା କରେ । ମାତ୍ର "ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।" କିଏ ଭଲ ଓ କିଏ ଭେଲ ସହଜରେ ବାରିହୋଇ ପଡ଼େ ।

"କେଶବବାବୁ ଗ୍ଲଲିଗଲେ"— ଏହି ସଂବାଦ ଶୁଣୁ ଶୁଣୁ ପ୍ରତିକୂଳ ପାଗ ସତ୍ତ୍ୱେ ଶତାଧିକ ଲୋକ କଟକ ଦଉଡ଼ି ଯାଇଥିଲେ ଶେଷ ଦର୍ଶନ ପାଇଁ । ଅନେକଙ୍କ ଅନୁରୋଧରେ ଶବାଧାରକୁ ଆଣି ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନଗୁଡ଼ିକରେ ବୁଲାଗଲା ବେଳେ ଛାତ୍ର ଶିକ୍ଷକ ତଥା ସ୍ଥାନୀୟ ଅଧିବାସୀ ଯେପରି ଶ୍ରଦ୍ଧାସୁମନ ଅର୍ପଣ କଲେ, ତାହା ଥିଲା ଏ ଅଞ୍ଚଳ ପାଇଁ ସଂପୂର୍ଣ୍ଣ ନୂତନ, ଅଭୂତପୂର୍ବ ।

ଉତ୍କଳମଣି ଗୋପବନ୍ଧୁ ଦାଶଙ୍କ ଭାଷାରେ—

*ମାନବ ଜୀବନ ନୁହଁଇ କେବଳ ବର୍ଷମାସ ଦିନଦଣ୍ଡ*
*କର୍ମେ ଜୀଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।"*

କେଶବବାବୁଙ୍କ ଜୀବନାଦର୍ଶ ଉକ୍ତିଟିର ସାର୍ଥକତା ପ୍ରତିପାଦନ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ । ମାଟିପିଣ୍ଡ ମାଟିରେ ମିଶିଯାଇଛି ସିନା; ମାତ୍ର ତାଙ୍କ ପ୍ରଚେଷ୍ଟାରେ ଗଢ଼ାଯାଇଥିବା ଅନୁଷ୍ଠାନଗୁଡ଼ିକ ଥିବା ପର୍ଯ୍ୟନ୍ତ ସେ ସମସ୍ତଙ୍କୁ ସ୍ମୃତିପଟରେ ଜାଗ୍ରତ ଥାଇ ଆଞ୍ଚଳିକ ବିକାଶ ଲାଗି ପ୍ରେରଣା ଯୋଗାଉଥିବେ ।

*ପୁରାତନ ଶିକ୍ଷକ,*
*ଗୋପାଳ ସ୍ମୃତି ବିଦ୍ୟାପୀଠ, ସିଦ୍ଧେଶ୍ୱରପୁର*



# କୋଟିଏରେ ଗୋଟିଏ

✦ ଶ୍ରୀ ଦୁର୍ଗାଚରଣ ରାଉତ

ଶ୍ରୀମଦ୍ ଭଗବଦ୍ ଗୀତାର ସପ୍ତମ ଅଧ୍ୟାୟ ତୃତୀୟ ଶ୍ଳୋକରେ ଭଗବାନ ଶ୍ରୀକୃଷ୍ଣଙ୍କର ମୁଖନିଃସୃତ ବାଣୀ ହେଲା—

*"ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍ ଯତତି ସିଦ୍ଧୟେ,*
*ଯତତା ମପି ସିଦ୍ଧାନାଂ କଶ୍ଚିନ୍ମାଂ ବେତ୍ତିତତ୍ତ୍ୱତଃ ।"*

ହଜାର ଲୋକଙ୍କ ମଧ୍ୟରୁ କଦାଚିତ୍ କେହି ସିଦ୍ଧିଲାଭ ପାଇଁ ପ୍ରଯତ୍ନ କରେ । ପ୍ରଯତ୍ନକାରୀ ମଧ୍ୟରେ କଦାଚିତ କେହି ମୋତେ ବାସ୍ତବିକ ରୀତିରେ ଜାଣେ । ସାର୍ଥକ ଜୀବନ ପାଇଁ ସିଦ୍ଧି ଲୋଡ଼ା । ସିଦ୍ଧିର ଉଦ୍ଦେଶ୍ୟ ଈଶ୍ୱରପ୍ରାପ୍ତି । କର୍ମ ଯୋଗରେ ଈଶ୍ୱର ପ୍ରାପ୍ତି ନହେଲେ ଈଶ୍ୱରଙ୍କୁ ପାଇବା କେବଳ କଥାର କଥା । ଯିଏ କର୍ତ୍ତବ୍ୟ-କର୍ମର ମହତ୍ତ୍ୱ ବୁଝେ, ଯିଏ ନିଷ୍ଠାପର କର୍ମୀ, ସିଏ ସିଦ୍ଧିଲାଭ କରିବ ହିଁ କରିବ । ଅନନ୍ତ ଧୈର୍ଯ୍ୟ, ଅନନ୍ତ ଉଦ୍ୟୋଗ ଯେଉଁମାନଙ୍କୁ ସହାୟକ, ସେହିମାନେ କାର୍ଯ୍ୟରେ ସିଦ୍ଧିଲାଭ କରିପାରନ୍ତି । କାର୍ଯ୍ୟରେ ସମାରୋହ ନ ଥାଏ, ଥାଏ ନିଷ୍ଠା, ନିଷ୍ଠାରେ ଥାଏ ନିଶ୍ଚଳତା ।

ଶ୍ରୀମଦ୍ ଭଗବତ୍ ବି କହନ୍ତି "ଭୋ ତାତ କର୍ମପଦେ ସେବ, କର୍ମ ହୁଁ ନାହିଁ ଅନ୍ୟ ଦେବ" । ଅର୍ଥାତ୍ କର୍ମ ହିଁ ଭଗବାନ୍ । 'Work is worship' କର୍ମ କରିବ । କି ପ୍ରକାର କାମ ? ବହୁଜନ ହିତାୟ/ଲୋକ କଲ୍ୟାଣାୟ । ଏହି ମର୍ମରେ ମହାମୁନି ବ୍ୟାସଦେବ ବିରଚିତ ସବୁ ଶାସ୍ତ୍ରପୁରାଣର ସାରାଂଶ ହେଲା —

*ସର୍ବଶାସ୍ତ୍ର ପୁରାଣେଷୁ ବ୍ୟାସସ୍ୟ ବଚନଂ ଦ୍ୱୟଂ,*
*ପରୋପକାରଃ ପୁଣ୍ୟାୟ ପାପାୟ ପର ପୀଡ଼ନଂ "*

ପରୋପକାର, ଜନକଲ୍ୟାଣ ମାର୍ଫତରେ ସମାଜର ହିତ ସାଧନ କରିବା ଏତେଟା ସହଜ ବ୍ୟାପାର ନୁହେଁ । ଅଶେଷ ସାଧନା, ଅନେକ ତ୍ୟାଗ, ଅତୁଟ ସାହସ, ଅଖଣ୍ଡ କର୍ମକୁଶଳତା, ଅବିଚଳିତ ପୁରୁଷାର୍ଥ, ଅବଦମିତ ଉତ୍ସାହ, କର୍ମୀ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ, କର୍ମବୀରର ଏହା ହିଁ ଲକ୍ଷଣ ।

ବାସ୍ତବ ଦୃଷ୍ଟିରୁ ଦେଖିଲେ କର୍ମଯୋଗୀ ହିଁ ସର୍ବଶ୍ରେଷ୍ଠ ଯୋଗୀ । ସେଥିପାଇଁ ଯଥାର୍ଥରେ କୁହାଯାଇଛି—

*"ମାନବ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ*
*କର୍ମେ ଜୀଏଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।"*

କି ଚମତ୍କାର ଅଭିବ୍ୟକ୍ତି । କର୍ମତତ୍ପରତା ହିଁ ମଣିଷପଣିଆ । ମଣିଷ ପରି ମଣିଷଟିଏ ହେବାକୁ ହେଲେ ନିରଳସ କର୍ମୀଟିଏ ହେବା ବାଞ୍ଛନୀୟ । ଏ ଯୁଗର ଯଥାର୍ଥ ନିଷ୍ଠାପର କର୍ମୀଟିଏ ଦୁଷ୍ପ୍ରାପ୍ୟ । କୋଟିଏରେ ଗୋଟିଏ ସେଇ କୋଟିକରୁ ଗୋଟିଏ ମଣିଷ ହେଲେ ଆମ କେଶବବାବୁ ଓରଫ୍ ୰କେଶବ ଚନ୍ଦ୍ର ନନ୍ଦ । ତାଙ୍କର ତିରୋଧାନ ହୋଇଯାଇଛି ସତ୍ୟ, ହେଲେ ତାଙ୍କର ଅମଳିନ କର୍ମପ୍ରବାହ ସବୁବେଳ ପାଇଁ ପ୍ରବହମାନ । ସେଇ ପ୍ରବହମାନ ସ୍ରୋତସ୍ୱିନୀର ଧାରା ସରଳ, ତରଳ, ସ୍ୱଚ୍ଛ ଢ଼ଳଢ଼ଳ, ଛଳଛଳ ତାନରେ ଚଳଚଞ୍ଚଳ ଗତିରେ ତାଙ୍କରି ଅମର ଆତ୍ମାର ମହିମା ଓ ଯଶ ଉଦ୍‌ଘୋଷଣା କରୁଥିବ ଚିରକାଳ ପାଇଁ ।

କେଶବବାବୁ ଏ ଅଞ୍ଚଳର ଏକ ଜଣାଶୁଣା ନାଁ । ମୁଁ ଅଧମ ତାଙ୍କ ଆଗରେ ଲଙ୍ଗଳା, ଫୁଙ୍ଗୁଳା ପିଲା । କ'ଣଟା ଜାଣିଛି ସେ କରିତକର୍ମା, କର୍ମବୀରଙ୍କ ଜନମ ଜାତକ କଥା ! ସେପରି ଜଣେ ବିରାଟ ବ୍ୟକ୍ତିତ୍ୱକୁ ମୁଁ ପହିଲେ ଦେଖିଥିଲି ଆମ ଘର ଦାଣ୍ଡ ଆଗରେ । ଟିକେ ଟିକେ ହେଜ ଅଛି, ଶୃକ୍‌ଗାଡ଼ି ଚଢ଼ି ଆସିଥା'ନ୍ତି ଆମ ବାପାଙ୍କ ପାଖକୁ । ପରିଧାନ ଭିତରେ ଖଣ୍ଡେ ସଫା ଖଦଡ଼ିଆ ଧୋତି, ଦେହରେ ଘିଅ ରଙ୍ଗର ପୁରାହାତବାଲା ଖଦଡ଼ ଗାରଗାରିକିଆ ଛିଟ ପଞ୍ଜାବି । କାନ୍ଧରେ ଓହଳ ଖଦଡ଼ ଝୁଲାମୁଣି ।

ସେତେବେଳେ ସ୍ୱାଧୀନ ଭାରତର ପ୍ରାକ୍‌କାଳ । ଭୋଟ ପ୍ରସ୍ତୁରରେ ମାତିଥା'ନ୍ତି ଯୋଡ଼ି ବଳଦ ଚିହ୍ନବାଲା କଂଗ୍ରେସିଆ; ଦାଆହାତୁଡ଼ି ମାର୍କା କମ୍ୟୁନିଷ୍ଟିଆ ଆଉ

ବରଗଛ ସଡକ ବାଲା ସୋସାଲିଷ୍ଟିଆ । ପଲଟଣଙ୍କ ପରି ପଂଝାକୁ ପଂଝା ପ୍ରଗ୍ରକ ତଳ ଗାଁ ଦାଣ୍ଡରେ ପଇଁତରା ମାରି, ଗୋଟାକେତେ ଫରଗ୍ଗ ମୁହଁବାଲା ଟିଣ କାହାଳୀ ପାଟି ପାଖରେ ଧରି ଯାଉଁ ଯାଉଁ ଚିଲ୍ଲେଇ କହୁଥା'ନ୍ତି-- ଆମେ ଅମକ, ଆମେ ସମକ, ଆମେ ଇମିତି ସେମିତି କରିଦବୁ; ଆମକୁ ଭୋଟ ଦେଇ ଜିତେଇଦିଅ ଇତ୍ୟାଦି । କେତେ ନେତାଳିଆ ଲୋକ ବାପାଙ୍କ ପାଖକୁ ଆସି କ'ଣ ସବୁ ଫୁସୁରୁଫାସୁରୁ ହେଉଥା'ନ୍ତି । ସେ ଶୂନଗାଡ଼ି ଚଢ଼ା ବାବୁଙ୍କୁ ଦେଖି ମୁଁ ଭାବିନେଲି, ଇଏ ବୋଧହୁଏ ସେଇ ନେତାଫେତାଙ୍କ ଭିତରୁ କେହି ଜଣେ ହେଇଥିବେ । କିନ୍ତୁ ନା, ସେ ଜଣେ କାମର ଲୋକ, ନିକମା ନୁହଁନ୍ତି । କେତେଗୋଛା କଣ୍ଟା ଯୋଗାଡ଼ କରିଦେବା ପାଇଁ ବାପାଙ୍କୁ ବରାଦ ଦେଉଥା'ନ୍ତି-- କୁଆଡ଼େ ତାଙ୍କ ବାରିବଗିଗ୍ଗ ଆଉ ବିଦ୍ୟାଳୟ ବାରିବଗିଗ୍ଗର ବାଡ଼ବୁଜା ହବ, ବୁଝୁ ବୁଝୁ ସିଏ କାକେ କେଶବ ନନ୍ଦ ।

କିଓ; ନନ୍ଦବାବୁଙ୍କ ଘର ତ ସିଦ୍ଧେଶ୍ୱରପୁର ଆଉ ଆମ ବାପାଙ୍କ ଘର ଆସି କମରପଦା(ବାଲିସାହି), ଏଠିକି ଆସି କ'ଣ କଣ୍ଟାଗୋଛା ବରାଦ ! ଇଏ କୋଉ ଆଡ଼ର କଥା । ନାଇଁ ନାଇଁ କଥା ହେଲା— ସେତେବେଳେ କାଇଜଙ୍ଗ ଜଙ୍ଗଲ ମହାନଦୀ କୂଳେକୂଳେ ପୂରା ଆୟତପୁର ଲଗାଏତ ନାଗେଶ୍ୱର, ବାରଦା ଶଗଡ଼ି, ଓଡ଼ପଡ଼ା, କେଶନଗର, ମଲ୍ଲିପୁର, ସିର୍ଲୋଫିର୍ଲୋ ଦେଇ ଗଲା ଲମ୍ବିଯାଇ ସମୁଦ୍ରକୂଳ ହେନ୍ତାଳ ବଣରେ ମିଶିଥାଏ । ଆଗେ ସେଇ ବଣରେ ଘଞ୍ଚ କଣ୍ଟା ବାଉଁଶବୁଦା ଭର୍ତ୍ତି ହୋଇଥିଲା । ସେଇ ବଣରୁ କଣ୍ଟା କଟାଳିଆ କଣ୍ଟା ଗୋଛା କାଟିଆଣି ବାପାଙ୍କ ଜିମାରେ ଜମା କରନ୍ତି । ବାପାଙ୍କ ସାଥିରେ କେଶବବାବୁଙ୍କର ବେଶ୍ ଜଣାଶୁଣା । ସେଇ ଆଳରେ ବରାଦ୍ ମୁତାବକ କଣ୍ଟାଗୋଛା ଆସିଲେ ନନ୍ଦବାବୁଙ୍କୁ ସୁବିଧା ହୁଏ ଏଠାରୁ ନବାକୁ ।

ହେତୁ ହେଇ ପାଠ ପଢ଼ିଲାବେଳକୁ ମୁଁ କେଶବବାବୁଙ୍କୁ ଆସ୍ତେ ଆସ୍ତେ ଚିହ୍ନିଲି; ସିଦ୍ଧେଶ୍ୱରପୁର ଗୋପାଳ ସ୍ମୃତି ବିଦ୍ୟାପୀଠର ଦେହଳୀ ଭିତରେ । ଗୋରା ତକ୍ ତକ୍, ପୂରିଲା ପୂରିଲା ଚଉକଷିଆ ମଣିଷ । ସୁନ୍ଦର, ସୁଠାମ, ଦିଲ୍‌ବାଲା, ଉଚ୍ଚଇଂରାଜୀ ବିଦ୍ୟାଳୟର ସଂପାଦକ । ତାଙ୍କ ଠାଣିମାଣି, ଗୁରୁଗମ୍ଭୀର ଡଉଲଡ଼ାଉଲ ଚେହେରା ସାଙ୍ଗକୁ ନରମା କଣ୍ଠର ମନ ଚହଲା ମଧୁରିଆ କଥା । ଗୌରଚନ୍ଦ୍ରିକା

ଶୂନ, ଯାର ସଂକ୍ଷିପ୍ତ ସଂଳାପ ଐନ୍ଦ୍ରଜାଲିକର ପ୍ରଭାବ ପକାଏ ଯାନବତ୍ ନିର୍ବି-ଶେଷରେ । ସବୁରି ଉପରେ ସୁରୁଖୁରୁରେ କାମଟି ଆରମ୍ଭ ହେଇ ମୁଣ୍ଡି ମରେ ଶେଷରେ । ଏ ପାରିବାର ପଣିଆ ଖୁବ୍ କମ ଲୋକଙ୍କ ପାଖରେ ଥାଏ-- ଅକୃତ୍ରିମ କର୍ମପ୍ରବଣତା ତାଙ୍କ ଜୀବନ ତମାମ୍ ନେସିହୋଇ ରହିଥିଲା ପରା !

ବିଦ୍ୟାଳୟର ଯାବତୀୟ ଭାର କେଶବବାବୁଙ୍କ ମୁଣ୍ଡ ଉପରେ । ବିଦ୍ୟାଳୟର ହାନିଲାଭ, ଭଲମନ୍ଦ, ଅଭିବୃଦ୍ଧି, ସମୃଦ୍ଧି, ସୁଦିନ, ଦୁର୍ଦ୍ଦିନ, ଆନନ୍ଦ ଉତ୍ସବରେ ସେଇ ବଳିଷ୍ଠ ବ୍ୟକ୍ତିତ୍ୱର ଲମ୍ବା ହାତ ଆବୋରି ରହିଥାଏ ଯେ ରହିଥାଏ; ତାହାକୁ ଅସ୍ୱୀକାର କରିବା ଗ୍ରା ନ ଥାଏ । ବିଦ୍ୟାଳୟ ଅଙ୍ଗନରେ ତାଙ୍କର ପଦଗ୍ରଣ, ଶିକ୍ଷକ, ଛାତ୍ରଙ୍କ ଗହଣରେ ନୂତନ ଶିହରଣ ଆଣେ । ପରିଚାଳନା ଦକ୍ଷ ନନ୍ଦବାବୁଙ୍କର ଦ୍ୱିତୀୟ ସଂସ୍କରଣ ପରିକଳ୍ପନା ପ୍ରାୟ ଅସମ୍ଭବ କହିଲେ ଚଳେ, ସେପରି ଜଣେ ବାସ୍ତବବାଦୀ ଚିନ୍ତାଶୀଳ, କର୍ମଠ ବ୍ୟକ୍ତି ହିଁ ପ୍ରକୃତ ପକ୍ଷେ ଗୋପାଳ ସ୍ମୃତି ବିଦ୍ୟାପୀଠର ସର୍ବାଙ୍ଗୀନ ଉନ୍ନତି ପାଇଁ ସଦା ଉନ୍ମୁଖ ଥିଲେ । ଯାହା ଫଳରେ ବିଦ୍ୟାଳୟର ଉତ୍କର୍ଷତା ତଦାନୀନ୍ତନ କଟକ ଜିଲ୍ଲାର ଗ୍ରାମୀଣ ଇଲାକାରେ ଏକ ମାଇଲଖୁଣ୍ଟ ପରି ପରିଶୋଭିତ ହୋଇଥିଲା ।

କେବଳ ଏକମାତ୍ର ଶିକ୍ଷାନୁଷ୍ଠାନ ଗଢ଼ି ସେ ପରିତୃପ୍ତିର ନିଃଶ୍ୱାସ ମାରି ପାରି ନଥିଲେ ପରା ! ତାଙ୍କରି ସାଧୁ ସଂଘର୍ଷମୟ ଉଦ୍ୟମର ଫଳସ୍ୱରୁପ ଦୃପ୍ତ ମୁଣ୍ଡ ଟେକିଛି "ଅଥଙ୍ଗା ଉଚ୍ଚ ଇଂରାଜୀ ବିଦ୍ୟାଳୟ" ତଥା "କନ୍ଦରପୁର ମହାବିଦ୍ୟାଳୟ" । କେଶବବାବୁଙ୍କର ଅଭୁଲା ସ୍ମୃତିକୁ ବହନ କରି ଉକ୍ତ ତିନୋଟି ଶିକ୍ଷାୟତନ ସବୁଦିନ ପାଇଁ ଅଲିଭା ହୋଇ ରହିଥିବ ।

କେଶବବାବୁଙ୍କ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ମୋର କେବେ ଜୁଟିନି । ତାଙ୍କୁ ଦୂରରୁ ଦେଖିଛି । ପାଖରୁ ବି । ମୋର ଆଠ ବର୍ଷର ବିଦ୍ୟାଧ୍ୟୟନ ଅବସରରେ ବହୁବାର ତାଙ୍କ ରୂପ ରଂଗ, ଢଙ୍ଗଢ଼ାଙ୍ଗ; ବିଧିବଦ୍ଧ ଶ୍ରେଣୀ ପରିଦର୍ଶନ ଠାରୁ ବିଦ୍ୟାଳୟର ସୁନିୟନ୍ତ୍ରିତ ଶାସନ ତଥା ସଂଲଗ୍ନ ପରିବେଶର ବହୁବିଧ ଉନ୍ନତି ପରିକଳ୍ପେ ତାଙ୍କର କାର୍ଯ୍ୟ ପ୍ରଣାଳୀ ଉଣାଅଧିକେ ମୁଁ ଅବଗତ ହେଇଛି । ହଠାତ୍ କେବେ ତାଙ୍କ ପାଖଦେଇ ଅତିକ୍ରମି ଯିବାବେଳେ ଶୃଙ୍ଖଳିତ ବିଦ୍ୟାର୍ଥୀଟିଏ ହିସାବରେ ଅଧୋବଦନ ସହ ସଂଭ୍ରମରେ ମଥାନତ ହେଇଯାଇଛି ସିନା; ସିଧା ଗ୍ରହିଁବାର ଭରସା ପାଇନି ।

ସ୍ୱର୍ଗତ ନନ୍ଦବାବୁଙ୍କର ବ୍ୟକ୍ତିଗତ ଜୀବନ ବୃତାନ୍ତ ମୋତେ ଅଜଣା, ଅଛପା । ତେଣୁ ଠାସୁକ୍ ମାରି ଅଥବା ଅନୁମାନ କରି ସେପରି ଜଣେ ଶୁଦ୍ଧପୂତ ବିଗତାତ୍ମାଙ୍କ ସ୍ମୃତିରେ ଯତ୍‌କିଞ୍ଚିତ୍ ଶ୍ରଦ୍ଧାଞ୍ଜଳି ଜଣେଇବା ନିଶ୍ଚୟ ଗର୍ହିତ ହେବ । କାରଣ ଯେ କୌଣସି ବ୍ୟକ୍ତି-ଚରିତ୍ର ସହ ଓତପ୍ରୋତ ଜଡ଼ିତ ନ ହେଇ ତଥ୍ୟଭିତ୍ତିକ ସୂଚନା ନ ଦେଇ ଆନୁମାନିକ ତଥ୍ୟ ପରିବେଷଣ କରିବା ନିହାତି ଧୃଷ୍ଟତା । ତେଣୁ ସେପରି ଅବାଞ୍ଛିତ ଲେଖାରୁ ବିରତ ରହିବାଟା ମୁଁ ଉଚିତ୍ ମଣୁଛି । ତଥାପି ମୋ ଆଖିଦେଖା, ଅଙ୍ଗେନିଭା ଜିଅନ୍ତା ଦୃଶ୍ୟର ଆଂଶିକ ଅବତାରଣା କରିବାର ଲୋଭ ସମ୍ବରଣ କରି ପାରୁନି ।

ସର୍ବଗୁଣସଂପନ୍ନ କେଶବ ନନ୍ଦ ଧନଜନ, ଗୋପଲକ୍ଷ୍ମୀର ଅଧିକାରୀ ହୋଇ ବି ସରଳ ନିରାଡ଼ମ୍ବର ଜୀବନ ବିତେଇବାକୁ ପସନ୍ଦ କରୁଥିଲେ । ଗର୍ବ ଅହଂକାର ହୁଏତ ତାଙ୍କୁ ଛୁଇଁ ନଥିଲା । ମୋ ପଢ଼ିବା ଭିତରେ ଓ ପରେ ମୁଁ ତାଙ୍କୁ ବହୁବାର ତାଙ୍କ ଧାନ ବିଲରେ ପରିକ୍ରମା କରୁଥିବାର ଦେଖିଛି । ଆଣ୍ଠୁଛୁଆଁ ଖୋର୍ଦ୍ଧା ନାଲିଗାମୁଛା ପିନ୍ଧି ଦେହରେ ଫତେଇ ନ ହେଲେ ନୀଳଦିଆ ଗଂଜି ଗଳେଇ, ମୁଣ୍ଡରେ ଚୌରସିଆ ଠେକା ଭିଡ଼ି, ପୁରୁଷେ ଉଚ୍ଚର ଠେଙ୍ଗା ଖଣ୍ଡେ ଧରି ଧାନବିଲ ହିଡ଼ରେ ଯା’ ଆସ କରୁଥିବାର ଅବିକଳ ଛବି ଦେଖିଛି, ବିସ୍ମିତ ହୋଇଛି । ଥଳକୂଳ ଠଉରେଇ ପାରିନି । ବଡ଼ଲୋକୀର ଦେଖାଣିଆ ଗ୍ରତର ବଦଳରେ ସାଧାରଣ ଗ୍ରଷୀ, ମୂଲିଆର ବେଶ ଆଉ ଆଚରଣ ତାଂକୁ ସବୁବେଳେ ଏକ ନିଆରା ମଣିଷଟିଏ ଗଢ଼ି ତୋଳିଥିଲା ଯେପରି ! ଆଃ ସେପରି ଚରିତ୍ରଟିଏ ଏବର ଅବକ୍ଷୟମାଣ, ଅପସଂସ୍କୃତିସଂପନ୍ନ ଗାଁ ଗଣ୍ଡାରେ ଅଥବା ନବ୍ୟ ସଭ୍ୟ ସହରରେ ଦୁର୍ଲଭ ।

ତିରୋହିତ ଆତ୍ମା, କେଶବବାବୁଙ୍କ ସଜୀବ ଶରୀରରେ ଅଧିଷ୍ଠିତ ଥିବାବେଳେ ତାଙ୍କୁ ଜଣେ ସଦ୍‌ବଂଶଜ, କୁଳୀନ ଅମାୟିକ, ଭଦ୍ର ମାର୍ଜିତ ରୁଚିସଂପନ୍ନ, ନିରହଂକାରୀ, ଉଦ୍ୟୋକ୍ତା ସାଙ୍ଗଠନିକ କର୍ମପଟୁ ଆଦି ସତ୍, ସାତ୍ତ୍ୱିକ ସ୍ୱଭାବରେ ଅଳଂକୃତ କରିଥିଲା । ମାତ୍ର ଏଣିକି ତାଙ୍କୁ ଆଖି ପୂରେଇ ଦେଖିବା ସାତ ସପନ । ମରଣଜୟୀ ନନ୍ଦବାବୁ ମରଧାମ ଛାଡ଼ି ଅମରଧାମକୁ ପ୍ରୟାଣ କଲେ । ହେଲେ ଛାଡ଼ିଦେଇ ଗଲେ ତାଙ୍କର ପଦାଙ୍କ । ଉତ୍ତରପୀଢ଼ି ସେଇ ପଦାଙ୍କ ଅନୁସରଣ କରୁ । ଏପରି ଏକ ସାର୍ଥକ, କର୍ମବହୁଳ, ପୂର୍ଣ୍ଣାଙ୍ଗ ପ୍ରାଣର ପରିସମାପ୍ତିରେ ବେଦନା ପରିପ୍ଲୁତ ତାଙ୍କ ଆତ୍ମାଙ୍କ

ସ୍ୱଜନ ତଥା ଶୁଭ ଚିନ୍ତକମାନଙ୍କୁ ହାର୍ଦ୍ଦିକ ସମବେଦନା ଓ ବିନମ୍ର ଆଶ୍ୱାସନା ଜ୍ଞାପନ କରି ହଜି ଯାଇଥିବା ଅମର, ଅବିନଶ୍ୱର ଆତ୍ମାର ସଦ୍‌ଗତି ଉଦ୍ଦେଶ୍ୟରେ ଭକ୍ତିପୂତ କୋଟିକୋଟି ପ୍ରଣତି ଢ଼ାଳୁଛି ।

*କମଗପଦା (ବାଲିସାହି)*
*ପୁରାତନ ଛାତ୍ର, ଗୋ.ସ୍ମୃ. ବିଦ୍ୟାପୀଠ*





ତା ୨୫.୦୭.୦୫ ରିଖ ଦିନ ଗୋପାଳ ସ୍ମୃତି ବିଦ୍ୟାପୀଠ ପରିସରରେ ସ୍ୱର୍ଗତ କେଶବଚନ୍ଦ୍ର ନନ୍ଦଙ୍କ ମରଶରୀରକୁ ଏନ୍.ସି.ସି. ଛାତ୍ରଙ୍କ ସମ୍ମାନ ପ୍ରଦର୍ଶନ ।

# ଆଦର୍ଶ ଗୁରୁ

✦ ଶ୍ରୀ ହୃଦାନନ୍ଦ ଜେନା

ଜୀବନରେ ଅନେକ ଅନୁଭୂତି ଆସେ । ସେଥିମଧ୍ୟରେ ନିଜର ରୁଚି ଅନୁକୂଳ; ଆନ୍ତରିକ ସ୍ନେହ, ଶ୍ରଦ୍ଧା, ଭକ୍ତିମିଶ୍ରିତ ହୋଇଥିଲେ ତାହା ସ୍ମୃତି ଗ୍ରନ୍ଥାଗାରରେ ସାଇତା ହୋଇ ରୁହେ । ଗୋଟିଏ ଗୋଟିଏ ବ୍ୟକ୍ତିତ୍ୱ ତଥା ବିଶିଷ୍ଟଗୁଣରେ କେହି କେହି ଅନୁପ୍ରାଣିତ ହୋଇ ସେଇ ଛାୟାରେ ନିଜର ଜୀବନ ଅତିବାହିତ କରିବାକୁ ବ୍ରତୀ ହୋଇଥା'ନ୍ତି । ଏକଲବ୍ୟ ଦ୍ରୋଣଙ୍କୁ ଗୁରୁ କଲାଭଳି ଗୁରୁଙ୍କ ଅଗୋଚରରେ ତାଙ୍କୁ ନିଜ ହୃଦୟ ମନ୍ଦିରରେ ଅଧିଷ୍ଠିତ କରାଇଥିଲେ । ମୋ ଜୀବନରେ ଏମିତି ଚାରିଜଣ ଗୁରୁ ସେମାନଙ୍କ ଆଗୋଚରରେ ମୋ ହୃଦୟ ମନ୍ଦିରରେ ପୂଜା ପାଇ ଆସିଛନ୍ତି । ମନ ତାଙ୍କୁ ଶୈଶବ କାଳରୁ ଏ ପର୍ଯ୍ୟନ୍ତ ଭକ୍ତିରେ ବାନ୍ଧି ରଖିଛି । ସେମାନେ ହେଲେ ଜଗତସିଂହପୁର ଜିଲ୍ଲାର ମେହେନ୍ଦିପୁର ଗ୍ରାମର କବିରାଜ ସୋମନାଥ ଦାସ, ଗୋପାଳ ସ୍ମୃତି ବିଦ୍ୟାପୀଠର ଭୂତପୂର୍ବ ଶିକ୍ଷକ ସ୍ୱର୍ଗତ ଜୟକୃଷ୍ଣ ପାଣିଗ୍ରାହୀ, ଭୂତପୂର୍ବ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଶିବପ୍ରସାଦ ମିଶ୍ର ଏବଂ ଉକ୍ତ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠାତା ଭୂତପୂର୍ବ ସମ୍ପାଦକ ନିକଟ ଅତୀତରେ ଇହଲୀଳା ସମ୍ବରଣ କରିଥିବା କେଶବ ଚନ୍ଦ୍ର ନନ୍ଦ ।

୧୯୫୭ ମସିହା ଜୁଲାଇ ମାସ ସକାଳ ପ୍ରାୟ ସାତଟା । ଗ୍ରାମ ପ୍ରାଥମିକ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେବାପରେ ଗୋପାଳ ସ୍ମୃତି ବିଦ୍ୟାପୀଠ, ସିଦ୍ଧେଶ୍ୱରପୁର ଠାରେ ୪ର୍ଥ ଶ୍ରେଣୀରେ ନାମ ଲେଖାଇଥାଏ । ଶନିବାର ସକାଳୁ ବିଦ୍ୟାଳୟରେ ଯୋଗ ଦେବା ପାଇଁ ବାପାଙ୍କ ସହ ସାଇକେଲରେ ଆସୁଥାଏ । ବାପା କଟକ ଯାଉଥିବାରୁ ସାଇକେଲରେ ଯିବାର ସୁବିଧା ମିଳିଥାଏ । ସିଦ୍ଧେଶ୍ୱରପୁର ଗ୍ରାମର ପୂର୍ବମୁଣ୍ଡ ପାର୍ଶ୍ୱ ଶିବମନ୍ଦିର ପାଖରେ ବାପା ଅଟକି ଜଣେ ଭଦ୍ରବ୍ୟକ୍ତିଙ୍କୁ ନମସ୍କାର

ଜଣାଇ ମୋତେ ନମସ୍କାର କରିବାକୁ କହିଲେ । ଭଦ୍ରବ୍ୟକ୍ତିଙ୍କର ଗୋରା ଚେହେରା, ଉତ୍ତମ ସ୍ୱାସ୍ଥ୍ୟ, ଧୋତି ପରିହିତ, ଖୋଲା ଦେହ, ମୁଣ୍ଡରେ ନାଲି ରଂଗ ଗାମୁଛାର ଠେକା, ବାମ କାନ୍ଧରେ କୋଦାଳ । ବାପା ବିନମ୍ର ସ୍ୱରରେ କହିଲେ, "ମୋ ପୁଅ ହାଇସ୍କୁଲରେ ଏବେ ନାମ ଲେଖାଇଛି । ସବୁଦିନ ଆସିବ । ଆପଣଙ୍କ ଦୃଷ୍ଟି ରହିବା ପାଇଁ ଅନୁରୋଧ ।" ଭଦ୍ରବ୍ୟକ୍ତି ଖୁସି ହୋଇ କହିଲେ, "ଭଲ ହେଲା, ତା'ପାଇଁ ଗୋଟିଏ ଯୁନିଫର୍ମ ପୋଷାକ କରିବେ । ଏ ଭଲ ମଣିଷ ହେବ । କିଛି ଆବଶ୍ୟକ ହେଲେ ମୋତେ କହିବ ।" ତାହା ପରେ ବାପାଙ୍କ ଠାରୁ ଜାଣିଲି, ସେ ଥିଲେ ମୁଁ ପଢୁଥିବା ବିଦ୍ୟାଳୟର ସମ୍ପାଦକ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ । ମୋ ଦୃଷ୍ଟିରେ 'ସମ୍ପାଦକ' ଶବ୍ଦଟି ସେତେବେଳେ ଆଜିକାଲିକାର ମନ୍ତ୍ରୀ ପଦଟିଏ ଭଳି ମନେହେଲା । ଭାବିଲି ଏତେବଡ଼ ଲୋକ ସ୍କୁଲ ବସାଇଛନ୍ତି, ନିଶ୍ଚୟ ବହୁତ ପାଠ ପଢିଥିବେ । ଇଏ ପୁଣି କୋଦାଳଧରି ବିଲକୁ ଯାଉଛନ୍ତି !— ଏହା ହିଁ ମୋର ବାଳସୁଲଭ ମାନସ ସ୍ତରରେ ପ୍ରଥମ ଛାପ, ପ୍ରଥମ ପ୍ରେରଣା, ଓ ବୁମ୍ବକୀୟ ଆକର୍ଷଣର ମୂଳଦୁଆ ତଥା ଜୀବନରେ ଆଦର୍ଶକୁ ଗ୍ରହଣ ପାଇଁ ପ୍ରଥମ ସଂକଳ୍ପ ଏବଂ ପ୍ରଥମ ପାହାଚ ।

ତା'ପରେ ସ୍କୁଲକୁ ଆସିବାବେଳେ, ବିଦ୍ୟାଳୟ ପରିସରରେ ସାକ୍ଷାତ ହୁଏ । ମନ ମଧ୍ୟରେ ଭକ୍ତି ରଖି ନମସ୍କାର ଟିଏ କରେ । ବୋଧେ, ସେ ଚିହ୍ନି ପାରନ୍ତି ନାହିଁ, ଏତେ ପିଲାଙ୍କମାନଙ୍କ ମଧ୍ୟରେ ମୁଁ ବା କ'ଣ କି ? ହେଉ, ନ ଚିହ୍ନନ୍ତୁ ପଛେ ସେଦିନର କୋଦାଳଧରା ଚିତ୍ରଟି ହୃଦୟରେ ଅଙ୍କିତ ହୋଇ ରହିଥାଉ । ବିଦ୍ୟାଳୟରେ ଶ୍ରମ ସପ୍ତାହ ପାଳିତ ହେଲାବେଳେ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଶିବପ୍ରସାଦ ମିଶ୍ରଙ୍କ ସହ ସେ ମଧ୍ୟ ବିଦ୍ୟାଳୟ ପରିସରରେ ବୁଲି କାର୍ଯ୍ୟ ତଦାରଖ କରିବା ସହ ପିଲାମାନଙ୍କୁ ଉତ୍ସାହ ଏବଂ ପ୍ରେରଣା ଦିଅନ୍ତି । ଗଣେଶ ପୂଜା, ସରସ୍ୱତୀ ପୂଜା ଏବଂ ଜାତୀୟ ଦିବସରେ ଯୋଗ ଦେଇ ଛାତ୍ରଛାତ୍ରୀଙ୍କୁ ଉତ୍ସାହିତ କରନ୍ତି । ବିଶେଷ କରି ନୂତନ ଭାବେ ୧୯୬୨ ମସିହାରେ 'ଗୁରୁଦିବସ' ପାଳନ ଅବସରରେ ସେ ଛାତ୍ରଛାତ୍ରୀଙ୍କ ସହ ମିଶି ଉତ୍ସବଟି ପାଳନ ହେବାର ବିଧି ଏବଂ ପରିଚାଳନା କରି ସେ ନିଜେ ସତେ ଯେପରି ପୁରାତନ ଯୁଗର ଆରୁଣି, ଅଭିମନ୍ୟୁ ହୋଇ ଯାଉଥିଲେ । ସ୍କୁଲ ଘରର ଛପର ପାଇଁ ଧାନକଟା ସମୟରେ ଆମମାନଙ୍କ ଗ୍ରାମକୁ ଆସି ବିଲରେ ବୁଲି ଅଭିଭାବକମାନଙ୍କ ଠାରୁ ଭିକ୍ଷା କରି ଛଣ ସଂଗ୍ରହ କରୁଥିଲେ । ଆମେ ମଧ୍ୟ

ଆମର କ୍ଷମତା ଅନୁସାରେ ତାଙ୍କୁ ସହଯୋଗ କରି ମୁଣ୍ଡରେ ବୋହି ସ୍କୁଲରେ ଛଣ ପହଞ୍ଚାଉଥିଲୁ । ମୋଟ ଉପରେ କହିବାକୁ ଗଲେ ବିଦ୍ୟାଳୟର ପ୍ରତ୍ୟେକ କାର୍ଯ୍ୟର ସେ ଶିରାପ୍ରଶିରାରେ ବିଚରଣ କରୁଥିଲେ ।

ତାଙ୍କର ଏଭଳି କାର୍ଯ୍ୟକଳାପ, ନିଷ୍ଠା, ଆଗ୍ରହର ଆଦର୍ଶକୁ ଲକ୍ଷ୍ୟକରି ମୁଁ ଭାବେ ଯଦି ସୁବିଧା ପାଏ, କୌଣସି ବିଦ୍ୟାଳୟ ସମ୍ପାଦକ ହୋଇ ମୁଁ ତାଙ୍କରି ପରି ଆଦର୍ଶ ପ୍ରତିଷ୍ଠାପାଇଁ ଚେଷ୍ଟା କରିବି । ଆଜି ସେ ଦିନର ସ୍ୱପ୍ନ କିଛିଟା ସମ୍ଭବପର ହୋଇଥିଲେ ମଧ୍ୟ ବର୍ତ୍ତମାନ ପରିବର୍ତ୍ତିତ ସମାଜରେ ସାମୂହିକ କାର୍ଯ୍ୟରେ ବାଧାବିଘ୍ନ ଫଳରେ ମୋତେ ଖାଣ୍ଟି କେଶବ ନନ୍ଦ ହେବାରୁ ବଞ୍ଚିତ ହେବାକୁ ପଡ଼ିଛି । ଏହା ହିଁ ମୋର ଅବଶୋଷ ।

ବି.ଏ. ପାଶ୍ କଲା ପରେ ଚାକିରି ଅପେକ୍ଷାରେ ଘରେ ରହିଥାଏ । ବେକାର ଭାବେ ଗୋଟିଏ ବର୍ଷ କଟାଇଲି । ସେ ସମୟରେ ବିଲକୁ ଯାଇ ହଳମଜୁରିଆକୁ କାର୍ଯ୍ୟରେ ସାହାଯ୍ୟ କରେ । ସେତେବେଳେ ପାଠପଢୁଆ ଲୋକ କୃଷକାର୍ଯ୍ୟ କରିବାକୁ ଟିକେ ସଂକୋଚ ମନେ କରୁଥିଲେ । ମୁଁ କିନ୍ତୁ ଭାବେ ମୋର ଆଦର୍ଶ ପୁରୁଷ ବିଦ୍ୟାଳୟ ପରିଚାଳନା କରି ଯଦି କୋଦାଳ ଧରି ବିଲକୁ ଯାଆନ୍ତି, ମୁଁ କାହିଁକି ଯାଇପାରିବି ନାହିଁ ! ତାଙ୍କ ଭଳି ଆମର ଖାନ୍ଦାନି ନାହିଁ, ବିଦ୍ୟା ନାହିଁ, ଖାତିର ନାହିଁ । ଯଦି ମୁଁ ବିଲକୁ ନ ଯାଏ କି ଆଦର୍ଶ ଗ୍ରହଣ କଲି ? ତା'ଛଡ଼ା ମୁଁ ଯେପରି ଆଦର୍ଶରେ ଅନୁପ୍ରାଣିତ ହେଉଛି, ମୋ' ଠାରୁ ସାନମାନେ ମୋତେ ଦେଖି ହୁଏତ ଉତ୍ସାହିତ ହେଲେ ସମାଜ କିଛି ଉପକୃତ ହେବ । ଥରେ ବେଉଷଣ ସାରି ସନ୍ଧ୍ୟାପୂର୍ବରୁ ଘରକୁ ଫେରୁଥାଏ । ଜଣେ ବୁଢା ଗାଁ ମୁଣ୍ଡରେ ମୋତେ ଦେଖି ସହର୍ଷ ମନ୍ତବ୍ୟ ଦେଲେ "ଯା ! ପାଠତକ ମାଟିରେ ଗଲା !" ଶୁଣି ମନେ ମନେ ହସିଲି, ମନେ ମନେ ଭାବିଲି— କହିବା ସ୍ୱାଭାବିକ; କିନ୍ତୁ କେଶବ ନନ୍ଦଙ୍କୁ ଦେଖି ଏ କଥା କହିପାରି ନ ଥା'ନ୍ତେ । ସେ ସୂର୍ଯ୍ୟ ହେଲେ ମୁଁ ଖଦ୍ୟୋତ ମାତ୍ର । ଏ ଉତ୍ତର ଦେଲେ ବୁଢା ତ ବୁଝି ପାରିବ ନାହିଁ ।

ବିଦ୍ୟାଳୟ ଶିକ୍ଷା ପରଠାରୁ କେବେ କେମିତି ଦେଖାହୁଏ । ଛୋଟ କେନାଲ କୂଳରେ ଥିବା ତାଙ୍କର କଦଳୀ ବଗିଚାକୁ ଟେଣ୍ଡାରେ ଚଢ଼ି ପାଣି ବୋହୁଥିବା ବେଳେ ତ କେତେବେଳେ ବିଲକୁ କୋଦାଳ କାନ୍ଧରେ ପକାଇଯିବା ବେଳେ । ଭାବେ ମୁଁ

ଏମିତି ଆଦର୍ଶ ଲୋକ ହେବି । ମନରେ ଅହଂକାର ନାହିଁ । ସେବା କାର୍ଯ୍ୟରେ ବ୍ୟସ୍ତ । ଅଥଙ୍ଗାର ଚିନ୍ତାମଣି ବାଳିକା ବିଦ୍ୟାଳୟ ସ୍ଥାପନ ପରେ କନ୍ଦରପୁର କଲେଜ ପ୍ରତିଷ୍ଠାର ଉଦ୍‌ଯୋଗ ପର୍ବର ଆରମ୍ଭ । ଇତିମଧ୍ୟରେ ତାଙ୍କର ଆଦର୍ଶ ସାକାର କରିବା ନେଇ ମନରେ ପୋଷଣ କରିଥିବା ଅଭୀପ୍ସା ବଳବତ୍ତର ହୋଇଥାଏ । କଲେଜ ପ୍ରତିଷ୍ଠାର ସଂକଳ୍ପରେ ମୁଁ ତାଙ୍କ ସହିତ ସହଯୋଗୀ ଥାଏ । ତାଙ୍କ ସହିତ ଗ୍ରାମକୁ ଗ୍ରାମ ବୁଲି ଅର୍ଥସଂଗ୍ରହ କରୁଥାଉ । ମଝିରେ ମଝିରେ ବୈଠକରେ ମିଳିତ ହେଲେ ଉଦ୍‌ଯୋଗ ଏବଂ ସମ୍ପନ୍ନ କରାଯାଇଥିବା କାର୍ଯ୍ୟରେ ସମୀକ୍ଷା କରାଯାଇ ପ୍ରସ୍ତାବ ନିଆଯାଏ । ତାଙ୍କର ବୃଦ୍ଧ ବୟସରେ ଅଦମ୍ୟ ଉତ୍ସାହ, କର୍ମପ୍ରବଣତା, ମନୋବଳ, ନିଷ୍ଠା ମୋତେ ଅଭିଭୂତ କରିଦିଏ । ଭାବେ ମୋତେ ଲୋକ ତାଙ୍କଭଳି ଚିହ୍ନି ଥାଆନ୍ତେ କି ତାଙ୍କୁ ପରିଶ୍ରମ କରିବାକୁ ନ ଦେଇ ମୁଁ ତାଙ୍କ କାର୍ଯ୍ୟ ତୁଲାନ୍ତି ।

କଲେଜ ସ୍ଥାପନ ପରେ ମୁଁ ତାଙ୍କର ନିକଟତର ହୁଏ । ଚିହ୍ନା ହୋଇ ନ ଥିବାରୁ ମୁଁ ଛାତ୍ରାବସ୍ଥାରେ ଅବଶୋଷ କରୁଥିଲି, ସେତକ ପୂରଣ ହେଲା । ସିଦ୍ଧେଶ୍ୱରପୁର ଠାରେ ପୁରୁଣା ପୋଷ୍ଟ ଅଫିସଟି ମହାବାତ୍ୟାରେ ଭାଙ୍ଗିଯାଇଥାଏ । ତା'ର ପୁନରୁଦ୍ଧାର ପାଇଁ ଶ୍ରୀ ପ୍ରଦ୍ୟୁମ୍ନ ଆଚାର୍ଯ୍ୟ ଉଦ୍ୟମ କରୁଥା'ନ୍ତି । କର୍ଣ୍ଣଧାର ହୋଇଥା'ନ୍ତି ସ୍ୱର୍ଗତ ନନ୍ଦ ମହାଶୟ । ଖରାଦିନ । ଦିନର ମଧ୍ୟାହ୍ନ ସମୟ, ମୁଁ ବାହାରୁ ଆସି ଦେଖିଲି, ସ୍ୱର୍ଗତ ନନ୍ଦ ଆମ ଘର ଖଟ ଉପରେ ବିଶ୍ରାମ ନେଉଛନ୍ତି । ଆଶ୍ଚର୍ଯ୍ୟ ! କ'ଣ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କଳା ଦେବାକୁ ଆସିଛନ୍ତି ? କେଶବବାବୁ— ଆଉ ଆମ ଟିକି ଟାଇଲ୍ ଘର, ବିଶ୍ୱାସ କରିବାକୁ କୁଣ୍ଠାବୋଧ କଲି । ଆନନ୍ଦାଶ୍ରୁ ଝରିପଡ଼ିଲା । ସେ ଉଠିପଡ଼ି କହିଲେ, "ହୃଦାନନ୍ଦ, ଆମେ ଡାକଘର ପୁନରୁଦ୍ଧାର ଉଦ୍ଦେଶ୍ୟରେ ଅର୍ଥ ସଂଗ୍ରହ ପାଇଁ ଆସିଛୁ, ତୁମେ ଆମକୁ ସାହାଯ୍ୟ କର ।" ଏ ସେବା ଆହ୍ୱାନଙ୍କୁ ମନା କରିବାର ପ୍ରଶ୍ନ ନାହିଁ । ନମସ୍କାରଟିଏ କରି କହିଲି, "ଆପଣ ଟିକିଏ ବିଶ୍ରାମ ନିଅନ୍ତୁ । ଖରା କମିଲେ ଯିବା ।" ସେଦିନର ଅନୁଭୂତି ଜୀବନରେ ଭୁଲିହେବ ନାହିଁ ।

ମୁଁ ଗତ କିଛି ବର୍ଷ ହେଲା ସିଦ୍ଧେଶ୍ୱରପୁରଠାରେ ଥିବା ଶ୍ରୀ ଶ୍ରୀ ବିଶୁଦ୍ଧାନନ୍ଦ ସାରସ୍ୱତ ସଂଘରେ ଯୋଗଦେବା ଫଳରେ ସେ ଗ୍ରାମକୁ ଅଧିକ ଥର ଯିବା-

ଆସିବା କରେ । ତାଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀ କାହ୍ନୁପ୍ରସାଦ ନନ୍ଦଙ୍କର ସେ ସଂଘ ସହ ସମ୍ପର୍କ ଅଛି ।

ତାଙ୍କ ସହିତ ମିଶିବା ଫଳରେ ତାଙ୍କ ଘରକୁ ଯାଇ କେଶବବାବୁଙ୍କ ସହ ମିଶିବାର ମଉକା ମିଳେ । କେବେ କେବେ କଥାବାର୍ତ୍ତା ହୁଅନ୍ତି । ଅଧିକ ଅସୁସ୍ଥ ହେଲାପରେ ମୁଁ ଶାନ୍ତିରେ ବାଧା ନ ଦେବା ପାଇଁ ତାଙ୍କ ସହିତ କଥାବାର୍ତ୍ତା ହେବାରୁ ନିବୃତ୍ତ ରହେ । ପରେ କଟକରେ ରଖି ତାଙ୍କର ଚିକିତ୍ସା ବ୍ୟବସ୍ଥା କରାଗଲା । ମଝିରେ ମଝିରେ କାହ୍ନୁପ୍ରସାଦ ବାବୁଙ୍କ ଠାରୁ ତାଙ୍କ ସ୍ୱାସ୍ଥ୍ୟ ବିଷୟରେ ବୁଝେ । କିନ୍ତୁ କଟକରେ ଭେଟିବାକୁ  ସୁଯୋଗ ମିଳେନାହିଁ ।

ଦୁର୍ଭାଗ୍ୟ । ଜୁଲାଇ ୨୫.୭.୨୦୦୫ ତାରିଖରେ ଖବର ପାଇଲି କେଶବବାବୁ ଗ୍ଭଲିଗଲେ । ମୁଁ ଅଫିସରୁ ଫେରିବାବେଳକୁ ଶବାଧାର ବଜାର, ଗ୍ରାମ, ବିଦ୍ୟାଳୟ ଇତ୍ୟାଦି ପରିକ୍ରମା କରି ଦାହ ପାଇଁ କଟକ ଫେରିଗଲାଣି । ଶେଷଦର୍ଶନ ହୋଇପାରିଲା ନାହିଁ । ଯାହା କପାଳରେ ଅଛି, ହେଲେ ଆଦର୍ଶ ପାଳନ କଲେ ହେଲା । ମୋର ବର୍ଣ୍ଣିତ ଗୁରୁ ମଧ୍ୟରୁ ସୋମନାଥ ଦାସ, ଏବଂ ଜୟକୃଷ୍ଣ ପାଣିଗ୍ରାହୀଙ୍କ ପାଇଁ ନିରାମିଷ ଭୋଜନ ଶୁଦ୍ଧିକ୍ରିୟା ପର୍ଯ୍ୟନ୍ତ କରୁଥିଲି । ଏଥର ମଧ୍ୟ ତାହା ପାଳନ କଲି । ମୋ ଜୀବନରେ ଗୋଟିଏ ବିଡ଼ମ୍ବନା, ମୁଁ ଯାହାଙ୍କୁ ବେଶୀ ଅନ୍ତରରେ ସମ୍ମାନ ଦିଏ ବା ଯିଏ ମୋତେ ଅତ୍ୟନ୍ତ ଶ୍ରଦ୍ଧା କରନ୍ତି— ଅନ୍ତିମ ସମୟରେ ମୋର ତାଙ୍କ ସାକ୍ଷାତ ହୋଇପାରେ ନାହିଁ । ରାମଚନ୍ଦ୍ର ଦଶରଥଙ୍କୁ ଦେଖିପାରି ନ ଥିଲେ । ଶେଷ ଦେଖା ତ ହୋଇପାରିଲା ନାହିଁ । ହେଲେ ତାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଦେବା ପାଇଁ ଆହୁତ ସଭାରେ ମଧ୍ୟ ଦୁର୍ଭାଗ୍ୟବଶତଃ ଯୋଗ ଦେଇପାରି ନାହିଁ । ପରେ ଜାଣିଲି, ମୋ ଉଦ୍ଦେଶ୍ୟରେ ଏହି ସମ୍ବାଦ ନେଇ ପ୍ରେରିତ ଚିଠିଟି ବାଟରେ ନିରୁଦ୍ଦିଷ୍ଟ ହୋଇଯାଇଛି । ବୋଧେ ତାଙ୍କ ପ୍ରତି ମୋର ଶ୍ରଦ୍ଧାଞ୍ଜଳି ଏଭଳି ସୂକ୍ଷ୍ମଭାବରେ ହେବା ପାଇଁ ବିଧିନିର୍ଦ୍ଦିଷ୍ଟ ଥିଲା । ଯାହାହେଉ, ସେ ସ୍ମୃତିରେ ରହି ମୋର ଅବଶିଷ୍ଟ ଜୀବନକୁ ଅନୁପ୍ରାଣିତ କରୁଥା'ନ୍ତୁ— ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

*ସରସୁତା, ପୁରାତନ ଛାତ୍ର, ଗୋ:ସ୍କୁ:ବିଦ୍ୟାପୀଠ*





ଶିଶୁ କେଶବ ଚନ୍ଦ୍ର ନନ୍ଦ ତାଙ୍କର ସ୍ୱର୍ଗତ ପିତା ରାୟସାହେବ କୃଷ୍ଣଚନ୍ଦ୍ର ନନ୍ଦ (ଦେୱାନ ଦର୍ପଣୀ)ଙ୍କ ସହିତ



ଗାଁ
କମାଣ୍ଡରପୁରରେ
ଅବସ୍ଥିତ
୰ କେଶବଚନ୍ଦ୍ର
ନନ୍ଦଙ୍କର
ପୈତୃକ ଗୃହ



ବଡ଼ବୋହୂ
ନାତୁଣୀ ଓ
ଅଣନାତୁଣୀଙ୍କ
ସହିତ
୰ କେଶବ ଚନ୍ଦ୍ର
ନନ୍ଦ



ଅଣନାତି ଓ
ଅଣନାତୁଣୀଙ୍କ
ସହିତ
୰କେଶବ ଚନ୍ଦ୍ର
ନନ୍ଦ

ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦଙ୍କ ବିୟୋଗରେ
ଗୋପାଳ ସ୍ମୃତି ବିଦ୍ୟାପୀଠରେ ଆହୂତ ଶୋକସଭା







# ଅଭୁଲା ସ୍ମୃତି

✦ ଶ୍ରୀ ବସନ୍ତ କୁମାର ତ୍ରିପାଠୀ

୧୯୪୯ ମସିହା ଜୁଲାଇ ମାସ । ନୂଆ ନୂଆ ମାଟ୍ରିକ ପରୀକ୍ଷାରେ ପାଟନା ବିଶ୍ୱବିଦ୍ୟାଳୟରୁ ପାସ୍ କରି କଟକ ଆସିଲାବେଳକୁ କଟକରେ କୌଣସି କଲେଜରେ ପଢ଼ିବା ପାଇଁ ସ୍ଥାନ ମିଳିଲା ନାହିଁ ।'ସେତେବେଳେ ଆମ କଲେଜରେ ସିଦ୍ଧେଶ୍ୱରପୁରରୁ ମାଇନର ପାସ୍ କରିସାରିଲା ପରେ ଆମକୁ ପଢ଼ିବା ପାଇଁ ଆଖପାଖରେ କୌଣସି ହାଇସ୍କୁଲ ନ ଥିଲା । ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ ଆପ୍ରାଣ ଉଦ୍ୟମ କରି ସିଦ୍ଧେଶ୍ୱରପୁରରେ ହାଇସ୍କୁଲଟିଏ ଅନ୍ୟମାନଙ୍କ ସହଯୋଗରେ ସ୍ଥାପନ କଲେ । ଏଠାରେ ହାଇସ୍କୁଲଟିଏ ଆରମ୍ଭ କରିବା ପୂର୍ବରୁ ସ୍ୱର୍ଗତ ନନ୍ଦ ଆମମାନଙ୍କୁ କହିଲେ, "ତୁମେ ସବୁ ଏଠି ମାଇନର ସ୍କୁଲରୁ ମୂଳରୁ ପାଠ ପଢ଼ିଛ । ଏ ସ୍କୁଲ ହାଇସ୍କୁଲରେ ପରିଣତ ହୋଇ ଭଲ ଭାବରେ ଚାଲିବା ପର୍ଯ୍ୟନ୍ତ ତୁମେମାନେ ଏଠାରେ କିଛିଦିନ ଶିକ୍ଷକତା କରିବାକୁ ପଡ଼ିବ । କିନ୍ତୁ ପାରିଶ୍ରମିକ ଭାବରେ ସେପରି କିଛି ଆଶା କରିବ ନାହିଁ ।" ଯାହାଫଳରେ ଆମେମାନେ (ମାଇନର ସ୍କୁଲର ଛାତ୍ର) ଏହି ସ୍କୁଲରେ ଯୋଗଦେଲୁ । ସେତେବେଳେ ସ୍କୁଲଘର ଛପର ପାଇଁ ପିଲାମାନଙ୍କୁ ନେଇ ଶଙ୍ଖପୁରରୁ ନଡ଼ା ଓ ଫକୀରପଡ଼ାରୁ ବାଉଁଶ ସଂଗ୍ରହ କଲୁ । ପିଲାମାନେ ପରୀକ୍ଷାରେ ଯେପରି ଭଲ କରିବେ, ସେଥିପାଇଁ ସ୍କୁଲ ଛୁଟିରେ ପ୍ରତିଦିନ ପିଲାମାନଙ୍କୁ ବିନା ପାରିଶ୍ରମିକରେ ପଢ଼ାଉ । ଏହିପରି ଭାବରେ ଏହି ଶିକ୍ଷାନୁଷ୍ଠାନଟି ଭଲଭାବରେ ଗଢ଼ିଉଠିଲା । ସେ ସମୟରେ ଶିକ୍ଷକ ଶ୍ରୀ ବଟକୃଷ୍ଣ ମିଶ୍ରଙ୍କର ଆନ୍ତରିକ ଉଦ୍ୟମରେ "କଳ୍ପଲତା" ବୋଲି ଗୋଟିଏ ହାତଲେଖା ମାଗାଜିନ୍ ମଧ୍ୟ ସ୍କୁଲ ତରଫରୁ କିଛିଦିନ ପାଇଁ ପ୍ରକାଶ ପାଇଥିଲା । ଆଉ ମଧ୍ୟ ସ୍ୱର୍ଗତ ନନ୍ଦ ପରମହଂସ ମନ୍ଦିରର ସେହି ସମୟରେ ଟ୍ରଷ୍ଟି ଥିଲାବେଳେ ସେଠାରେ ଶିବରାତ୍ରି ମେଳାରେ ଏଠା ସ୍କୁଲର ସ୍କାଉଟ୍ ପିଲାମାନେ ସେଠାକୁ ଯାଇ ଶାନ୍ତିଶୃଙ୍ଖଳା ରକ୍ଷା କରୁଥିଲେ । ବର୍ତ୍ତମାନ ଏହି ସ୍କୁଲଟି ଏବେ

ସରକାରଙ୍କର ପୂର୍ଣ୍ଣ ନିୟନ୍ତ୍ରଣାଧୀନ ଓ ବେଶ ଉନ୍ନତି କରିବା ଦେଖି ଆନନ୍ଦ ଲାଗୁଛି । ଏହି ପରିଣତ ବୟସରେ ମୋର ଆଉ କିଛି ଲେଖିବାର ନାହିଁ ।

କନ୍ଦରପୁର
ପୁରାତନ ଶିକ୍ଷକ, ଗୋ.ସ୍ମୃ. ବିଦ୍ୟାପୀଠ





ତା ୨୫.୦୭.୦୫ ରିଖ ଦିନ ଗୋପାଳ ସ୍ମୃତି ବିଦ୍ୟାପୀଠ ପରିସରରେ
ସ୍ୱର୍ଗତ କେଶବଚନ୍ଦ୍ର ନନ୍ଦଙ୍କ ମରଶରୀରକୁ ଛାତ୍ରଛାତ୍ରୀ ଓ ଶିକ୍ଷକଙ୍କର ସମ୍ମାନ ପ୍ରଦର୍ଶନ ।

# କର୍ମବାଦୀ କେଶବବାବୁ

✦ ଶ୍ରୀମତୀ ପ୍ରଭାମୟୀ ଦେବୀ

୧୯୬୪ ମାର୍ଚ୍ଚ ୨ ତାରିଖ, ଅପରାହ୍ଣ । ବାପା ଡାକ ପକାଇଲେ, "ଆରେ ମା' ପ୍ରଭା, କେଶବବାବୁ ଆସିଛନ୍ତି ।" ପାଣି ଆଣି ଗୋଡ଼ ଧୋଇଦେଲି, ଭୂମିଷ୍ଠ ପ୍ରଣାମ କଲି । ମୁଣ୍ଡରେ ଆଶିଷର ହାତ ବୋଳିଦେଲେ । ବାପାଙ୍କୁ କହିଲେ, "କାଲି ପ୍ରଭା ଅଥଙ୍ଗା ସ୍କୁଲରେ ଜଏନ୍ କରିବ ।" ବାପା କହିଲେ— ମାତ୍ର ଦୁଇ ଦିନ ହେଲା ତା'ର ମାଟ୍ରିକ୍ ପରୀକ୍ଷା ସରିଛି; ଏତେ ଶୀଘ୍ର !" କିନ୍ତୁ ପୂଜ୍ୟ କେଶବଚନ୍ଦ୍ର ନନ୍ଦ ଶୁଣିବାକୁ ପ୍ରସ୍ତୁତ ନ ଥିଲେ ।

ସେହି ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର ମାଇନର ସ୍କୁଲରୁ ହାଇସ୍କୁଲ ହେଲା । ବ୍ରାହ୍ମଣବାଡ଼ର ପୂଜ୍ୟ ବଂଶୀଧର ଜେନା ସଭାପତି, କେଶବ ଚନ୍ଦ୍ର ନନ୍ଦ ସଂପାଦକ, ଏବଂ ଅନ୍ୟାନ୍ୟ ସ୍ଥାନୀୟ ଭଦ୍ରବ୍ୟକ୍ତିଙ୍କ ଆନ୍ତରିକ ସହଯୋଗରେ ବିଦ୍ୟାଳୟଟି ଛାତ୍ରୀ ସମ୍ଭାର ଧରି ଉନ୍ନତିର ସବୁ ସୋପାନ ଛୁଇଁ ଛୁଇଁ ଆଗେଇ ଚାଲିଲା । କେଶବବାବୁଙ୍କ ତାଗିଦ୍, "ଯେତିକି ପିଲା, ସମସ୍ତେ ଉତ୍ତୀର୍ଣ୍ଣ ହେବେ ଭଲ ଡିଭିଜନ୍ ସହିତ । ସମୟ ସମୟରେ ୰ରତ୍ନାକର ପତି ମହୋଦୟଙ୍କୁ ନେଇ ଅଗ୍ନନକ ଉପସ୍ଥିତ ହୁଅନ୍ତି ପାଠ ପଢ଼ାର ପରୀକ୍ଷାନିରୀକ୍ଷା ପାଇଁ । କି ଆନ୍ତରିକତା! ତାଙ୍କର ଦୁଇ ହାତ, ଶ୍ରୀଯୁକ୍ତ ବଟକୃଷ୍ଣ ମିଶ୍ର ଓ ଶ୍ରୀଯୁକ୍ତ ନଟବର ସାହୁ ଯେଉଁମାନେ ମୋର ପୂଜ୍ୟ ଶିକ୍ଷକ ।

ଥରେ ଆମକୁ କହିଲେ, "ବୁଝିଲ ପିଲାଏ, ଗୋପାଳ ସ୍ମୃତି ବିଦ୍ୟାପୀଠ ପାଇଁ ମୋ ସ୍ତ୍ରୀର ସବୁ ଗହଣା ବିକ୍ରି ହୋଇଯାଇଛି । ତା'ର ସହଯୋଗ ନଥିଲେ ଶିକ୍ଷାର ବିକାଶ ପାଇଁ ମୋର ଯେଉଁ ଆଗ୍ରହ, କେବେହେଲେ ପୂର୍ଣ୍ଣ ହୋଇ ନ ଥା'ନ୍ତା । ଦୁର୍ଗାନାନୀ କେଶବବାବୁଙ୍କ ସହଧର୍ମିଣୀ । ଜମିଦାର ଘର ଝିଅ ହେଲେ

କ'ଣ ହେଲା, ଗର୍ବ ନାହିଁ କି ଦମ୍ଭ ନାହିଁ । ପରୋପକାରୀ, ଅମାୟିକ ନାରୀଟିଏ । ଦୁଃଖୀ, ରଙ୍କି, ଭୋକୀ, ଶୋଷୀଙ୍କ ପେଟ ଚିହ୍ନିଲା ଲୋକ । ଜାତିଅଜାତିର ବାଛବିଗ୍ଭର ନାହିଁ । ନାରୀ ଜାତିର ଆଦର୍ଶ । ଅବିସ୍ମରଣୀୟା ।

ବୋଧହୁଏ ୧୯୬୮ ପୂର୍ବ ଘଟଣା । ହଠାତ୍ ଖବର ପାଇଲୁ ସାର୍‌ଙ୍କର କାର୍ ପଶିଯାଇଛି ଗୋଟିଏ ପୋଖରୀରେ; କିନ୍ତୁ ସେ ଅଳ୍ପକେ ବର୍ତ୍ତିଯାଇଛନ୍ତି । ଦୌଡ଼ିଲୁ ଭୁବନେଶ୍ୱର । ସାର୍ କହିଲେ, "ଆରେ ପିଲାଏ, ମରିଥିଲେ ତ ୨/୩ ଦିନ ହୁଅନ୍ତାଣି । କାହାକୁ ଦେଖିବାକୁ ଆସିଥା'ନ୍ତ ?" ମୁଁ କହିଲି—'ନାଁ ସାର୍, ଆପଣ ଏବେ ଯାଇ ପାରିବେନି, ଆପଣଙ୍କର ଅନେକ କିଛି କରିବାର ଅଛି । ସେ ସମୟ, ସେ କଥା ମନେ ପଡ଼ିଲେ ଭିତରୁ କୋହ ଆସେ । ଆଖି ଜକେଇଯାଏ ।

କର୍ମ ହିଁ ଜୀବନ— କର୍ମବାଦ ଉପରେ ସେ ବିଶ୍ୱାସ କରନ୍ତି । ଅଚଳ ହେବା ପର୍ଯ୍ୟନ୍ତ ସତ୍‌କାର୍ଯ୍ୟରେ ବ୍ୟସ୍ତ ରହିଛନ୍ତି କେଶବବାବୁ । ସେ ଆତ୍ମନିର୍ଭରଶୀଳ, ସଦାଗ୍ଭରୀ । ତାଙ୍କ ଗଢ଼ା ଅନୁଷ୍ଠାନ ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିରରେ ମୋର ଦୀର୍ଘ ୪୧ ବର୍ଷର ଶିକ୍ଷୟିତ୍ରୀ ଜୀବନ । ଯେଉଁ ବିଦ୍ୟାଳୟରୁ ମୁଁ ଶିକ୍ଷାଲାଭ କରିଛି, ସେହି ଗୋପାଳ ସ୍ମୃତି ବିଦ୍ୟାପୀଠ ତାଙ୍କରି ତ୍ୟାଗରେ ପରିପୁଷ୍ଟ । ଶିକ୍ଷାୟତନରେ ଅନେକ କଳିକା ସମୀରଣର ହିଲ୍ଲୋଳରେ ଚଳଚଞ୍ଚଳ, ନୃତ୍ୟାୟିତ ।

ଛାତ୍ରୀ, ଶିକ୍ଷକ, ଶିକ୍ଷୟିତ୍ରୀ ତୁମରି ଗୁଣଗାନ କରନ୍ତି ହେ ମହାତ୍ମା ! ତୁମେ ସୃଷ୍ଟି କରିଛ ଡାକ୍ତର, ଇଞ୍ଜିନିୟର, ଶିକ୍ଷାବିତ୍, ସମାଜସେବୀ । ଆମ ଅଞ୍ଚଳ ଯଦି ସରସ୍ୱତୀଙ୍କ ବରଦାନ ପାଇଥାଏ; ତେବେ ତୁମେ ମୁଖ୍ୟ ପୁରୋଧା । ଏ ସଂସାରରେ ମାନବ ଅନେକ; ମାତ୍ର ତୁମପରି ମହାମାନବ ଖୁବ୍ ଅଳ୍ପ । ତୁମରି ମହାନ୍ ଆତ୍ମାପ୍ରତି ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ।

*ଦାମୋଦରପୁର, ପୁରାତନ ଛାତ୍ରୀ*
*ପୁରାତନ ଶିକ୍ଷୟିତ୍ରୀ, ଚି.ସ୍ମୃ. ବାଳିକା ବିଦ୍ୟାମନ୍ଦିର,*
*ଅଥଗଡ଼*



# କେଶବବାବୁଙ୍କ ସ୍ମୃତି - ଅମର ଓ ଅମ୍ଳାନ

✦ ଶ୍ରୀ ପ୍ରହ୍ଲାଦ ସେଠୀ

୧୯୪୪-୪୫ ମସିହା ହେବ । ମୁସଲିମ୍ ସେମିନାରୀ ସ୍କୁଲରେ ପଢୁଥାଏ । ବଙ୍ଗାଳି ସାହିରେ ରହୁଥାଏ । ସବୁଦିନେ ଝୋଲାସାହି ଛକ ଦେଇ ନିମ ସାହି ବାଟରେ ସେମିନାରୀ ସ୍କୁଲକୁ ଯାଏ । ଦିନେ ଦେଖିଲି ନିମସାହିର ଏକ ନୂଆଣିଆ ଗୃହଘର କାନ୍ଥରେ ନେମ୍ପ୍ଲେଟ୍‌ରେ ଲେଖାଯାଇଛି କେ.ସି. ନନ୍ଦ, ଏକ୍‌ସାଇଜ୍ ଇନ୍ସପେକ୍ଟର । ମୋର ଜଣେ ସାଥୀପିଲା କହିଲା, ''ଏ ବାବୁଙ୍କ ଘର ତୁମ ଅଞ୍ଚଳର ସିଦ୍ଧେଶ୍ୱରପୁରରେ ।'' ତାଙ୍କୁ ଦେଖିବାକୁ ମୋର କୌତୂହଳ ହେଲା । ଦିନେ ସେଇ ଘର ପାଖରେ ଜଣେ ଅତି ସୁନ୍ଦର ଚେହେରାର ଏକ୍‌ସାଇଜ୍ ଇନ୍ସପେକ୍ଟର ୟୁନିଫର୍ମ ପିନ୍ଧି ଠିଆ ହୋଇଛନ୍ତି । ମୁଁ ଜାଣିଲି ଏ ହେଉଛନ୍ତି କେଶବ ନନ୍ଦ । ମୋର ଅଜାଣତରେ ତାଙ୍କ ପ୍ରତି ମୋର ମୁଣ୍ଡ ନଇଁଗଲା । ମୋର ତାଙ୍କ ପ୍ରତି କୌଣସି ବ୍ୟକ୍ତିଗତ ସଂପର୍କ ନ ଥିଲା ।

ମାଟ୍ରିକ୍ୟୁଲେସନ ପାସ୍ ପରେ ରେଭେନ୍‌ସା କଲେଜରେ ଆଡ୍‌ମିଶନ ନେଇ ଘରକୁ ଆସିଥାଏ । ଶୁଣିଲି କେଶବବାବୁ ସିଦ୍ଧେଶ୍ୱରପୁର ମାଇନର୍ ସ୍କୁଲରେ ହାଇସ୍କୁଲ କରିବା ପାଇଁ ଉଦ୍ୟମ କରୁଛନ୍ତି । କ୍ଲାସ ଖୋଲା ହୋଇଗଲାଣି । ସେ ଦିନ ମୋ ମନରେ ଆନନ୍ଦର ସୀମା ରହିଲା ନାହିଁ । କୃତଜ୍ଞତା, ଭକ୍ତିରେ ମୁଁ ଅଭିଭୂତ ହୋଇଗଲି । ସେ ସମୟରେ ପାଖରେ ହାଇସ୍କୁଲ ନଥାଏ । କଟକ କିମ୍ବା ଜଗତ୍‌ସିଂହପୁରରେ ପଢ଼ିବାକୁ ହୁଏ । ଗାଁ ଗଣ୍ଡାରୁ ଆର୍ଥିକ ଅଭାବଗ୍ରସ୍ତ ବାପ ମା' ପିଲାଙ୍କୁ, ଯେତେ ଭଲ ପଢୁଥାଉ ପଛକେ, ପଢ଼ାଇପାରୁ ନ ଥିଲେ । ତା'ଛଡ଼ା ମୋ ପରି ଆର୍ଥିକ ଅଭାବ ଓ ସମାଜର ଅସ୍ପୃଶ୍ୟ ବୋଲାଉଥିବା ଛାତ୍ର କଟକ ସହରରେ ପାଠ ପଢ଼ିବା ସହଜସାଧ୍ୟ ନ ଥିଲା । ମୋର ଜୀବନର ଅଭିଜ୍ଞତା

ମନେ ପଡ଼ିଲା । ନାଁ ସିନା ସେମିନାରୀ ସ୍କୁଲରେ ଲେଖାହେଲା, ରହିବି କେଉଁଠି ? ଅସ୍ପୃଶ୍ୟ ପିଲାବୋଲି କୌଣସି ମେସ୍‌ରେ ଜାଗା ମିଳିଲା ନାହିଁ । ବିବେକାନନ୍ଦଙ୍କର ଅସ୍ପୃଶ୍ୟମାନଙ୍କ ଉତ୍‌ଥାନ ପାଇଁ ବକ୍ତୃତା ପଢ଼ିଥିଲି । ଭାବିଲି ତାଙ୍କ ଆଦର୍ଶରେ ପରିଚାଳିତ ରାମକୃଷ୍ଣ କଟେଜରେ ବୋଧହୁଏ ରହିବାକୁ ଯାଗା ମିଳିଯିବ; କିନ୍ତୁ ରାମକୃଷ୍ଣ କଟେଜର କର୍ତ୍ତୃପକ୍ଷ ମୁଁ ଅସ୍ପୃଶ୍ୟ ପିଲା ଜାଣି ରୋକ୍‌ଠୋକ୍ ମନା କରିଦେଲେ । ଯାହାହେଉ କଟକରେ ରହୁଥିବା ଆମ ଗ୍ରାମର ଜଣେ ଜମିଦାର ଓ ମଟର ବ୍ୟବସାୟୀ ତାଙ୍କ ଗୁହାଳରେ ଗୋଟିଏ ପାଖରେ ରହିବାକୁ କହିଲେ । ମୁଁ ପାଠ ପଢ଼ିବା ପାଇଁ ବହୁ କଷ୍ଟରେ ସେଠାରେ ରହିଲି । କେଶବବାବୁ ହାଇସ୍କୁଲ କରୁଥିବା ଶୁଣି ଭାବିଲି ମୋ ପରି ଗରିବ ଓ ଅସ୍ପୃଶ୍ୟ ଜାତିର ଆମ ଅଂଚଳର ପିଲାମାନେ ମୋ ପରି କଷ୍ଟ ପାଇବେ ନାହିଁ । ତାହା ହିଁ ଆଜି ସତ୍ୟରେ ପରିଣତ ହୋଇଛି । ଆମ ଅଂଚଳର ଶହଶହ ଛାତ୍ର ସିଦ୍ଧେଶ୍ୱରପୁର ଗୋପାଳ ସ୍ମୃତି ବିଦ୍ୟାପୀଠରୁ ପାଠପଢି ଇଞ୍ଜିନିୟର, ଡାକ୍ତର, ପ୍ରଶାସନିକ ଅଧିକାରୀ, କିରାଣୀ ପ୍ରଭୃତି ସରକାରୀ କର୍ମଚାରୀ, ଏପରିକି ଉନ୍ନତ କୃଷୀ ହୋଇପାରିଛନ୍ତି । ସାମାଜିକ, ଅର୍ଥନୈତିକ ଅବସ୍ଥାରେ ସେମାନଙ୍କର ଉନ୍ନତି ଘଟିଛି । ମୋ ଜାଣିବାରେ ଯଦି କେଶବ ନନ୍ଦ ଏ ଅଂଚଳରେ ହାଇସ୍କୁଲଟିଏ ପ୍ରତିଷ୍ଠା କ... ନ ଥା'ନ୍ତେ, ତେବେ ଅନେକ ପିଲା ମାଇନର ପାଶ୍ କରି ପୋଥିରେ ଡୋରି ବାନ୍ଧି ଥାଆନ୍ତେ । କେଶବବାବୁ ଜଣେ ଭବିଷ୍ୟତ ଦ୍ରଷ୍ଟା ମହାପୁରୁଷ --ଏହା ଅନସ୍ୱୀକାର୍ଯ୍ୟ ।

କେଶବବାବୁଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ନ ଥାଏ । ୧୯୫୭ ମସିହା । ଓଡ଼ିଶାରେ ସାଧାରଣ ନିର୍ବାଚନ ହୋଇଥାଏ । କଟକ ସଦର ଟାଙ୍ଗୀ, ଚୌଦ୍ୱାର, କେଶନଗରକୁ ନେଇ ଗୋଟିଏ ଦ୍ୱୈତ ନିର୍ବାଚନ ମଣ୍ଡଳୀ ଥାଏ । ଏହି ନିର୍ବାଚନ ମଣ୍ଡଳୀରୁ ଜଣେ ସବର୍ଣ୍ଣ ଓ ଜଣେ ତଫସିଲ୍‌ଭୁକ୍ତ ଜାତିର ପ୍ରାର୍ଥୀ ନିର୍ବାଚିତ ହେବାର ଥାଏ । ନିର୍ବାଚନରେ କଂଗ୍ରେସ ଦଳ ପକ୍ଷରୁ ରାଜକୃଷ୍ଣ ବୋଷ, ପୂର୍ଣ୍ଣାନନ୍ଦ ସାମଲ, କମ୍ୟୁନିଷ୍ଟ ଦଳ ପକ୍ଷରୁ ରାମକୃଷ୍ଣ ପତି ଓ ମୁଁ ପ୍ରାର୍ଥୀ ଥାଉ । ଶ୍ରୀଯୁକ୍ତ ବୈଦ୍ୟନାଥ ରଥ ଭୂତପୂର୍ବ ଏମ୍.ଏଲ୍.ଏ. ଓ ରାଜ୍ୟସଭାର ସଭ୍ୟ, ଆମ ପାର୍ଟିର ପ୍ରମୁଖ ନେତା । ଦିନେ ମୋତେ ଡାକି କହିଲେ, ''ତୁ କେଶବବାବୁଙ୍କୁ ଜାଣୁ ?'' ମୁଁ କହିଲି, ''ଜାଣେ, ମାତ୍ର ବ୍ୟକ୍ତିଗତ ସଂପର୍କ ନାହିଁ ।'' ସେ ଗୋଟିଏ ଚିଠି ଲେଖି

ମୋତେ ଦେଇ କହିଲେ, "କେଶବବାବୁଙ୍କୁ ଏ ଚିଠି ଦେବୁ । ସେ ମୋର ସହପାଠୀ । ଆମ ଆଦର୍ଶପ୍ରତି ସେ ସହାନୁଭୂତିଶୀଳ ।" ମୁଁ ଆସି ସିଦ୍ଧେଶ୍ୱରପୁର ଠାରେ କେଶବବାବୁଙ୍କୁ ଚିଠିଟି ଦେଲି । କେଶବବାବୁ ମୋ ପାଇଁ କୌଣସି ଠାରେ ସଭା, ସମିତିରେ ବକ୍ତୃତା ଦେଇନାହାନ୍ତି । କିନ୍ତୁ ତାଙ୍କ ସାଧାରଣ କଥାବାର୍ତ୍ତାରେ ମୋ ପ୍ରତି ତାଙ୍କର ସମର୍ଥନ ଏପରି କାମ ଦେଲା ଯେ ତାଙ୍କର ମହାତ୍ ବ୍ୟକ୍ତିତ୍ୱ ବଳରେ କନ୍ଦରପୁର ଅଂଚଳରେ ସର୍ବାଧିକ ଭୋଟ ମୋ ସପକ୍ଷରେ ଯାଇଥିଲା ।

ପ୍ରାୟ ୧୯୬୪ ମସିହା ହେବ । କେଶବବାବୁ ଗୋଟିଏ ବାଳିକା ହାଇସ୍କୁଲ୍ ଅଥଙ୍ଗା ଗ୍ରାମରେ କରାଇବା ପାଇଁ ଚିନ୍ତାମଣି ଆଚାର୍ଯ୍ୟଙ୍କ ଠାରୁ ଚାରିଗୁଣ୍ଠ ଜମି ଆଣି ତାଙ୍କ ନାମରେ ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାପୀଠ କରିବା ପାଇଁ ଉଦ୍ୟମ କରୁଥା'ନ୍ତି । ଖରାଦିନ । ମୁଁ କଇଜଙ୍ଗା ·ବଜାରରେ ବସିଥାଏ । ଖଣ୍ଡିଏ ପ୍ରଚାରପତ୍ର ପାଇଲି । ସେହି ପ୍ରଚାରପତ୍ରରେ ବାଳିକା ହାଇସ୍କୁଲ୍‌ର ସ୍ଥାନ ନିରୂପଣ କରିବା ସହିତ କେଶବ ନନ୍ଦ ଗୋପାଳ ସ୍ମୃତି ବିଦ୍ୟାପୀଠ ନାମରେ ଚାନ୍ଦା ଆଦାୟ କରି ଅର୍ଥ ଆତ୍ମସାତ କରିଥିବା ବିଷୟ ଉଲ୍ଲେଖ ଥାଏ । ବର୍ତ୍ତମାନ ସିଦ୍ଧେଶ୍ୱରପୁର ରାସ୍ତା କଡ଼ରେ ଆଦିବାସୀମାନେ ରହୁଥିବା ସ୍ଥାନରେ ଗୋଟିଏ ବଗିଚା ଥାଏ । ସେହି ସ୍ଥାନରେ ୩ଟା ସମୟରେ ସାଧାରଣ ସଭା ହେବ ବୋଲି ଲେଖାଥାଏ । ପ୍ରଚାରପତ୍ର ପଢ଼ି ମୋର ଭୀଷଣ କ୍ରୋଧ ଜାତହେଲା । ଏ ସଭାର ଉଦ୍ୟୋକ୍ତା ଓ ଅଭିଯୋଗ କରିଥିବା ବ୍ୟକ୍ତିଙ୍କୁ ଉଚିତ୍ ଶିକ୍ଷା ଦେବା ପାଇଁ ମନସ୍ଥ କଲି । ଘରକୁ ଆଉ ଖାଇବାକୁ ଗଲି ନାହିଁ । ୩/୪ଜଣ ସାଥୀଙ୍କୁ ଡାକି ସାଙ୍ଗରେ ନେଇ ସଭାସ୍ଥାନରେ ପହଞ୍ଚିଲି । ସଭାରେ ପ୍ରାୟ ୨୦୦ ହେବ ଲୋକ ଥାଆନ୍ତି । ବିଶେଷ କରି ଅଥଙ୍ଗା, କଇଜଙ୍ଗା ଲୋକ । ମୁଁ ସଭାରେ ପହଞ୍ଚିବା ପରେ ସଭାରେ ଆବାହକ ମୋତେ ସଭାପତି ହେବା ପାଇଁ ପ୍ରସ୍ତାବ ଦେଲେ । ମୁଁ ସଭାପତି ହେବାପରେ ପ୍ରଥମେ ଆବାହକଙ୍କୁ ତାଙ୍କ ସଭାର ଉଦ୍ଦେଶ୍ୟ କହିବା ଓ ଆମ ଅଂଚଳରେ ମହାନ ବ୍ୟକ୍ତି ଶିକ୍ଷାର ଆଲୋକ ବର୍ତ୍ତିକା ଜାଳିଥିବା ୰କେଶବନନ୍ଦଙ୍କ ବିରୋଧରେ ଅର୍ଥ ଆତ୍ମସାତ ଅଭିଯୋଗରେ ପ୍ରମାଣ ପାଇଁ ଆହ୍ୱାନ କଲି । ସେ ହଠାତ୍ ଉତ୍ତ୍ୟକ୍ତ ହୋଇ ମୋତେ କହିଲେ-- ଆମ ବାଳିକା ସ୍କୁଲର ସ୍ଥାନ ନିରୂପଣ ହେଉ । ମୁଁ କହିଲି, "ମୁଁ ସଭାର ସଭାପତି, ମୋ ନିଷ୍ପତ୍ତି ଅନୁସାରେ ସଭା ପରିଚାଳିତ ହେବ ।" ସେ ଆରମ୍ଭ କଲେ, "ମୁଁ ସଭାପତିଙ୍କୁ

ସଭାପତି ପଦରୁ କାଢ଼ିବାକୁ ଗ୍ରହେଁ।'' ସଭାରେ ଜନସାଧାରଣ ଉତ୍ୟକ୍ତ ହୋଇ ଉଠିଲେ। ଉଦ୍ୟୋକ୍ତା କାଗଜପତ୍ର ଧରି ପଳାଇଲେ। ପରେ ପରେ ବହୁଲୋକ ରୁଣ୍ଡ ହୋଇଗଲେ। ମୁଁ ସେଦିନର ସଭାରେ ଦୁଃଖ ଓ କ୍ରୋଧରେ ଜଣେ ମହାନ୍ ବ୍ୟକ୍ତିଙ୍କ ବିରୋଧରେ ଜନୈକ ଘୃଣ୍ୟ ବ୍ୟକ୍ତିର ଅପଚେଷ୍ଟାକୁ ନିନ୍ଦାକରି ଯେଉଁ ବକ୍ତୃତା ଦେଇଥିଲି, ସେଠାରେ ସମସ୍ତଙ୍କୁ ପ୍ରଭାବିତ କରିଥିଲା। ଏ ପର୍ଯ୍ୟନ୍ତ ବକ୍ତୃତାର କିଛି ଅଂଶ ଅନେକେ ଏବେ ମୋତେ ମନେ ପକାଉଛନ୍ତି। ବିଶେଷ କରି ସେଠାରେ ଉପସ୍ଥିତ ଥିବା ଶ୍ରୀଯୁକ୍ତ ଶଶୀଭୂଷଣ ଆଚାର୍ଯ୍ୟ ମୋର ବକ୍ତୃତାକୁ ଆଜି ଯାଏ ମନେ ରଖିଛନ୍ତି। ଅନେକ ଲୋକ ବଜାରରୁ ଫୁଲହାର ଆଣି ମୋତେ ଦେବାକୁ ଗ୍ରହିଁବାରୁ ମୁଁ କହିଥିଲି-- ମୋତେ ସମ୍ମାନ ଦିଅନାହିଁ। ଯେଉଁ ମହାନ ବ୍ୟକ୍ତି ଅଥଙ୍ଗାରେ ବାଳିକା ସ୍କୁଲ୍ କରିବାକୁ ସ୍ଥିର କରିଛନ୍ତି, ସେହିଠାରେ ହିଁ ସ୍କୁଲ ହେବ ବୋଲି ସର୍ବସମ୍ମତିକ୍ରମେ ନିଷ୍ପତ୍ତି କର। ସମସ୍ତେ କରତାଳି ଓ ହରିବୋଲ ଧ୍ୱନି ଦେଇ ଗ୍ରାମକୁ ଫେରିଲେ। ଅଥଙ୍ଗାର କରୁଣା ପ୍ରଧାନ, ଜଗନ୍ନାଥ ସାହୁ, ବାବାଜୀ ପରିଡ଼ା ପ୍ରଭୃତିଙ୍କ ନେତୃତ୍ୱରେ ଗ୍ରହଘର ନିର୍ମାଣ ହୋଇଥିଲା। କେଶବବାବୁଙ୍କ ମନ ଦୁଃଖ ହୋଇଥିଲା, କିନ୍ତୁ ମୁଁ, ଜଗନ୍ନାଥ ସାହୁ, ବାବାଜୀ ପରିଡ଼ା, ପ୍ରଭୃତି ତାଙ୍କୁ ଭେଟି ସ୍କୁଲର ପରିଗ୍ରଳନା ପାଇଁ ଅନୁରୋଧ କଲୁ। କେଶବବାବୁ ସଂପାଦକ ରହିଲେ। ବାଳିକା ହାଇସ୍କୁଲ ଆଦର୍ଶ ସ୍କୁଲରେ ପରିଣତ ହେଲା। ମୁଁ ବେହି ପରିଗ୍ରଳନା କମିଟିରେ ଥାଏ। କିଛିଦିନ ପରେ ମୁଁ ସ୍କୁଲର ସଂପାଦକ ରହିଲି ସରକାରୀ ହେବା ପର୍ଯ୍ୟନ୍ତ। କିନ୍ତୁ 'ସେ' ସ୍କୁଲ କମିଟିରେ ରହିଥା'ନ୍ତି। ତାଙ୍କ ପରାମର୍ଶରେ ଆମ୍ଭେମାନେ ପରିଗ୍ରଳିତ ହେଉଥାଉ। ବ୍ରାହ୍ମଣବାଡ଼ର ଶ୍ରୀଯୁକ୍ତ ବଂଶୀଧର ଜେନା ସ୍କୁଲର ସଭାପତି ଥାଆନ୍ତି।

କନ୍ଦରପୁର କଲେଜ ପ୍ରତିଷ୍ଠା ପାଇଁ ପ୍ରଥମେ କେତେକ ଯୁବକ ଅରୁଣ କୁମାର ନନ୍ଦଙ୍କ ନେତୃତ୍ୱରେ ଏକାଠି ହୋଇ କେଶବବାବୁଙ୍କ ସକ୍ରିୟ ସହଯୋଗ ଓ ନେତୃତ୍ୱ ନିମନ୍ତେ ସ୍ଥିର କରି ତାଙ୍କୁ ଜଣାଇଲେ। ସେ ସହଯୋଗ କଲେ। ତାଙ୍କ ଉଦ୍ୟମରେ କଲେଜ ପ୍ରତିଷ୍ଠା ହୋଇଛି। ସେତେବେଳେ ମଧ୍ୟ ମୋତେ ତାଙ୍କ ସହିତ କଲେଜ ପରିଚାଳନା କମିଟିରେ ରହିବା ପାଇଁ ଓ ଗ୍ରନ୍ଦା ଆଦାୟ ପାଇଁ କହିଥିଲେ। ମୋର ରାଜନୈତିକ କର୍ମବହୁଳତା ମଧ୍ୟରେ ମୁଁ ସହଯୋଗ କରି ପରିଗ୍ରଳନା କମିଟିରେ ରହିଥିଲି।

କେଶବବାବୁ ଏକ ମହାନ୍ ବ୍ୟକ୍ତିତ୍ୱ । କେବଳ ଶିକ୍ଷା, ସମାଜସେବା ନୁହେଁ, ସେ ନିଜର ପରିଚିତ କି ଅପରିଚିତ ବ୍ୟକ୍ତିଙ୍କୁ ସାହାଯ୍ୟ ଦେବା ତାଙ୍କ ବ୍ୟକ୍ତିତ୍ୱର ଆଉ ଏକ ମହାନ୍ ଦିଗ ।

ମୋ ଦେହ ଖରାପ ହେବା ଶୁଣିଲେ, ସେ ଆସି ମୋ ଘରେ ଅନେକବାର ପହଞ୍ଚିଛନ୍ତି । ତାଙ୍କ ଉପସ୍ଥିତିରେ ମୋର ମନରେ ସାହସ ସଂଚରିଯାଏ । ମନ ଦୃଢ ହୋଇଥାଏ । ବାଧାବିଘ୍ନ ସତ୍ତ୍ୱେ ନିଜ ଆଦର୍ଶରେ ଦୃଢ଼ ରହିବାକୁ ତାଙ୍କର ମହାନ୍ ଶିକ୍ଷା ମୋତେ ପ୍ରଭାବିତ କରିଛି ।

କେଶବବାବୁ ଆମ ଅଂଚଳର ମହାପୁରୁଷ । ମୁଁ ଆତ୍ମାରେ ବିଶ୍ୱାସ କରେ ନାହିଁ । କିନ୍ତୁ କେଶବବାବୁଙ୍କ ଅମ୍ଳାନ ସ୍ମୃତି ଯୁଗଯୁଗ ଧରି ଆମ ଅଂଚଳର ଲୋକମାନଙ୍କ ହୃଦୟରେ ଜାଗରୁକ ହୋଇ ନିଶ୍ଚୟ ରହିବ ।

*ଉଉର ଶାସନ*



# କିଛି ସ୍ମୃତି ଓ କିଛି ଅନୁଭୂତି

✦ ଶ୍ରୀ ନଟବର ସାହୁ

ସେଦିନ ଥିଲା ୨୫.୭.୨୦୦୫ ତାରିଖ ସୋମବାର । ମୋର ଝିଆରୀ ହଠାତ୍ ସ୍କୁଲରୁ ଫେରି ଆସି କହିଲା, "ବଡ଼ବାପା ! କେଶବବାବୁ କାଲି ରାତିରେ ଗ୍ଲଲିଗଲେ । ତାଙ୍କର ମର ଶରୀରକୁ ତାଙ୍କର ପିଲାମାନେ ଗାଡ଼ିରେ ଆମ ସ୍କୁଲକୁ ଆଣିଥିଲେ । ଆମର ଶିକ୍ଷୟିତ୍ରୀମାନେ ଅଶ୍ରୁଳ ନୟନରେ ତାଙ୍କ ଉପରେ ଶ୍ରଦ୍ଧାସୁମନ ଅର୍ପଣ କଲେ । ତା'ପରେ ଶୋକସଭା ହୋଇ ଛୁଟି ହୋଇଗଲା । ତାଙ୍କୁ କନ୍ଦରପୁର କଲେଜ ଓ ଗୋପାଳ ସ୍ମୃତି ବିଦ୍ୟାପୀଠକୁ ମଧ୍ୟ ନିଆଯାଇଥିଲା ।" ମୋର ଝିଆରୀ ଚିନ୍ତାମଣି ସ୍ମୃତି ବିଦ୍ୟାଳୟର ଦଶମ ଶ୍ରେଣୀର ଛାତ୍ରୀ । ମୁଁ ତା'ଠାରୁ ଏହା ଶୁଣି ସ୍ତବ୍ଧ ଓ ହତବାକ୍ ହୋଇ ପଡ଼ିଲି । ମୁଁ ମଧ୍ୟ ନିଜକୁ ବଡ଼ ହତଭାଗ୍ୟ ମନେକଲି । କାରଣ ମୁଁ ତାଙ୍କର ଶେଷ ଦର୍ଶନ ଲାଭ କରିପାରିଲି ନାହିଁ । ୫.୭.୨୦୦୫ ତାରିଖରେ ତାଙ୍କ ପାଖକୁ ଯିବାର ଏକ ସୁଯୋଗ ଆସିଥିଲା । ଅଳ୍ପକେ ହାତଛଡ଼ା ହୋଇଗଲା । ମୋର ଜଣେ ପୁରାତନ ଛାତ୍ରଙ୍କର ସେଦିନ କଟକର ସ୍ୱତନ୍ତ୍ର ଟ୍ରେଜେରୀ ଠାରେ ମୋ ସହିତ ଦେଖାହୋଇଥିଲା । ପେନ୍‌ସନ୍ ବିଲ୍ ଦାଖଲ କଲାପରେ ସେ ମୋତେ ତାଙ୍କ ସହ ଯାଇ କେଶବବାବୁଙ୍କ ଶେଷ ଅବସ୍ଥା ଦେଖିବାକୁ ଅନୁରୋଧ କରିଥିଲେ । କିନ୍ତୁ ମୁଁ କ'ଣଟାଏ ଭାବି ତାଙ୍କ କଥା ରକ୍ଷା କରିପାରିଲି ନାହିଁ । ଅର୍ଥାତ୍ କେଶବବାବୁଙ୍କୁ ଶେଷ ଅବସ୍ଥାରେ ଦେଖିପାରିଲି ନାହିଁ । ଏହା ମୋ ପକ୍ଷରେ ଏକ ବଡ଼ ଦୁର୍ଭାଗ୍ୟର କଥା । ତାଙ୍କର ସେହି ମହାନ୍ ଆତ୍ମାର ସଦ୍‌ଗତି ହେଉ, ଏହା ମୋର ଭଗବାନଙ୍କ ନିକଟରେ ଥିଲା ଏକାନ୍ତ ପ୍ରାର୍ଥନା— ତାଙ୍କ ପାଇଁ ମୋର ଏହା ହିଁ ଥିଲା ଭକ୍ତିପୂତ ଶେଷ ଶ୍ରଦ୍ଧାଞ୍ଜଳି ।

ବିଶିଷ୍ଟ ସମାଜ ସେବୀ ଓ ଶିକ୍ଷାପ୍ରେମୀ କେଶବବାବୁ ଆଉ ନାହାନ୍ତି । ସେ ୨୪.୭.୨୦୦୫ ତାରିଖ ରାତି ୧ ଘଣ୍ଟା ୪୫ ମିନିଟ୍‌ରେ ଇହଧାମ ପରିତ୍ୟାଗ

କଲେ । ମୃତ୍ୟୁ ବେଳକୁ ତାଙ୍କୁ ୯୨ ବର୍ଷ ହୋଇଥିଲା । ଏହି ଦାରୁଣ ଦୁଃସମ୍ବାଦ ଆମ ଏ ଅଞ୍ଚଳରେ ଗଭୀର ଶୋକର ଛାୟା ଖେଳାଇ ଦେଇଥିଲା । ସମସ୍ତ ଅଞ୍ଚଳବାସୀ ମର୍ମାହତ ହେଲେ ଓ ଦୁଃଖରେ ଭାଙ୍ଗି ପଡ଼ିଲେ ।

*"ପ୍ରାଣୀର ଭଲ ମନ୍ଦ ବାଣୀ,*
*ମରଣ କାଳେ ତାହା ଜାଣି ।"*

କେଶବବାବୁ କିପରି ଲୋକ ଥିଲେ ଓ ତାଙ୍କର ଆମ ଏ ଅଞ୍ଚଳ ପାଇଁ କ'ଣ ଅବଦାନ ଥିଲା, ତାହା ଏଥିରୁ ସହଜରେ ଜଣାପଡ଼ିଲା ।

*"ସର୍ବେ ଚଳିବେ କାଳ ବଳେ,*
*ଯଶ ରହିବ ମହୀ ତଳେ ।"*

ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ । ତେଣୁ ସେଥିରେ ଭାବିବାର କିଛି ନାହିଁ । କେବଳ ଯଶ ଓ କୀର୍ତ୍ତିର ମୃତ୍ୟୁ ନାହିଁ । କେଶବବାବୁ ଆମ ଏ ଅଞ୍ଚଳରେ ତିନୋଟି ଅନୁଷ୍ଠାନ ଗଢି ଶିକ୍ଷାର ପ୍ରଦୀପ ଜାଳି ଦେଇଯାଇଛନ୍ତି । ଶିକ୍ଷାର ପ୍ରସାର ପାଇଁ ସେ ତାଙ୍କର ଯେଉଁ ସାଙ୍ଗଠନିକ ଶକ୍ତି, କର୍ମପଟୁତା, ନିର୍ଭୀକତା ଓ ନିଷ୍ଠା ଦେଖାଇ ଯାଇଛନ୍ତି, ତାହା ତାଙ୍କୁ ସବୁଦିନ ପାଇଁ ଅମର ରଖିବ ।

ଜନ୍ମ ମୃତ୍ୟୁ ଲାଗି ରହିଛି । ପ୍ରତିଦିନ କେତେ ନୂଆ ମୁହଁ ସଂସାରକୁ ଆସୁଛି, କେତେ ପୁରୁଣା ପରିଚିତ ମୁହଁ ଲୁଚିଯାଉଛି । ସେ ସବୁ କିଏ ମନେ ରଖିଛି ? କିନ୍ତୁ ଲୋକେ ସାଧାରଣତଃ ମନେ ରଖନ୍ତି କେତେ ଜଣଙ୍କୁ— ଯାହାଙ୍କର ଗୁଣ ଥାଏ, ପ୍ରତିଭା ଥାଏ ଓ କୃତିତ୍ୱ ଥାଏ । ବ୍ୟକ୍ତିର ପ୍ରତିଭାକୁ ଲୋକମାନେ ପୂଜା କରନ୍ତି, ଗୁଣ ଓ କୃତାକୁ ସମ୍ମାନ ଦିଅନ୍ତି ।

ପ୍ରାଣୀର ଭଲମନ୍ଦ ବାଣୀ ବିଷୟରେ ଭାଗବତକାର ଯାହା ଲେଖିଛନ୍ତି, ତାହା ନିରାଟ ସତ । ମରଣ ବା ମୃତ୍ୟୁ ପରେ କିଏ କେତେ ତାଙ୍କ ପାଇଁ ବ୍ୟସ୍ତ ହେଲେ, ଦୁଃଖ କଲେ ବା ଶୋକାଭିଭୂତ ହେଲେ, ସେହିଥିରୁ ଜଣାଯିବ ମୃତବ୍ୟକ୍ତି କିଭଳି ଧରଣର ଥିଲେ । ଯେ କୌଣସି ବ୍ୟକ୍ତିର ମୃତ୍ୟୁରେ ତା ପରିବାରବର୍ଗ ନିଶ୍ଚୟ ଦୁଃଖିତ ହୁଅନ୍ତି । କାହାରି କାହାରି ପାଇଁ ସେ ଗ୍ରାମର ବା ଅଞ୍ଚଳର ଲୋକେ ଶୋକ କରନ୍ତି । ଆଉ କାହାରି ପାଇଁ ଅନେକ ଲୋକ ଭାବନ୍ତି ଓ ଦୁଃଖିତ ହୁଅନ୍ତି ।

ଏ ପ୍ରକାର ମୃତବ୍ୟକ୍ତି ଜଣେ ଭଲ ମଣିଷ ବୋଲି ସାଧାରଣରେ ଗ୍ରହଣ କରି ନିଆ ଯାଇଥାଏ । ଏହି ଭଳି ଭଲ ମଣିଷ ଥିଲେ ଆମର ସମାଜସେବୀ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ । ତାଙ୍କର ଏଭଳି ଭଲ ଗୁଣ ଥିଲା, ଯେଉଁଥିପାଇଁ କି ଚ୍ଲିଗଲା ପରେ ମଧ୍ୟ ଆମେ ତାଙ୍କର ଅଭାବ ବିଶେଷ ଭାବରେ ଉପଲବ୍ଧି କରୁଛୁ ।

ଆମର ଏ ଅଞ୍ଚଳ ଅବିଭକ୍ତ କଟକ ଜିଲ୍ଲାର ଏକ ବିରାଟ ଅଞ୍ଚଳ । ଅଞ୍ଚଳବାସୀଙ୍କ ତରଫରୁ ସ୍ୱର୍ଗତ କେଶବବାବୁଙ୍କ ପାଇଁ ୬.୮.୨୦୦୫ ତାରିଖ ଶନିବାର ଦିନ ତାଙ୍କର କର୍ମକ୍ଷେତ୍ର ଗୋପାଳ ସ୍ମୃତି ବିଦ୍ୟାପୀଠରେ ଏକ ବିରାଟ ଶୋକସଭାର ଆୟୋଜନ କରାଯାଇଥିଲା । ସେଦିନ ତାଙ୍କର ଚତୁର୍ଦ୍ଦଶାହ ଥିଲା । ଏହି ସଭାରେ ସଭାପତିତ୍ୱ କରିଥିଲେ ଆମ ଅଞ୍ଚଳର ବିଶିଷ୍ଟ ଲୋକ ତଥା ଅବସରପ୍ରାପ୍ତ ପ୍ରଶାସନିକ ଅଧିକାରୀ ଶ୍ରୀଯୁକ୍ତ ରତ୍ନାକର ମାଣିଆ । ସେ ମଧ୍ୟ ପ୍ରଥମେ ଜଣେ ଶିକ୍ଷକ ଥିଲେ । ବହୁ ଗ୍ରାମବାସୀ ତାଙ୍କ ଶୋକ ସଭାରେ ଯୋଗ ଦାନ କରିଥିଲେ । ସେମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ବିଦ୍ୟାଳୟର ପୁରାତନ ଛାତ୍ର । କେଶବବାବୁଙ୍କ ସ୍ମୃତିସଭାରେ ବହୁ ବିଶିଷ୍ଟ ଲୋକ ତାଙ୍କ ଫଟୋଚିତ୍ରରେ ପୁଷ୍ପମାଲ୍ୟ ଅର୍ପଣ କରିଥିଲେ । ତା'ପରେ ସଭାରେ ତାଙ୍କର ଗୁଣାବଳୀ ବର୍ଣ୍ଣନା କରି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ । କେଶବବାବୁ ଶିକ୍ଷାନୁଷ୍ଠାନମାନ ଗଢିବା ପାଇଁ ଯେଉଁ ଅକ୍ଲାନ୍ତ ପରିଶ୍ରମ କରିଥିଲେ, ତାହା ଅବିସ୍ମରଣୀୟ । ଜୀବନର ଶେଷ ସମୟ ପର୍ଯ୍ୟନ୍ତ ଏ ଅଞ୍ଚଳର ବିଭିନ୍ନ ସମସ୍ୟା ଦୂର କରିବା ପାଇଁ ତାଙ୍କର ଉତ୍ସର୍ଗୀକୃତ ଜୀବନ ଲୋକମାନଙ୍କ ମନରେ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଆଣିଦେଇଛି । ସେ ଯେତିକି ଲୋକପ୍ରିୟ ନ ଥିଲେ ଶୋକ ସଭାରେ ଏତେ ଲୋକ ଉପସ୍ଥିତ ହୋଇ ତାଙ୍କର ଗୁଣ କୀର୍ତ୍ତନ କରି ନଥା'ନ୍ତେ । ତାଙ୍କର ଜନସେବା ଓ ଶିକ୍ଷା କ୍ଷେତ୍ରରେ ଶିକ୍ଷାର ଉନ୍ନତି ପାଇଁ ବିଭିନ୍ନ ପରିଚ୍ଳନା ଯୋଗୁଁ ତାଙ୍କୁ ଲୋକେ କେବେ ଭୁଲି ପାରିବେ ନାହିଁ । ସେହି ମହାନ୍ ବ୍ୟକ୍ତିଙ୍କ ସ୍ମୃତିରକ୍ଷା ପାଇଁ ଲୋକମାନେ ତାଙ୍କ ପ୍ରତିଷ୍ଠିତ ସବୁ ଅନୁଷ୍ଠାନରେ ଗୋଟିଏ ଲେଖାଏଁ ପ୍ରତିମୂର୍ତ୍ତି ସ୍ଥାପନ କରିବା ପାଇଁ ପ୍ରସ୍ତାବ ଦେଇଥିଲେ । ଏହାକୁ ସେମାନେ କରତାଳି ଦ୍ୱାରା ସମର୍ଥନ କରିଥିଲେ । କିନ୍ତୁ ଏହା କେତେଦୂର କାର୍ଯ୍ୟକାରୀ ହେବ, ତାହା ଦେଖିବାର କଥା । ଅବଶ୍ୟ ତାଙ୍କର ସୁଯୋଗ୍ୟ ଦାୟାଦମାନେ ସାହାଯ୍ୟ ସହଯୋଗ କଲେ ତାଙ୍କର ଅମ୍ଳାନ ସ୍ମୃତି ସବୁଦିନପାଇଁ ଜାଜ୍ୱଲ୍ୟମାନ ହୋଇ ରହିବ ।

କେଶବବାବୁଙ୍କ ସହିତ ମୋର ଆଗରୁ ବିଶେଷ ପରିଚୟ ନ ଥିଲା । ମୋର ଯେତେଦୂର ମନେପଡ଼େ, ବଟବାବୁ (ଶ୍ରୀଯୁକ୍ତ ବଟକୃଷ୍ଣ ମିଶ୍ର) ସିଦ୍ଧେଶ୍ୱରପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଦାୟିତ୍ୱ ୧୯୪୯ ମସିହା ଜୁଲାଇ ମାସରେ ଗ୍ରହଣ କରିଥା'ନ୍ତି । ମୋର ତ ସେ ଆଗରୁ ଜଣାଶୁଣା । ମୁଁ ତାହା ଶୁଣି ସେହି ବର୍ଷ ଅଗଷ୍ଟ ମାସ ଶେଷ ଆଡ଼କୁ କାହିଁକି ବୁଲିଯାଇଥିଲି । ବଟବାବୁଙ୍କ ସହିତ ଆକସ୍ମିକ ସାକ୍ଷାତରେ ସେ ମୋତେ ସବୁକଥା କହିଲେ । ତାଙ୍କ ସହିତ ନିଶାକରବାବୁ (ଶ୍ରୀଯୁକ୍ତ ନିଶାକର ଦାସ) ମଧ୍ୟ ଥିଲେ । ସେ ମୋର ଜଗତସିଂହପୁରରେ ସହପାଠୀ ଥିଲେ । ତେଣୁ ମୁଁ ଭାରି ଖୁସି ହୋଇଗଲି ଏବଂ ଭାବିଲି ଭଗବାନ୍ ମୋତେ ଏମାନଙ୍କ ସାଙ୍ଗକୁ ନେଇଆସନ୍ତେ କି ! ସତକୁ ସତ ତାହାହିଁ ହେଲା । ସେମାନେ ମୋତେ କେଶବବାବୁଙ୍କ ସହିତ ଭେଟ କରାଇ କଥାବାର୍ତ୍ତା କଲେ । ସେ ମହାଶୟ ଆଗ୍ରହାନ୍ୱିତ ହୋଇ ମୋତେ ବିଦ୍ୟାଳୟରେ ଶୀଘ୍ର ଯୋଗ ଦେବାକୁ ପରାମର୍ଶ ଦେଲେ । ମୋର ସେତେବେଳେ ଆନନ୍ଦ କହିଲେ ନ ସରେ । ମୁଁ ଆସି ସେପ୍ଟେମ୍ବର ପହିଲାରେ ଶିକ୍ଷକ ରୂପେ ଯୋଗ ଦେଲି । ପ୍ରଥମେ ମୋତେ ସପ୍ତମ ଶ୍ରେଣୀରେ ଅଙ୍କ ପଢ଼ାଇବାକୁ କୁହାଗଲା । ସେ ସମୟରେ ସପ୍ତମ ଶ୍ରେଣୀରେ ପଢୁଥା'ନ୍ତି ବେଣୁଧର ମିଶ୍ର, ପ୍ରଭାକର ପଣ୍ଡା, ବିଷ୍ଣୁ ଚରଣ ରାଉତ, ବିଚିତ୍ରାନନ୍ଦ ରାଉତ ପ୍ରଭୃତି । ଏମାନେ ଉଚ୍ଚଶିକ୍ଷା ଲାଭ କରି ପରବର୍ତ୍ତୀ ଜୀବନରେ ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହୋଇ ଅବସର ଗ୍ରହଣ ପରେ ଖୁବ୍ ଭଲରେ ଅଛନ୍ତି । ସେହି ବର୍ଷ ପ୍ରାୟ ୩୬ ଜଣ ଛାତ୍ର ରେଭେନ୍ସା କଲିଜିଏଟ ସ୍କୁଲରେ ସପ୍ତମ ଶ୍ରେଣୀର ଶେଷ ପରୀକ୍ଷା ଦେଇଥିଲେ । ସ୍ୱର୍ଗୀୟ ନାରାୟଣ ଚନ୍ଦ୍ର ପତି ପ୍ରଧାନ ଶିକ୍ଷକ ଥିଲେ । ସେ ଆମ୍ଭ ପିଲାମାନଙ୍କୁ ତାଙ୍କ ସ୍କୁଲର ଛାତ୍ରାବାସରେ ରହିବା ପାଇଁ ଅନୁମତି ଦେଇଥିଲେ । ସେ ଆମ୍ଭ ପିଲାମାନଙ୍କର ଶୃଙ୍ଖଳାଜ୍ଞାନ ଦେଖି ଖୁବ୍ ଖୁସି ହୋଇ ଯାଇଥିଲେ ଏବଂ ବଟବାବୁଙ୍କୁ ପାଖକୁ ଡାକି ଖୁବ୍ ପ୍ରଶଂସା କରିଥିଲେ । ପରୀକ୍ଷା ଫଳ ବାହାରିଲା । ଆମ ବିଦ୍ୟାଳୟର ସବୁ ପିଲା କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । କେଶବବାବୁ ପରୀକ୍ଷା ଫଳ ଦେଖି ଖୁବ୍ ସନ୍ତୁଷ୍ଟ ହୋଇଯାଇଥିଲେ । ମୁଁ ସେହି ଦିନଠାରୁ ସପ୍ତମ ଶ୍ରେଣୀରେ ମୋର କାର୍ଯ୍ୟକାଳ ଶେଷ ପର୍ଯ୍ୟନ୍ତ ଅଙ୍କ ପଢ଼ାଇ ଆସୁଥିଲି । ତାଙ୍କର ପ୍ରେରଣା ହିଁ ମୋ ଜୀବନର ପାଥେୟ ।

*"କେଶବ ଧୃତ ଯୋଗୀ ଶରୀର*
*ଜୟ ଜଗଦୀଶ ହରେ ।"*

କବି ଜୟଦେବଙ୍କ ଢାଞ୍ଚାରେ ବଟବାବୁଙ୍କ ରଚିତ ଏହି ପଦଟି ବ୍ୟଙ୍ଗାତ୍ମକ ହେଲେ ମଧ୍ୟ ଏହା ବାସ୍ତବଧର୍ମୀ । ପ୍ରକୃତରେ କେଶବବାବୁ ଦୀର୍ଘ ଦିନର ସରକାରୀ ଚାକିରି ଛାଡ଼ି ଯୋଗୀ ବେଶ ଧରି ନ ଥିଲେ ଆଜି ଆମ ଏ ଅଞ୍ଚଳରେ ଏତେଗୁଡ଼ିଏ ଅନୁଷ୍ଠାନ ମୁଣ୍ଡ ଟେକି ପାରି ନ ଥା'ନ୍ତା । ଅତି ଗରିବ ମେଧାବୀ ଛାତ୍ରମାନେ ଉଚ୍ଚଶିକ୍ଷିତ ହୋଇ ଭିନ୍ନ ଭିନ୍ନ ସରକାରୀ ଚାକିରିରେ ଅଧିଷ୍ଠିତ ହୋଇ ପାରି ନ ଥା'ନ୍ତେ । କେଶବବାବୁଙ୍କ ଏ ଅଞ୍ଚଳ ପାଇଁ ସେତିକି ତ୍ୟାଗ ନ ଥିଲେ ଆଜି ଆମ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇଥିବା ମେଧାବୀ ଛାତ୍ରମାନେ ଡାକ୍ତର, ଇଞ୍ଜିନିୟର ଓ ପ୍ରଶାସନିକ ସେବାରେ କୃତିତ୍ୱ ଅର୍ଜନ କରି ଦେଶବିଦେଶରେ ସୁନାମ ରଖିବା ସଙ୍ଗେ ସଙ୍ଗେ ଆମ ବିଦ୍ୟାଳୟ ପାଇଁ ଗର୍ବ ଓ ଗୌରବ ଆଣି ପାରି ନ ଥା'ନ୍ତେ । ଆମ ଏ ଅଞ୍ଚଳ ସେମାନଙ୍କ ପାଇଁ ଆଜି ଧନ୍ୟ ହୋଇ ନ ଥା'ନ୍ତା । ଏହା ବୋଧହୁଏ ଭଗବାନଙ୍କର ଇଚ୍ଛା ଥିଲା ।

୧୯୪୭ ମସିହାରେ କେଶବବାବୁ ସ୍ଥାନୀୟ କେତେକ ବିଶିଷ୍ଟ ଲୋକଙ୍କୁ ଏକାଠି କରି ଗୋଟିଏ ସଭା ଡାକିଥିଲେ । ଏହା ବିଶିଷ୍ଟ ଔପନ୍ୟାସିକ ସ୍ୱର୍ଗତ ବଟକୃଷ୍ଣ ପ୍ରହରାଜଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ଗୋଟିଏ କମିଟି ଗଠନ କରାଯାଇ କାର୍ଯ୍ୟ ସାଧନ ଲାଗି ଆଗେଇବାକୁ ପଡ଼ିଲା । ସିଦ୍ଧେଶ୍ୱରପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ପୁରାତନ ଛାତ୍ର ଅବସରପ୍ରାପ୍ତ ଅଧ୍ୟାପକ ରତ୍ନାକର ପତିଙ୍କୁ ଏ କାମରେ ସାହାଯ୍ୟ କରିବା ପାଇଁ ଅନୁରୋଧ କରାଯାଇଥିଲା । ତାଙ୍କ ପାଖକୁ ଏ ପ୍ରସ୍ତାବ ନେଇ କେଶବବାବୁ ଓ ଉପେନ୍ଦ୍ରବାବୁ ଯାଇଥିଲେ । ସେ ସେମାନଙ୍କୁ ଉତ୍ସାହ ଦେବେ କ'ଣ, ବରଂ ନାସ୍ତିବାଣୀ ଶୁଣାଲେ । ତାଙ୍କର ବ୍ୟବହାର ବାହାରକୁ ବଡ଼ କଠୋର, କିନ୍ତୁ ହୃଦୟ ବଡ଼ କୋମଳ । ତାଙ୍କର ପ୍ରଥମ ତୋଡ଼ ଯେ ସମ୍ଭାଳି ପାରିବ, ସେ ତାଙ୍କ ଠାରୁ ସବୁ ପ୍ରକାର ସାହାଯ୍ୟ ଓ ସହାନୁଭୂତି ପାଇ ପାରିବ । କେଶବବାବୁ ଯଦି ପତି ମହାଶୟଙ୍କ ନାସ୍ତିବାଣୀ ଶୁଣି ନୀରବ ହୋଇଯାଇଥା'ନ୍ତେ, ବିଦ୍ୟାପୀଠ ଗଢ଼ିବାରେ ଶିଥିଳତା ଆସି ଯାଇଥା'ନ୍ତା । କିନ୍ତୁ ବିଦ୍ୟାପୀଠ ଗଢ଼ିବା ନିଶାରେ କେଶବବାବୁ ବାରମ୍ବାର ଯାଇ ରତ୍ନାକରବାବୁଙ୍କୁ ଅନୁରୋଧ କରିବାରୁ

ତାଙ୍କ ହୃଦୟରେ ଦୟା ଆସିଲା ଓ ସେ ସବୁପ୍ରକାର ସାହାଯ୍ୟ ଦେବାକୁ ପ୍ରତିଶ୍ରୁତି ଦେଲେ । ବିଦ୍ୟାପୀଠ ଘରଟି ତିଆରି ପରେ ୧୯୪୮ର ବାତ୍ୟାରେ ଭାଙ୍ଗି ପଡ଼ିଲା ଓ ଉଡ଼ିଗଲା । କେଶବବାବୁ ସହଜରେ ଭାଙ୍ଗିଯିବା ଲୋକ ନୁହନ୍ତି, ସେ ପୁଣି ପତି ମହାଶୟଙ୍କ ପାଖକୁ ଯାଇ ସବୁକଥା ଜଣାଇଲେ । ସେ ମହାଶୟ ତାଙ୍କୁ କିଛି ଆର୍ଥିକ ସାହାଯ୍ୟ ଦେଇ ଘର ଯେପରି ହେଲେ ଶୀଘ୍ର ଛିଡ଼ା କରିବାକୁ ନିର୍ଦ୍ଦେଶ ଦେଲେ । କେଶବବାବୁ ଗାଁରୁ ମୂଲିଆଙ୍କୁ ଧରି ଘର ଛିଡ଼ା କରାଇଲେ । ପତି ମହାଶୟ ଏଥିରେ ଭାରି ଖୁସି ହୋଇଗଲେ । କେଶବବାବୁ ପତି ମହାଶୟଙ୍କ ବ୍ୟକ୍ତିତ୍ୱ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ତାଙ୍କ ମତରେ ସେ କେବଳ ଆଦର୍ଶବାଦୀ ନ ଥିଲେ, ତାଙ୍କୁ ଆଦର୍ଶଜୀବୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଆଦର୍ଶରେ କେଶବବାବୁ ବିଶେଷ ଭାବରେ ଅନୁପ୍ରାଣିତ ହୋଇପଡ଼ିଥିଲେ । ଆମ୍ଭମାନଙ୍କ ଉପରେ ତାଙ୍କର ଆଦର୍ଶର ପ୍ରଭାବ ମଧ୍ୟ କିଛି ଅଂଶରେ ପଡ଼ିଛି । ତେବେ ଯାହାହେଉ, ଧନ୍ୟ ସେ ପୁଣ୍ୟାତ୍ମା, ଯାହାଙ୍କ ଉଦ୍ୟମ ପ୍ରଶଂସନୀୟ । ବିଦ୍ୟାପୀଠ ଗଢ଼ିବାରେ ପତିବାବୁ ଓ କେଶବବାବୁ ମଣିକାଞ୍ଚନ ଯୋଡ଼ି ଭଳି ଥିଲେ । କେଶବବାବୁ ଥିଲେ ଅତି ସରଳ ଓ ଅତି ସଂଯତ । ତାଙ୍କୁ କ୍ରୋଧର ବଶବର୍ତ୍ତୀ ହେବା ମୁଁ କେବେ ଦେଖିନାହିଁ । ତାଙ୍କର ଧୀରସ୍ଥିର କଥାବାର୍ତ୍ତା, ଶାନ୍ତ-ସରଳ ସ୍ୱଭାବ ସମସ୍ତଙ୍କ ମନକୁ କିଣି ନେଇ ପାରୁଥିଲା । ଯାହାଫଳରେ କି ସେ ବିଦ୍ୟାଳୟ ପାଇଁ ଚାନ୍ଦା ଆଦାୟ କାର୍ଯ୍ୟରେ ଖୁବ ସଫଳତା ଲାଭ କରି ପାରିଥିଲେ ।

କେଶବବାବୁ ବଟବାବୁଙ୍କୁ ପିଲାଦିନୁ ଜାଣିଥିଲେ । ସେ ତାଙ୍କର ଜଣେ ଆତ୍ମୀୟ ଥିଲେ । ବଟବାବୁ ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ପଦ ଛାଡ଼ି ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ ଚାଲିଯିବା ଫଳରେ ମୋତେ ସେହି ଦାୟିତ୍ୱ ତୁଲାଇବାକୁ ପଡ଼ିଲା । ମୁଁ ପ୍ରାୟ ୧୯୫୧ ମସିହାଠାରୁ ୧୯୫୩ ମସିହା ପର୍ଯ୍ୟନ୍ତ ମଧ୍ୟ ଇଂରାଜୀ ବିଦ୍ୟାଳୟ ଦାୟିତ୍ୱରେ ଥିଲି । କିନ୍ତୁ ସେତେବେଳେ ଦୁଇଟି ସ୍କୁଲ ଏକାଠି ଚାଲିଥିଲା । ଯେତେସବୁ ଶିକ୍ଷକ ଥିଲେ, ସେମାନେ ସମସ୍ତେ ଏକ ମନ ଓ ଏକ ପ୍ରାଣରେ କାମ କରୁଥିଲେ । ଏ ସବୁ ସମ୍ଭବ ହୋଇ ପାରିଥିଲା କେବଳ କେଶବବାବୁଙ୍କ ବିଚକ୍ଷଣ ପରିଚାଳନା ଯୋଗୁଁ । ଧନ୍ୟ ସେ ମହାତ୍ମା, ଧନ୍ୟ ତାଙ୍କର ଆଦର୍ଶ ବ୍ୟକ୍ତିତ୍ୱ । ରତ୍ନାକର ବାବୁ ଥିଲେ ବିଦ୍ୟାଳୟ ପରିଚାଳନା ସମିତିର ସଭାପତି ଓ କେଶବବାବୁ ଥିଲେ

ସମ୍ପାଦକ । ପତି ମହାଶୟ ଖୁବ ସମୟାନୁବର୍ତ୍ତୀ ଥିଲେ । ପରିଚାଳନା ସମିତିର ସଭାରେ ସେ ଠିକ୍ ସମୟରେ ଆସି ପହଞ୍ଚୁଥିଲେ । ଅନ୍ୟମାନଙ୍କଠାରେ ଟିକେ ବ୍ୟତିକ୍ରମ ଦେଖାହେଲେ ଆଉ ରକ୍ଷା ନାହିଁ । କିନ୍ତୁ କେଶବବାବୁ ବୁଝାବୁଝି କରି ସବୁ ସମ୍ଭାଳି ନେଉଥିଲେ । ଯେତେବେଳେ ଯାହା କରିବାକୁ ଦରକାର ପଡ଼େ, ସେତେବେଳେ ସେ ବଟବାବୁଙ୍କୁ ଓ ମୋତେ ଖୋଜୁଥା'ନ୍ତି ଓ କ'ଣ କରିବାକୁ ହେବ, ତାହା ନିର୍ଦ୍ଦେଶ ଦେଉଥା'ନ୍ତି । ତାଙ୍କ ନିର୍ଦ୍ଦେଶ ଅନୁସାରେ ଆମ୍ଭେସବୁ କାମ କରିଥାଉ । ସେ ଆମ୍ଭଦୁହିଁଙ୍କୁ ଅତି ଭଲ ପାଉଥିଲେ । ଆମ୍ଭେ ଦୁହେଁ ମଧ୍ୟ ଯାଆଁଳା ଭାଇ ପରି କାମ କରିଥାଉ । ଆମ୍ଭଦୁହିଁଙ୍କ ମଧ୍ୟରେ କେବେହେଲେ ମନାନ୍ତର ବା ମତାନ୍ତର ଘଟିନାହିଁ । ଏବେ ବି ସମ୍ପର୍କ ସେହିପରି ଅତୁଟ ରହିଛି । ମୁଁ ବଟବାବୁଙ୍କୁ 'ଭାଇନା' ବୋଲି ସମ୍ବୋଧନ କରେ । ସେ ବଡ଼ ପ୍ରତିଭାବାନ । ତାଙ୍କର ଉପସ୍ଥିତି ବୁଦ୍ଧି ବଳରେ ସେ ବେଳେବେଳେ ଅନେକ ଜଟିଳ ସମସ୍ୟାର ସମାଧାନ କରିଥା'ନ୍ତି । ସେ ସର୍ବଦା ମୋର ନମସ୍ୟ ।

ସ୍କୁଲ ଆରମ୍ଭ ବେଳେ ଆଜିକାଲି ପରି ଏତେ ଉଚ୍ଚଶିକ୍ଷିତ ଯୁବକ ନ ଥିଲେ । ତେଣୁ ଗ୍ରାଜୁଏଟ୍ ଶିକ୍ଷକଙ୍କର ଖୁବ୍ ଅଭାବ ଥିଲା । ପ୍ରଧାନ ଶିକ୍ଷକଙ୍କ କଥା ଆହୁରି କଷ୍ଟକର ଥିଲା । କିନ୍ତୁ ସେହି କେଶବବାବୁ ରାଧାନାଥ ଟ୍ରେନିଂ କଲେଜଠାରୁ ଆରମ୍ଭ କରି ଅନ୍ୟାନ୍ୟ ଅନେକ ସ୍ଥାନକୁ ଯାଇ ପ୍ରଧାନଶିକ୍ଷକ ଖୋଜିବାରେ ବ୍ୟସ୍ତ ରହୁଥିଲେ । ତାଙ୍କର ହାତ ଖୁବ୍ ଲମ୍ବା । ବଡ଼ ବଡ଼ ମହଲରେ ତାଙ୍କୁ ପ୍ରାୟ ସମସ୍ତେ ଜାଣିଥିଲେ । ସ୍କୁଲ ଇନ୍ସପେକ୍ଟର ଅଫିସ ବା ଡି.ପି.ଆଇ. ଅଫିସକୁ ଯାଇ ଗୋପାଳ ସ୍ମୃତି ବିଦ୍ୟାପୀଠ ବିଷୟରେ କିଛି ପଗ୍ଚରିଲେ କେହି କିଛି ନ କହି ନୀରବ ରହନ୍ତି, କିନ୍ତୁ ରତ୍ନାକରବାବୁ ବା କେଶବବାବୁଙ୍କ ନାମ ଉଚ୍ଚାରଣ କରିବା ମାତ୍ରେ ସମସ୍ତେ ସ୍କୁଲ କଥା ଶୁଣନ୍ତି ଓ ଯଥାର୍ଥ ଉତ୍ତର ଦିଅନ୍ତି । ଏହା କମ୍ ବ୍ୟକ୍ତିତ୍ୱର ପରିଚୟ ଦିଏ ନାହିଁ । ତେଣୁ ସେ ଯେମିତି ହେଲେ ଉପଯୁକ୍ତ ପ୍ରଧାନ ଶିକ୍ଷକ ବା ଅନ୍ୟ ଶିକ୍ଷକ ଖୋଜି ଆଣନ୍ତି । ତା' ନ ହୋଇଥିଲେ ଧର୍ମାନନ୍ଦବାବୁ, ନୃସିଂହବାବୁ ଓ ଜଗନ୍ନାଥବାବୁଙ୍କ ଭଳି ଖ୍ୟାତିସମ୍ପନ୍ନ ପ୍ରଧାନ ଶିକ୍ଷକମାନେ ଏ ବିଦ୍ୟାଳୟକୁ ଆସିଥା'ନ୍ତେ କିପରି ? ସେ ମଧ୍ୟ ରାଧାନାଥ ଟ୍ରେନିଂ କଲେଜର ଅଧ୍ୟକ୍ଷ ମହୋଦୟଙ୍କ ପରାମର୍ଶରେ ଶିବବାବୁ, ଅଭିରାମବାବୁ, ସରୋଜିନୀ ଦେବୀ ପ୍ରଭୃତିଙ୍କୁ ଶିକ୍ଷକ ହିସାବରେ ଆମ ବିଦ୍ୟାଳୟକୁ ଆଣି ପାରିଥିଲେ ।

ତାଙ୍କର ଅନୁସନ୍ଧିତ୍ସା ଯୋଗୁ ସେ ଶିକ୍ଷକ ଆଣିବାରେ କୃତକାର୍ଯ୍ୟ ହୋଇ ପାରୁଥିଲେ । ସର୍ବୋପରି ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ସ୍କୁଲ ପାଇଁ ତାଙ୍କୁ ସବୁ କାର୍ଯ୍ୟରେ ସାହାଯ୍ୟ କରୁଥିଲା । ଶିକ୍ଷକ ଖୋଜିବାରେ ସେ ବେଳେବେଳେ ମୋତେ ଓ ବଟବାବୁଙ୍କୁ ଅନୁସନ୍ଧାନ କରିବାକୁ କହିଥା'ନ୍ତି । କିନ୍ତୁ ତାଙ୍କର କଡ଼ା ନିର୍ଦ୍ଦେଶ ଥାଏ, ଯେଉଁଠି ଉପଯୁକ୍ତ ଶିକ୍ଷକଙ୍କର ସନ୍ଧାନ ମିଳିବ, ତାହା ପୂରାପୂରି ଗୁପ୍ତ ରଖାଯିବ । ଜଣେ ଗ୍ରାଜୁଏଟ୍ ଶିକ୍ଷକଙ୍କୁ ଖୋଜିବାକୁ ଯାଇ ଆମ୍ଭେ ଦୁହେଁ (ବଟବାବୁ ଓ ମୁଁ) କିପରି ପରିସ୍ଥିତିର ସମ୍ମୁଖୀନ ହୋଇଥିଲୁ, ତାହା ବର୍ଣ୍ଣନା କଲେ ସମସ୍ତଙ୍କୁ ଏକ କାହାଣୀ ପରି ଲାଗିବ ।

ଥରେ କେଶବବାବୁ ଆସି ଆମ୍ଭଙ୍କୁ ସରିଚୁଆଁର ଅଭିଳାଷବାବୁଙ୍କ ଘରକୁ ଯିବାକୁ କହିଲେ । ସେତେବେଳେ ସେ ବୋଧହୁଏ ସରିଚୁଆଁ ସ୍କୁଲରେ ଶିକ୍ଷକତା କରୁଥିଲେ । ଆମ୍ଭେ ଗୋଟିଏ ଛୁଟି ଦିନରେ ସକାଳୁ ସକାଳୁ ସେ ଗାଁ ଅଭିମୁଖେ ବାହାରି ପଡ଼ିଲୁ । କଇଜଙ୍ଗାରୁ ସରିଚୁଆଁ ଯିବା ବାଟରେ ମୋର ଅନେକ ପରିଚିତ ଲୋକଙ୍କ ସହିତ ଦେଖାହେଲା । ଆମ୍ଭେ ତ ତାଙ୍କ ଘରକୁ ବାଟ ଦେଖି ନ ଥିଲୁ । ତେଣୁ ଲୋକମାନେ ଆମ୍ଭଙ୍କୁ ବାଟ ଦେଖାଇବା ସଙ୍ଗେ ସଙ୍ଗେ କୁଆଡ଼େ ଏବଂ କାହିଁକି ଯାଉଛ ବୋଲି ପଚାରିଥିଲେ । ଆମ୍ଭେ ତାଙ୍କୁ ଗୋଟିଏ ଦାମୁଡ଼ି(ବଳଦ) ଆଣିବାକୁ ସରିଚୁଆଁ ଯାଉଛୁ ବୋଲି କହିଥିଲୁ । ତା'ପରେ ବିଲଝିଲ ପାର ହୋଇ ତାଙ୍କ ଘରେ ପହଞ୍ଚିଲୁ । ଅଭିଳାଷବାବୁ ସେତେବେଳେ ଘରେ ନ ଥିଲେ । ତାଙ୍କ ବୋଉ ଆମ୍ଭ ପାଖକୁ ଦୌଡ଼ି ଆସି ଟିକିଏ ଅପେକ୍ଷା କରିବାକୁ କହିଲେ । ଖବର ପାଇ କିଛି ସମୟ ପରେ ଅଭିଳାଷବାବୁ ଆସି ଆମ୍ଭ ପାଖରେ ପହଞ୍ଚିଲେ । ଚିନାବାଦାମ କିଆରୀରେ କାମ କରୁଥିଲେ । ହାତରେ ମାଟି ଲାଗିଥାଏ । ସେମିତି ଠିଆ ଠିଆ ସବୁକଥା କହିଲେ । ଚୁପଚାପ ହୋଇ ସବୁ କଥା ଶୁଣିଲୁ । କେଉଁଠି କିଛି ପ୍ରକାଶ ନ କରିବାକୁ ସେ ଆମ୍ଭଙ୍କୁ ଅନୁରୋଧ କରିଥିଲେ । ସେ କେଉଁଦିନ ଆସି ସ୍କୁଲରେ ଯୋଗଦେବେ, ତାହାହିଁ କହିଥିଲେ । ଆମ୍ଭେ ଗଡ଼ ଜିତିଲା ଭଳି ମନ ଖୁସିରେ ବିଦ୍ୟାଳୟକୁ ଫେରିଲୁ । ଫେରିବା ବାଟରେ ଆମ୍ଭେ ପୁଣି ସେହି ଲୋକମାନଙ୍କୁ ଭେଟିଲୁ । ସେମାନେ ପୁଣି ଦାମୁଡ଼ି କଥା ପଚାରିଲେ । ଆମ୍ଭେ ଦାମୁଡ଼ି ଦେଖି ଆସିଲୁ ଏବଂ ତାହା ଖୁବ ପସନ୍ଦ ହେଲା ବୋଲି କହିଲୁ । ମୂଲଚାଲ କରି ଆସିଛୁ । ଅନ୍ୟ ଗୋଟିଏ ଭଲ ଦିନ ଦେଖି ଆଣିବୁ । ପ୍ରକୃତରେ ସେ ଦାମୁଡ଼ି (ଅଭିଳାଷବାବୁ)

ଖୁବ୍ ପସନ୍ଦିଆ । ସେ ଜଣେ ଅତି ଯୋଗ୍ୟ ଗ୍ରାଜୁଏଟ୍ ଶିକ୍ଷକ ଥିଲେ । ଆମ୍ଭର ସେତେବେଳେ ବିଦ୍ୟାଳୟ ଛାତ୍ରାବାସ ଥାଏ । ବହୁଦୂରରୁ ପିଲାମାନେ ଆସି ଏଠାରେ ରହୁଥା'ନ୍ତି । ଛାତ୍ରମାନଙ୍କ ସହ ବାହାରୁ ଆସିଥିବା ଶିକ୍ଷକମାନେ ମଧ୍ୟ ରହୁଥା'ନ୍ତି । ତେଣୁ ଅଭିଳାଷବାବୁ ଆସି ସେମାନଙ୍କ ସହିତ ରହିଲେ ଏବଂ ଶିକ୍ଷାଦାନରେ ଲାଗିପଡ଼ିଲେ । ସେତେବେଳେ ଆମ ବିଦ୍ୟାଳୟରେ ପ୍ରାୟ ପ୍ରତିବର୍ଷ ବାର୍ଷିକ ଉତ୍ସବରେ ନାଟକ ଅଭିନୀତ ହେଉଥିଲା । ବଟବାବୁ ଓ ଭବାନୀବାବୁ ନାଟକ ମଞ୍ଚସ୍ଥ କରିବା ଓ ନିର୍ଦ୍ଦେଶନା ଦେବାରେ ସିଦ୍ଧହସ୍ତ ଥିଲେ । ମୁଁ ଦେଖିଛି, ଭବାନୀବାବୁଙ୍କ ପାଖକୁ ତାଙ୍କର ବନ୍ଧୁ ତଥା ଓଡ଼ିଆ ଚଳଚ୍ଚିତ୍ରର ପ୍ରଖ୍ୟାତ ଅଭିନେତା ବ୍ୟୋମକେଶବାବୁ ବେଳେବେଳେ ଆସିଥା'ନ୍ତି । ସେମାନଙ୍କ ସାଙ୍ଗକୁ ଅଭିଳାଷ ବାବୁ ଆସିଗଲେ । ସେ ଦିଗରେ ସେ ମଧ୍ୟ କମ୍ ଯୋଗ୍ୟ ନ ଥିଲେ । ଥରେ ବିଦ୍ୟାଳୟରେ ନାଟକ "କୋଇଲା କମ୍ପାନୀ" ମଞ୍ଚସ୍ଥ ହୋଇଥିଲା । ସେଥିଲେ ଅଭିଳାଷବାବୁ ସେହି ନାଟକରେ ପରିବ୍ରାଜକ ଭୂମିକାରେ ନିଖୁଣ ଅଭିନୟ କରି ଖୁବ୍ ପ୍ରଶଂସା ଭାଜନ ହୋଇ ପାରିଥିଲେ । ସେ ଖୁବ୍ ବନ୍ଧୁବତ୍ସଳ ଥିଲେ । କିନ୍ତୁ ତାଙ୍କର ପ୍ରତିଭାର ପରିଚୟ ଆମ୍ଭେ ବେଶୀ ଦିନଧରି ପାଇ ପାରିଲୁ ନାହିଁ । ସେତେବେଳେ ତ ଏହା ଘରୋଇ (ବେସରକାରୀ) ଅନୁଷ୍ଠାନ ଥିଲା । ଦରମା ବା କେତେ ? ତେଣୁ ସେ ତାଙ୍କ ପ୍ରତିଭା ବଳରେ ଜୀବନ ବୀମା କମ୍ପାନୀରେ ଚାକିରି ପାଇ ଏଠାରୁ ବିଦାୟ ନେଲେ । ଅବଶ୍ୟ ଏହା ଆମ୍ଭ ବିଦ୍ୟାଳୟ ପକ୍ଷରେ କ୍ଷତି ହେଲା, କିନ୍ତୁ ତାଙ୍କର ଭବିଷ୍ୟତ ପାଇଁ ତାହା ସେ ବାଛିନେଲେ । ବୀମା କମ୍ପାନୀରେ ସେ ପାହାଚକୁ ପାହାଚ ଚଢ଼ି ଉଚ୍ଚ ପାହାଚରେ ପହଞ୍ଚିଲେ । ଏବେ ଅବସର ନେଇ ବେଶ୍ ଭଲ ଅଛନ୍ତି । କିନ୍ତୁ ତାଙ୍କର ଅନୁଷ୍ଠାନ ପ୍ରତି ଅବଦାନ ଅବିସ୍ମରଣୀୟ ହୋଇ ରହିଛି । ଶିକ୍ଷକ ଖୋଜିବାରେ ଏହିପରି ଅନେକ କାହାଣୀ ଅଛି । ପଣ୍ଡିତ ମହାଶୟଙ୍କୁ (ସ୍ୱର୍ଗତ ଲିଙ୍ଗରାଜ ମିଶ୍ର) ଆଣିବାପାଇଁ ସେହିପରି ଏକ କାହାଣୀ ସୃଷ୍ଟି ହୋଇଥିଲା । ବାଳକୃଷ୍ଣବାବୁ, ଭଗବାନବାବୁ ପ୍ରଭୃତିଙ୍କୁ ମଧ୍ୟ ସେହିପରି ପାଇଥିଲୁ । ଏ ସବୁର ଅନ୍ତରାଳରେ ଥିଲେ ସେହି କର୍ମବୀର କେଶବବାବୁ । ତାଙ୍କର ବିୟୋଗରେ ଏ ଅଞ୍ଚଳରେ ଯେଉଁ ଅପୂରଣୀୟ କ୍ଷତି ଘଟିଲା, ତାହା ପୂରଣ ହେବା ଆଉ ସହଜ ନୁହେଁ । ବର୍ତ୍ତମାନ ସେ ସ୍ୱର୍ଗବାସୀ । ସେ ଆମ୍ଭମାନଙ୍କୁ ଆଶୀର୍ବାଦ କରୁଥା'ନ୍ତୁ, ଯେପରି ତାଙ୍କର ହାତଗଢ଼ା ଅନୁଷ୍ଠାନଗୁଡ଼ିକର ଉତ୍ତରୋତ୍ତର ଉନ୍ନତି ହେବ ।

ମୋର ଏଠି ପୁରାତନ ଛାତ୍ରମାନଙ୍କୁ ଓ ଶିକ୍ଷାପ୍ରେମୀ ଅଞ୍ଚଳବାସୀଙ୍କୁ ବିନୀତ ଅନୁରୋଧ ଯେ ସେମାନେ କେଶବବାବୁଙ୍କ ପ୍ରତି ଯଥାର୍ଥ ସମ୍ମାନ ଦେଖାଇବାକୁ ଯାଇ ତାଙ୍କ ପାଇଁ କିଛି କରିପାରିଲେ ଆମ୍ଭେମାନେ ନିଜକୁ ଧନ୍ୟ ମନେ କରିବା ସଙ୍ଗେ ସଙ୍ଗେ ଯୁବସମାଜ ଉଦ୍‌ବୁଦ୍ଧ ହେବ । ପୂଜ୍ୟପୂଜାର ମୂଲ୍ୟବୋଧ ବି ଅକ୍ଷୁଣ୍ଣ ରହିବ । କେଶବବାବୁଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ତାଙ୍କ ସ୍ମୃତିରେ ଏକ ସ୍ମରଣିକା ପ୍ରକାଶ ପାଇବ, ଏଥିରେ ସନ୍ଦେହ ନାହିଁ । ଏହାଛଡ଼ା ତାଙ୍କର ଏକ ପ୍ରତିମୂର୍ତ୍ତି ତିନୋଟି ଅନୁଷ୍ଠାନ ମଧ୍ୟରୁ ଯେଉଁଠି ହେଲେ ଗୋଟିଏ ସ୍ଥାନରେ ନିଶ୍ଚୟ ସ୍ଥାପିତ ହେବ, ଏ ବିଶ୍ୱାସ ମୋର ଅଛି ।

କେଶବବାବୁଙ୍କ ସମ୍ପର୍କରେ ଆସି ମୁଁ ଯାହା ଅଙ୍ଗେ ଲିଭାଇଛି, ତାହାକୁ ପ୍ରକାଶ କରିବା ସ୍ୱର୍ଗତ ଆତ୍ମାପ୍ରତି ମୋର ପରମ କର୍ତ୍ତବ୍ୟ । ତାଙ୍କର ମୋ ପ୍ରତି ଅନାବିଳ ସ୍ନେହ ଓ ଆଶୀର୍ବାଦ ମୁଁ ମୋ ଜୀବନରେ କେବେହେଲେ ଭୁଲି ପାରିବି ନାହିଁ । ମୁଁ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ପାଖରେ ଆକୁଳ ପ୍ରାର୍ଥନା କରୁଛି, ଏହା ହେଉ ମୋର ତାଙ୍କ ପ୍ରତି ଭକ୍ତିପୂତ ଶ୍ରଦ୍ଧାଞ୍ଜଳି । ଜୟ ଜଗନ୍ନାଥ !

*ଜଗଜଙ୍ଗା*
*ପୁରାତନ ଶିକ୍ଷକ, ଗୋ:ସ୍ମୃ :ବିଦ୍ୟାପୀଠ*



# ସ୍ୱର୍ଗତ ନନ୍ଦଙ୍କ ସ୍ମରଣେ

✦ ଶ୍ରୀ କୃଷ୍ଣଚନ୍ଦ୍ର ସାହୁ

ମୋ ଦୃଷ୍ଟିରେ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ ଜଣେ ମେଳାପୀ, ସଂଗଠକ, ବହୁ ଅନୁଷ୍ଠାନ ନିର୍ମାତା ଏବଂ ନିରଳସ କର୍ମୀ ଥିଲେ । ମୁଁ ଲକ୍ଷ୍ମୀଧର ମଧ୍ୟ ଇଂରାଜୀ ବିଦ୍ୟାଳୟ ସିଦ୍ଧେଶ୍ୱରପୁରରେ ଚତୁର୍ଥ ଶ୍ରେଣୀ ଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଏବଂ ଗୋପାଳ ସ୍ମୃତି ବିଦ୍ୟାପୀଠରେ ଅଷ୍ଟମ ଶ୍ରେଣୀ ଠାରୁ ଏକାଦଶ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲି । ସେହି ସମୟ ମଧ୍ୟରେ ମୁଁ ସ୍ୱର୍ଗତ ନନ୍ଦଙ୍କ ସମ୍ପର୍କରେ ଆସିବାର ସୁଯୋଗ ପାଇଥିଲି । ତାଙ୍କ ଦ୍ୱିତୀୟ ପୁତ୍ର ଶ୍ରୀମାନ୍ ଗୋପାଳ ପ୍ରସାଦ ନନ୍ଦ ଏବଂ ଭ୍ରାତୃଷ୍ପୁତ୍ର ଶ୍ରୀମାନ ବିଭୁପ୍ରସାଦ ନନ୍ଦ ମୋର ସହପାଠୀ ଥିଲେ । ଆମ୍ଭେମାନେ ସ୍କୁଲରେ ପଢୁଥିବା ବେଳେ ତାଙ୍କର ସୁଚିନ୍ତିତ ଉପଦେଶ ଏବେବି ମନେ ପଡୁଛି । ୧୯୬୦ ମସିହାରେ ମୁଁ ବି.ଇଡି. ପରୀକ୍ଷା ପରେ ତାଙ୍କ ଦୟାରୁ ଗୋପାଳ ସ୍ମୃତି ବିଦ୍ୟାପୀଠରେ ପ୍ରଥମ ସହକାରୀ ଶିକ୍ଷକରୂପେ ନିଯୁକ୍ତି ପାଇଥିଲି । ୧୯୬୨ ମସିହା ଫେବୃୟାରୀ ୧୩ ତାରିଖ ପର୍ଯ୍ୟନ୍ତ ଶିକ୍ଷକତା କରିଥିଲି । ଦୁଇବର୍ଷ ପୂରିବାକୁ ତିନିମାସ ବାକି ଥାଏ, ଶିକ୍ଷା ବିଭାଗରେ ଏକ ସରକାରୀ ଚାକିରି ପାଇ ମୁଁ ସ୍କୁଲ କାର୍ଯ୍ୟରୁ ଅବ୍ୟାହତି ନେଲି । ଆଗରୁ କାହିଁକି ମାସିକିଆ ନୋଟିସ୍ ଦେଇନାହଁ ବୋଲି ମୋତେ ସେ କୈଫିୟତ୍ ମଗାଇଥିଲେ । ସେ ଯାହାହେଉ ମୋତେ ବିଶେଷ ହଇରାଣ ନ କରି ସ୍କୁଲରୁ ରିଲିଭ୍ କରି ଦେଇଥିଲେ । ସ୍କୁଲରେ ଶିକ୍ଷକତା କରୁଥିବା ବେଳେ ସ୍କୁଲର ଉନ୍ନତିକଳ୍ପେ ସେ ବିଭିନ୍ନ ସମୟରେ ସୁଚିନ୍ତିତ ସୁପରାମର୍ଶ ଦେଉଥିଲେ । ତାଙ୍କର ମୋ ଉପରେ ଖୁବ୍ ଭରସା ଥିଲା ବୋଲି ମୁଁ ଅନୁଭବ କରିଛି । ମୋର ପୂଜ୍ୟ ଶିକ୍ଷକ ଶ୍ରୀଯୁକ୍ତ ବଟକୃଷ୍ଣ ମିଶ୍ର ଓ ଶ୍ରୀ ନଟବର ସାହୁଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ପାଇଥିଲି । ସେମାନଙ୍କର ସତ୍ ପରାମର୍ଶ ମୋତେ ପରବର୍ତ୍ତୀ ଜୀବନରେ ବହୁତ ସାହାଯ୍ୟ କରିଛି ।

ସ୍ୱର୍ଗତ ନନ୍ଦଙ୍କର ତୃତୀୟ ପୁତ୍ର ଶ୍ରୀମାନ୍ ନାରାୟଣ ନନ୍ଦ ଏବଂ ଚତୁର୍ଥ ପୁତ୍ର ଶ୍ରୀମାନ୍ ଅରୁଣ ପ୍ରସାଦ ନନ୍ଦ ମୋର ଛାତ୍ର ଥିଲେ । ତେଣୁ ସ୍ୱର୍ଗତ ନନ୍ଦଙ୍କ ସହିତ ମିଶିବାର ବହୁତ ସୁଯୋଗ ମିଳିଥିଲା । ତାଙ୍କରି ପ୍ରଚେଷ୍ଟାରେ ଗୋପାଳ ସ୍ମୃତି ବିଦ୍ୟାପୀଠ ଓ କନ୍ଦରପୁର କଲେଜ ପ୍ରତିଷ୍ଠା ହୋଇ ପାରିଥିଲା । ଗାଁ, ଗାଁ ବୁଲି ନଡ଼ା, ବାଉଁଶ, ଟଙ୍କାପଇସା ଆଦାୟ କରିବା ହେଲା ତାଙ୍କର ବିଶେଷ କାମ । ସଙ୍ଗରେ ପିଲାମାନଙ୍କୁ ଏବଂ ଉତ୍ସାହୀମାନଙ୍କୁ ନେଇ ସେ କାର୍ଯ୍ୟ ସମ୍ପନ୍ନ କରୁଥିଲେ । ବିଭିନ୍ନ ସମୟରେ ସ୍କୁଲକୁ ଆସି ସେ ଶିକ୍ଷକମାନଙ୍କୁ ଡକାଇ ସ୍କୁଲର ଉନ୍ନତିକଳ୍ପେ କ'ଣ କାର୍ଯ୍ୟ ହୋଇପାରିବ ପରାମର୍ଶ ଦେଉଥିଲେ । ମୋର ଚାକିରି ଶେଷ ହେବା ପରେ କନ୍ଦରପୁର ବଜାରରେ ମୋ ସହିତ ଦେଖାହେଲେ ସେ ଟିକେ ହସି ଦେଇ କହନ୍ତି-- କୃଷ୍ଣ କିପରି ଅଛ ? ଅବସର ଜୀବନ କଟାଉଛ ଇତ୍ୟାଦି । ମୁଁ ଉତ୍ତର ଦିଏ-- ଆପଣମାନଙ୍କ ଆଶୀର୍ବାଦରୁ ଏକରକମ ଭଲରେ ଅଛି । ହଠାତ୍ ଦିନେ ଶୁଣିଲି ଯେ କେଶବବାବୁ ଚାଲିଗଲେ । ସମ୍ବାଦଟି ଶୁଣି ମୁଁ ବିଶେଷ ମର୍ମାହତ ହେଲି । କାରଣ ତାଙ୍କଠାରୁ ଆଉ ପଦେକଥା ଶୁଣିହେବ ନାହିଁ । ସେ ଚାଲିଗଲେ ସତ, କିନ୍ତୁ ତାଙ୍କର ହାତଗଢା ଅନୁଷ୍ଠାନ ଥିବା ଯାଏ ସେ ଅମର ହୋଇ ରହିଥିବେ । ଭଗବାନ୍ କରନ୍ତୁ ତାଙ୍କର ଅମର ଆତ୍ମାର ସଦ୍‌ଗତି ହେଉ ।

*ଫକିରପଡ଼ା,*

*ପୁରାତନ ଶିକ୍ଷକ, ଗୋ:ସ୍ମୃ:ବିଦ୍ୟାପୀଠ*



# କର୍ମଯୋଗୀ ସ୍ୱର୍ଗତ ନନ୍ଦ

✦ ଶ୍ରୀ ମନମୋହନ ପରିଡ଼ା

*"ପରିବର୍ତ୍ତିନି ସଂସାରେ ମୃତଃ କୋବା ନ ଜାୟତେ*
*ସ ଜାତୋ ଯେନ ଜାତେନ ଯାତି ବଂଶଃ ସମୁନ୍ନତିମ୍ ।"*

କର୍ମଯୋଗୀ ସ୍ୱର୍ଗତ କେଶବଚନ୍ଦ୍ର ନନ୍ଦ ଜଣେ ଏ ଅଞ୍ଚଳର ଶିକ୍ଷା ବିକାଶ କ୍ଷେତ୍ରରେ ମୂରବିଶ୍ରେଣୀୟ ବ୍ୟକ୍ତି ଥିଲେ । ଏ ଅଞ୍ଚଳର ପୁଅଝିଅମାନେ କିପରି ଶିକ୍ଷିତ ହୁଅନ୍ତୁ, ଶିକ୍ଷାଲାଭ କରିବା ପାଇଁ ଏ ଅଞ୍ଚଳରୁ ବାହାରକୁ ନ ଯାଆନ୍ତୁ, ତାହା ତାଙ୍କ ଜୀବନର ପ୍ରଧାନ ଚିନ୍ତାଧାରା ଥିଲା, ଯାହାକୁ ସେ ଆମରଣ ଜାରି ରଖିଥିଲେ । ଏ ଅଞ୍ଚଳରେ ବହୁତ ଧନୀ ମାନୀ ଏବଂ ପ୍ରଭାବଶାଳୀ ବ୍ୟକ୍ତି ଥିଲେ । କିନ୍ତୁ ଶିକ୍ଷାର ବିକାଶ ପାଇଁ ଅନୁଷ୍ଠାନମାନ ଗଢିବାରେ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦଙ୍କ ଅବଦାନ ଏ ଅଞ୍ଚଳରେ ଅଭୂତପୂର୍ବ ଓ ଅବିସ୍ମରଣୀୟ । ସେ ତାଙ୍କର ନିଷ୍ଠା ଓ ସାଧନା ବଳରେ ବହୁ ଶ୍ରମ ସ୍ୱୀକାର କରି ତିନିତିନିଟା ଶିକ୍ଷାନୁଷ୍ଠାନର ଜନକ ହୋଇପାରିଛନ୍ତି । ୧୯୪୮ ମସିହାରେ ସିଦ୍ଧେଶ୍ୱରପୁର ହାଇସ୍କୁଲ ପ୍ରତିଷ୍ଠା, ବିଂଶ ଶତାବ୍ଦୀର ୬୦ ଦଶକରେ ଅଥଙ୍ଗା ମୌଜାରେ ବାଳିକା ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା, ଏବଂ ସପ୍ତମ ଦଶକରେ କନ୍ଦରପୁର ଅଞ୍ଚଳରେ ମହାବିଦ୍ୟାଳୟ ପ୍ରତିଷ୍ଠା କରାଇବା ତାଙ୍କ ନିରଳସ ଓ ନିଷ୍ଠାପର କର୍ମଦକ୍ଷତାର ନିଖୁଣ ନମୁନା ।

ଅଥଙ୍ଗା ବାଳିକା ବିଦ୍ୟାଳୟ ଏବଂ କନ୍ଦରପୁର ମହାବିଦ୍ୟାଳୟ ପାଇଁ ସେ ଯେଉଁ ଅକ୍ଳାନ୍ତ ଶ୍ରମ ସ୍ୱୀକାର କରିଛନ୍ତି, ତାହା ମୁଁ ଅଙ୍ଗେ ନିଭାଇଛି । ବାଳିକା ବିଦ୍ୟାଳୟଟିର ପ୍ରତିଷ୍ଠା ସମୟରେ ଖଜୁରି ଗଛର ଖୁଣ୍ଟ ଏବଂ ନଡ଼ିଆ ବାହୁଙ୍ଗାରେ ବାଡ଼ ଦିଆଯାଇ ତିଆରି ହୋଇଥିବା ଘରେ ପିଲାଙ୍କୁ ପାଠପଢା ଯାଉଥିଲା । ରକ୍ଷଣଶୀଳ ଲୋକମାନେ ସେ ଘରକୁ ଦେଖି ମୁରୁକିହସା ଦେଉଥିଲେ ଏବଂ ପରିହାସ ମଧ୍ୟ

କରୁଥିଲେ । କିନ୍ତୁ ସେଇ ସ୍ଥାନରେ ଖଜୁରି ଖୁଣ୍ଟ ପୋତା ପରିବର୍ତ୍ତେ ବର୍ତ୍ତମାନ ଦ୍ୱିତଳ ପ୍ରାସାଦ ଦଣ୍ଡାୟମାନ । ସେଦିନର ପରିହାସ କରୁଥିବା ଓ ନ କରୁଥିବା ବ୍ୟକ୍ତିମାନଙ୍କର ପିଲାମାନେ ଏହି ବିଦ୍ୟାଳୟରେ ପାଠପଢ଼ି ଆଜି ଉଚ୍ଚଶିକ୍ଷିତ ଓ ସ୍ୱାବଲମ୍ବୀ ହୋଇଛନ୍ତି ।

କନ୍ଦରପୁର ମହାବିଦ୍ୟାଳୟ ହେଲାବେଳକୁ ମୁଁ ପ୍ରାୟ ଏ ସଂକ୍ରାନ୍ତୀୟ ସମସ୍ତ ସଭାସମିତି ଓ ଚାନ୍ଦାଦି ଆଦାୟ କାର୍ଯ୍ୟରେ ଓତପ୍ରୋତ ଭାବେ ଜଡ଼ିତ ଥିଲି । ଗୋଟିଏ କଥା ମନେପଡ଼େ— ମହାବିଦ୍ୟାଳୟ ହେବ, ନିଶ୍ଚୟ ହେବ । ଏ ସମ୍ବନ୍ଧରେ ଏ ଅଞ୍ଚଳର ବହୁ ମାନ୍ୟଗଣ୍ୟ ଏବଂ ସାଧାରଣ କର୍ମୀଙ୍କ ବାରମ୍ବାର ବୈଠକ ପରେ ସେମାନଙ୍କ ମନରେ ଏକ ଭାବନା ଉଙ୍କି ମାରିଲା ଯେ କେଉଁ ବ୍ୟକ୍ତି କଲେଜର ସମସ୍ତ ଦାୟିତ୍ୱ ବହନ କରି ଏହି ବିରାଟ କାର୍ଯ୍ୟକୁ ସଫଳ କରିବାରେ ସମର୍ଥ ହେବ । ବହୁଚିନ୍ତନ ଓ ମାନସ ମନ୍ଥନ ପରେ ଶେଷରେ ସ୍ୱର୍ଗତ ନନ୍ଦ ମହାଶୟଙ୍କ ନାମ ତାଙ୍କ ଅନୁପସ୍ଥିତିରେ ସର୍ବସମ୍ମତି କ୍ରମେ ସ୍ଥିର ହେଲା । ତା'ପରେ ତାଙ୍କୁ ଉକ୍ତ ମହାବିଦ୍ୟାଳୟ ନିର୍ମାଣ ଓ ପରିଚାଳନାର ସମସ୍ତ ଦାୟିତ୍ୱ ଅର୍ପଣ କରାଗଲା । ମହାବିଦ୍ୟାଳୟ ଘରଦ୍ୱାର ସଂକ୍ରାନ୍ତୀୟ ସମସ୍ତ ନିର୍ମାଣ ପୂର୍ଣ୍ଣାଙ୍ଗ ହେବାକୁ ବହୁତ ସମୟ ଲାଗିଲା । ଏଥିପାଇଁ ସିଦ୍ଧେଶ୍ୱରପୁର ହାଇସ୍କୁଲ ପରିସରରେ ଅସ୍ଥାୟୀ ବାଉଁଶ ତଲେଇଘେରା ଚାଳ ଘର ତିଆରି ହୋଇ ସେଇ ଘରେ ପାଠପଢ଼ା ଆରମ୍ଭ ହେଲା । କନ୍ଦରପୁର ମହାବିଦ୍ୟାଳୟଟିକୁ ସେ ଧନ୍ଦାମୂଳକ ମହାବିଦ୍ୟାଳୟରେ ପରିଣତ କରିବା ପାଇଁ ମନ ମଧ୍ୟରେ ପ୍ରାୟ ସ୍ଥିରନିଶ୍ଚିତ ହୋଇସାରିଥିଲେ । ତାଙ୍କର ଲକ୍ଷ୍ୟ ଥିଲା ଯେ, ଗୋଟିଏ ପୁଅ ବା ଝିଅ କଲେଜରେ ବିଦ୍ୟାଶିକ୍ଷା ଶେଷ କରି ତା'ର ପରିଚୟପତ୍ର ଧରି ଚାକିରି ପାଇଁ ବାରଦ୍ୱାର ଶୁଣ୍ଢିପିଣ୍ଡା ହେବନାହିଁ । ସେ ଗୋଟିଏ କୁଶଳୀ କାରିଗର ହୋଇ କଲେଜରୁ ବାହାରିବ । ଚାକିରି ଖୋଜିବା ମନା ନାହିଁ; କିନ୍ତୁ ସେ କେମିତି ଜୀବନ ପୋଷା ଶିକ୍ଷା ପରିବର୍ତ୍ତେ ଜୀବନ ସହିତ ତାଳମେଳ ନ ଥିବା ଶସ୍ତା ଶିକ୍ଷାର ହିନସ୍ତା ସାର୍ଟିଫିକେଟ୍ ଧରି ବେକାର ହୋଇ ବୁଲିବ ନାହିଁ । ସଂସାରରେ ଚଳିବା ପାଇଁ ନିଜର ଗୁଜୁରାଣ ମେଣ୍ଟାଇବା ପାଇଁ ସେ ଯେମିତି ଆତ୍ମନିର୍ଭରଶୀଳ ହୋଇପାରିବ । ଏହା ଥିଲା ସ୍ୱର୍ଗତ ନନ୍ଦଙ୍କର ଏ ଅଞ୍ଚଳର ଭବିଷ୍ୟତ ସନ୍ତାନମାନଙ୍କ ପାଇଁ ଚିନ୍ତା, ଶୋଚନା ଓ ସ୍ୱପ୍ନ । ତେଣୁ ସେ କେତେକ ସିଲେଇ ମେସିନ୍ ଓ ଯାନ୍ତ୍ରିକ ଉପକରଣ ଉକ୍ତ କଲେଜ ପାଇଁ କ୍ରୟ ଓ ସଂଗ୍ରହ କରିଥିଲେ ।

ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ମଂଜୁର ପାଇବା କ୍ଷମତା ସେତେବେଳେ (ବାମାଦାସ କମିଟି) ଦାୟିତ୍ୱରେ ଥାଏ। ଅର୍ଥାତ୍ ଉକ୍ତ କମିଟିର ମୁଖ୍ୟ ଶ୍ରୀଯୁକ୍ତ ବାମାଚରଣ ଦାସ ଥାଆନ୍ତି। ତାଙ୍କର ସ୍ୱୀକୃତି ଉପରେ ମହାବିଦ୍ୟାଳୟର ଶିଳାନ୍ୟାସ ନିର୍ଭର କରୁଥାଏ। ଶ୍ରୀଯୁକ୍ତ ଦାସ ମହାଶୟ ଥରେ ପରିଦର୍ଶନରେ ଆସିଥା'ନ୍ତି। ମହାବିଦ୍ୟାଳୟର ସମସ୍ତ ବିଷୟ ତଦାରଖ କରି ଶେଷରେ ଗୋଟିଏ ଅତ୍ୟାବଶ୍ୟକର ଅଭାବ ସ୍ଥଳରେ ସେ ଅଟକି ଗଲେ। ତାହା ଅବଶ୍ୟ ସେ ପରେ ପ୍ରକାଶ କରିଥା'ନ୍ତେ। କିନ୍ତୁ ନନ୍ଦ ମହାଶୟଙ୍କ ବାରମ୍ବାର ଅନୁରୋଧ ହେତୁ ସେ ତାହା ପ୍ରକାଶ କରିବାକୁ ବାଧ୍ୟ ହେଲେ। ସେ କହିଲେ, "ଧନ୍ଦାମୂଳକ ମହାବିଦ୍ୟାଳୟ ପାଇଁ ଅନ୍ୟୁନ ୪୦/୫୦ ଏକର ଜମି ଆବଶ୍ୟକ। ଏତେ ଜମି ଏଠାରେ କାହିଁ ? ଏ ବିଷୟରେ ଆପଣ ଅନ୍ତତଃ ଆଗରୁ ଟିକିଏ ଚିନ୍ତା ନ କରି ଧନ୍ଦାମୂଳକ ମହାବିଦ୍ୟାଳୟଟିଏ ପ୍ରତିଷ୍ଠା କରିବାକୁ କାହିଁକି ମନ ବଳାଇଲେ ?" ଉପସ୍ଥିତ ଭଦ୍ର ବ୍ୟକ୍ତିମାନଙ୍କର ମୁହଁ ଫିକା ପଡ଼ିଗଲା। ସେହିସମୟରେ ମୁଣ୍ଡକୁ ମୋର କ'ଣ ଢୁକିଲା କେଜାଣି ହଠାତ୍ ମୁଁ ଠିଆ ହୋଇପଡ଼ିଲି ଏବଂ କହିଲି, "ଆଜ୍ଞା ୪୦/୫୦ ଏକର କାହିଁକି ୭୦/୮୦ ଏକର ଜମି ମଧ୍ୟ ଦିଆଯାଇପାରିବ। କେବଳ ମହାବିଦ୍ୟାଳୟଟି କିଭଳି ହୋଇପାରିବ, ସେ ଦିଗରେ ଆପଣ ଏଣିକି ଟିକେ ସହାୟତା କରନ୍ତୁ।" ଏ ପ୍ରକାର ଦୁଃସାହିକ ଉତ୍ତରରେ ଉପସ୍ଥିତ ସମସ୍ତ ବ୍ୟକ୍ତି ବିସ୍ମୟସୂଚକ ଦୃଷ୍ଟିରେ ମୋ ଆଡ଼କୁ ଚାହିଁଲେ। ମୋର ମତକୁ ଉଦ୍‌ଭ୍ରାନ୍ତ, ବିରକ୍ତିକର ମନେକରି ପରସ୍ପରର ମୁହଁ ଚାହାଁଚୁହିଁ ହେଲେ। କେହି କେହି ମଧ୍ୟ ମୋତେ ଗାଲୁଆ ବାହାପିଆ ବୋଲି ଭାବିଲେ। ବାମାବାବୁ କୌଣସି ପ୍ରତିକ୍ରିୟା ପ୍ରକାଶ ନ କରି ଆମଠାରୁ ବିଦାୟ ନେଇ ତାଙ୍କ କର୍ମକ୍ଷେତ୍ରକୁ ଫେରିଗଲେ। ଅନ୍ୟମାନେ ମଧ୍ୟ ଗଲେ। କେଶବବାବୁଙ୍କ କନିଷ୍ଠ ପୁତ୍ର ଅରୁଣବାବୁ ମୋତେ ଡାକି ପଚାରିଲେ, "ଆହେ ଆପଣ ଯେଉଁ ୭୦-୮୦ ମାଣ ଜମି କଥା କହୁଛନ୍ତି ତାହା ସତ୍ୟ ନା ମିଥ୍ୟା ? ମୁଁ କହିଲି-- ସତ୍ୟ, ତାଲିକା ମଧ୍ୟ ଦେଇଦେବି ବୋଲି ଦୃଢୋକ୍ତି କଲି।

ସେଦିନ ରାତି ୧/୩୫ମି ସୁଦ୍ଧା କେଶବବାବୁ ତାଙ୍କ ଶୋଇବା ଶେଯରୁ ଉଠି ଆସି ଆମ ଗାଆଁରେ। ମୁଁ ନିଦରୁ ଉଠି ବାଉଳେଇ ଗଲି। ସେ ସିଧାସଳଖ ବିରକ୍ତ ଓ ବିବଶ ଭାବରେ କହି ପକାଇଲେ — ଯଦି ୭୦-୮୦ ଏକର ଜମିର

ଚିଠା ପ୍ରସ୍ତୁତ କରି ନ ହେବ, ତା'ହେଲେ ମହାବିଦ୍ୟାଳୟ ହୋଇପାରିବ ନାହିଁ। ଏତିକି କହି ସେ ସେହି ରାତାରାତି ମୋ ଗାଆଁ ଠାରୁ ତାଙ୍କ ଘରକୁ ଦୁଇ କି.ମି. ବାଟ ପୁଣି ଫେରିଗଲେ। ମୁଁ ଆଶ୍ଚର୍ଯ୍ୟ ହେଲି। କି ଅଭାବନୀୟ ଉଦ୍ୟମ ! ରାତି ୨ଟାରେ ଯେଉଁ ଲୋକ ଶୋଇବା ଶେଯରୁ ଉଠି ୨କି.ମି. ବାଟ ଗ୍ଲିଆସିଛି। ତା'ର ଏ ଉଦ୍ୟମ ପଛରେ କି ସ୍ୱାର୍ଥ ଥାଇପାରେ ! ନିଜ ପୁଅଝିଅମାନଙ୍କୁ କଲେଜରେ ଗ୍ଢକିରି ଦେବା ? କାଇଁ ନାଇଁ ତ। ତାଙ୍କର ଝିଅ ବୋଧେ ନାହାନ୍ତି, ପାଞ୍ଚ ଛ'ଟା ପୁଅ। ସବୁଗୁଡ଼ାକ ସରକାରୀ-ବେସରକାରୀ ସଂସ୍ଥାର ଉଚ୍ଚ ପଦରେ ପ୍ରତିଷ୍ଠିତ। ତେବେ ଏ କଲେଜ ପାଇଁ ଏ ବୁଢ଼ା ଲୋକଟା ଦିନରାତି ଏମିତି ପାଗଳ ହୋଇ ଧାଇଁଛି କାହିଁକି ? ମନେ ପଡ଼ିଲା ତାଙ୍କ ପୂର୍ବ ଉଦ୍ୟମର ଆଉ ଦୁଇଟି ଅନୁଷ୍ଠାନ କଥା। ସିଦ୍ଧେଶ୍ୱରପୁରର "ଗୋପାଳ ସ୍ମୃତି ବିଦ୍ୟାପୀଠ" ଓ ଅଥଙ୍ଗାର "ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର"-- ଦୁଇଟି ଅନୁଷ୍ଠାନ ଗ୍ଛରାକୁ ନିଜେ ଲଗାଇ ପୋତିଥିଲେ। ସେ ଦୁଇଟି ଏବେ ବଡ଼ ବଡ଼ ହୋଇଗଲେଣି, ଡାଳପତ୍ର ମେଲି ସବୁଜ ସମୃଦ୍ଧି ଘୋଷଣା କଲେଣି। ଦେଖିଲି— ସେଥିରେ ବି ତାଙ୍କର ନିଜର କେହି ସମ୍ପର୍କୀୟ ଜୀବନ ସଂସ୍ଥାନ ପାଇ ନ ଥିଲେ। ପ୍ରକୃତିସ୍ଥ ହେଲି। ତାଙ୍କୁ ନେଇ ଏତେ ହୀନ ଚିନ୍ତା କରୁଥିବାରୁ ନିଜକୁ ଧିକ୍କାର କଲି। ଭଗବାନଙ୍କୁ ସନ୍ଦେହ କଲେ ମନ ଯେମିତି ପାପ ଛୁଏଁ, ମୋତେ ସେମିତି ଲାଗିଲା। ତା' ପରଦିନ ମୁଁ ଆମ ଅଞ୍ଚଳର ପର୍ଯ୍ୟାପ୍ତ ଅନାବାଜି ଜମି ପ୍ରାୟ ୧୪ ଏକରର ତାଲିକା ତାଙ୍କୁ ଧରାଇଦେଲି। ତାହା ଦେଖି ସେ ଖୁବ୍ ଆଶ୍ଚର୍ଯ୍ୟ ଓ ଆଶାନ୍ୱିତ ହୋଇ ପଡ଼ିଲେ ଏବଂ ସାଥେସାଥେ ସେ ଚିଠାଟିକୁ ନେଇ ଶ୍ରୀଯୁକ୍ତ ବଟକୃଷ୍ଣ ଜେନାଙ୍କୁ ଦେଖାଇଥିଲେ । ଶ୍ରୀ ଜେନା ସମସ୍ତ ଗାତା ଖତିଆନା ମିଳାଇ ତାହା ସଠିକ୍ ବୋଲି କହିଥିଲେ । ସେହିଦିନଠାରୁ ସେ ମହାବିଦ୍ୟାଳୟ ସଂକ୍ରାନ୍ତୀୟ ବହୁ ତଥ୍ୟ ମୋ ନିକଟରେ ପ୍ରକାଶ କରନ୍ତି। ବହୁ ଦୂରଜାଗାକୁ ଚ୍ଛା ଆଦାୟ କରିବାକୁ ସାଙ୍ଗରେ ନିଅନ୍ତି। ମୋ ଉପରେ ତାଙ୍କର ଗଭୀର ବିଶ୍ୱାସ।

ବାସ୍ତବିକ ସେ ଜଣେ ନିରଳସ, କର୍ତ୍ତବ୍ୟନିଷ୍ଠ, ସ୍ୱଳ୍ପଭାଷୀ ଏବଂ ପ୍ରଚଣ୍ଡ ଧୈର୍ଯ୍ୟଶୀଳ ବ୍ୟକ୍ତି ଥିଲେ। ଆଗାମୀ ବଂଶଧରମାନଙ୍କର ଜୀବନ-ଜୀବିକା ବିଷୟରେ ଦୂରଦୃଷ୍ଟି ରଖିଥିଲେ। କଲେଜପାଇଁ ତାଙ୍କ ଆଖିରୁ ନିଦ ହଜିଯାଇଥିଲା। କାଳି

ଅନ୍ଧାରରୁ ଉଠି ଆସି ସେ ମୋତେ ମୂଲିଆ କରିବା ପାଇଁ ଉଠାଉଥିଲେ । ମୁଁ ନିଦ ମଳମଳ ହୋଇ ଉଠି ଲାଜେଇ ଯାଉଥିଲି ।

ଆଜି ସେ ଆଉ ଇହଜଗତରେ ନାହାନ୍ତି । କିନ୍ତୁ ତାଙ୍କର ଏ ତିନୋଟି ଅନୁଷ୍ଠାନ ମଥା ଟେକି ତାଙ୍କ ବ୍ୟକ୍ତିତ୍ୱର ମହନୀୟତା ପ୍ରଚ୍ଚାର କରୁଛି । ଅବଶ୍ୟ କନ୍ଦରପୁର ମହାବିଦ୍ୟାଳୟଟି ତାଙ୍କ ସ୍ୱପ୍ନର ଧନ୍ଦାମୂଳକ ମହାବିଦ୍ୟାଳୟରେ ପରିଣତ ହୋଇପାରିଲା ନାହିଁ । ସେଇଭଳି ଅଥଙ୍ଗା ବାଳିକା ଉଚ୍ଚ ବିଦ୍ୟାଳୟକୁ ଏକ ମହିଳା ମହାବିଦ୍ୟାଳୟରେ ପରିଣତ କରାଇବାର ଆଶା ଅଧୁରା ରହିଗଲା । ଏ ସମ୍ବନ୍ଧରେ ମୁଁ ନିଜେ ତାଙ୍କ ଶ୍ରୀମୁଖରୁ ଶୁଣିଛି । ପ୍ରଚ୍ଚରସର୍ବସ୍ୱ ଧାରାଠାରୁ ସେ ବହୁତ ଦୂରରେ ଥିଲେ । କର୍ମକୁ ସେ ବିଶ୍ୱାସ ଓ ସମ୍ବଳ ମନେକରନ୍ତି । ମାତ୍ର କଳୁଷିତ ସମୟରେ ତାଙ୍କ ଭଳି ବ୍ୟକ୍ତିଙ୍କର ବୋଧହୁଏ ଆଉ ଆବଶ୍ୟକ ନ ଥିଲା । ତେଣୁ କଥାସର୍ବସ୍ୱ କେତେଜଣ ପ୍ରଚ୍ଚରଧର୍ମୀ ସଭ୍ୟଙ୍କ ହୀନ ଚକ୍ରାନ୍ତରେ ସେ ଏ ମହାବିଦ୍ୟାଳୟର ଉନ୍ନୟନ ତଥା ସାଂଗଠନିକ କାର୍ଯ୍ୟରୁ ଈଶ୍ୱରଙ୍କୁ ପ୍ରଣାମ କରି ଆପଣାକୁ ଅଯୋଗ୍ୟ ମନେକରି ଦୂରେଇ ଗଲେ । ତାଙ୍କର ଅଭିମାନ ନ ଥିଲା, ମାତ୍ର ଖୁବ୍ ସ୍ୱାଭିମାନୀ ଥିଲେ । ଇହଧାମ ତ୍ୟାଗ କରିବା ପର୍ଯ୍ୟନ୍ତ ଅସମର୍ଥ ହେଇ ସ୍ମୃତିରହିତ ମସ୍ତିଷ୍କରେ ସେ ବିଭିନ୍ନ ଅନୁଷ୍ଠାନ ପାଇଁ ଗୁଣୁଗୁଣୁ ହେଉଥିଲେ ।

ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି-- ତାଙ୍କର ମହାନ ଆତ୍ମାର ସଦ୍‌ଗତି ହେଉ । ଏ ଅଞ୍ଚଳର ଅଗଣିତ ଛାତ୍ର, ଛାତ୍ରୀ, ସମାଜସେବୀ, ଗୃହୀ ମଧ୍ୟ ତାଙ୍କ ଜୀବନାଦର୍ଶରେ ବ୍ରତୀ ହୁଅନ୍ତୁ ।

''ଜୟ ତୁ ଶିକ୍ଷା, ଭବତୁ ଜଗଦ୍‌ରକ୍ଷା''

*ପୁରାତନ ଛାତ୍ର, ଅଥଙ୍ଗା*



# କେଶବବାବୁଙ୍କ ସ୍ମରଣେ

✦ ଶ୍ରୀ ସୁଭାଷ ଚନ୍ଦ୍ର ସାମନ୍ତ

ମାଇନର ଶିକ୍ଷା ଶେଷ କରି ମୁଁ ଯେତେବେଳେ ହାଇସ୍କୁଲ ଶିକ୍ଷା କନ୍ଦରପୁର ଦୋ'ଛକି ପାଖ ସିଦ୍ଧେଶ୍ୱରପୁର ଗ୍ରାମରେ ଆରମ୍ଭ କରିବାକୁ ଯାଏ, ସେତେବେଳ କେଶବବାବୁ (ସ୍ୱର୍ଗତ— କେଶବ ଚନ୍ଦ୍ର ନନ୍ଦ)ଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥାଏ । ସେ ସେହି ଗ୍ରାମର ବାସିନ୍ଦା ତଥା ସେ ବେଳର ଜମିଦାର ଓ ସେଇ ନବ ପ୍ରତିଷ୍ଠିତ ସ୍କୁଲର ସେକ୍ରେଟାରୀ ଥାଆନ୍ତି । ସେଇ ଗ୍ରାମର ସ୍ୱନାମଧନ୍ୟ ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜ, ଯେ କି ଓଡ଼ିଆ ଭାଷାକୋଷର ପ୍ରଣେତା ଥିଲେ, ତାଙ୍କରି ସ୍ମୃତିରେ ସ୍କୁଲଟିର ନାମ ଗୋପାଳ ସ୍ମୃତି ବିଦ୍ୟାପୀଠ ଦିଆ ହୋଇଥାଏ । ପାରାଦ୍ୱୀପ ରାସ୍ତାର କଡ଼ରେ ଥିବା ରଘୁନାଥପୁର ନିକଟରେ କଲରାବାଙ୍କ ଗାଁରେ ମୋର ଜନ୍ମ ଏବଂ ସେତେବେଳେ ମୋ ଗାଁ ପାଖରେ ଅନ୍ୟକୌଣସି ହାଇସ୍କୁଲ ନ ଥିବାରୁ ବାପା ଅନତିଦୂର (ପ୍ରାୟ ୮ ମାଇଲ ଦୂର) ଏଇ ସ୍କୁଲରେ ହାଇସ୍କୁଲ ଶିକ୍ଷା ପାଇଁ ମୋର ନା ଲେଖାଇ ଦେଇଥିଲେ । କାରଣ ସେତେବେଳର କଟକ-ପାରାଦ୍ୱୀପ ରାସ୍ତାରେ କଟକ ମୋଟର ଆସୋସିଏସନ୍ ଦ୍ୱାରା ଚ୍ଚଳିତ "ଦିଆସିଲି ଖୋଳ" ବସ୍‌ର ଯୋଗାଯୋଗ ବ୍ୟତୀତ ଅନତିଦୂରରେ ଥିବା ତାଳଦଣ୍ଡା କେନାଲ୍‌ରେ ଯାତାୟାତ କରୁଥିବା ହାତଟଣା ବୋଟ୍‌ର ଯୋଗାଯୋଗ ବ୍ୟବସ୍ଥା ଥିଲା । ମୁଁ ହଷ୍ଟେଲ୍‌ରେ ରହିବା ପାଇଁ ଚ୍ଚଉଳ, ଡାଲି ଓ ମୋର ଜିନିଷପତ୍ର ସହିତ ସେଇ ବୋଟ୍‌ରେ ମୁଖ୍ୟତଃ ଯିବାଆସିବା କରୁଥିଲି । ଏହା ୧୯୪୮ ମସିହାର ଘଟଣା, ଏବଂ ସେଇ ବର୍ଷ ହିଁ ଏଇ "ଗୋପାଳ ସ୍ମୃତି ବିଦ୍ୟାପୀଠ" ସିଦ୍ଧେଶ୍ୱରପୁର, ହାଇସ୍କୁଲଟି ନୂଆ କରି ଆରମ୍ଭ କରାଯାଇଥାଏ । ବିଦ୍ୟାଳୟଟି ନୂଆ କରି ଆରମ୍ଭ କରାଯାଇଥିବାରୁ ପ୍ରଥମ ବର୍ଷ ଆମର କୌଣସି ଛାତ୍ରାବାସ ତିଆରି ହୋଇନଥାଏ ଏବଂ କେଶବବାବୁ

ତାଙ୍କର ସ୍ୱଳାୟ ରହିବା କୋଠା ପାଖରେ ଗୋଟିଏ ଲମ୍ବା ହଲ୍ ଆମ୍ଭମାନଙ୍କର ରହିବା ପାଇଁ ଦେଇଥା'ନ୍ତି । ସେଥିରେ ଆମେ ପ୍ରାୟ ୨୦/୩୦ ଜଣ ପିଲା ସେଇ ହଲଟିକୁ ଆମର ଛାତ୍ରାବାସଭାବରେ ବ୍ୟବହାର କରୁଥାଉ । ତା' ଛଡ଼ା ତାଙ୍କ କୋଠା ସଂଲଗ୍ନ ଆଉ ଗୋଟିଏ ଛୋଟ ବଖରା ଦେଇଥା'ନ୍ତି । ତାକୁ ଆମର ରୋଷେଇଶାଳା କରାଯାଇଥାଏ ଏବଂ ଜଣେ ପୂଜାରୀ ଆମ୍ଭମାନଙ୍କର ଖାଇବା ପିଇବାର ଦାୟିତ୍ୱ ବହନ କରିଥାଏ । ଏହିପରି ଭାବରେ ଆମର ହଷ୍ଟେଲଜୀବନ ଅତି ସୁରୁଖୁରୁରେ ଏବଂ ବେଶ୍ ଆରାମରେ ଅତିବାହିତ ହେଉଥାଏ । ସେଇ ରହିବା ଭିତରେ କେଶବବାବୁଙ୍କ ସହିତ ମୋର କେତୋଟି ବ୍ୟକ୍ତିଗତ ଅଭିଜ୍ଞତା ବର୍ଣ୍ଣନା କରିବା ପାଇଁ ଏଇ ଲେଖାଟିର ଅବତାରଣା, ଯାହା କି ମୋର ପରବର୍ତ୍ତୀ ଜୀବନରେ ଏ ପର୍ଯ୍ୟନ୍ତ ଅଭୁଲା ସ୍ମୃତି ହୋଇ ରହିଛି ଏବଂ ମୋ ଜୀବନରେ ଗଭୀର ରେଖାପାତ କରିଛି ।

ସେଇ ପାଠ ପଢିଲା ବେଳେ ମୁଁ କୁମ୍ଭକର୍ଣ୍ଣ ଭଳି ବଡ଼ 'ନିଦ୍ରାଳୁ' ଥିଲି, ଏବଂ ସନ୍ଧ୍ୟାବେଳେ ପାଠପଢା ଆରମ୍ଭ ହେଉ ନ ହେଉଣୁ ମୁଁ ବହିପତ୍ର ଖୋଲି ପଢା ଆରମ୍ଭ କରିବା ମାତ୍ରେ ହିଁ ସବୁଦିନ ଗଭୀର ନିଦରେ ଶୋଇ ପଡୁଥିଲି । କେଶବବାବୁ ତାଙ୍କ ଜମିଦାରୀ ତଥା ଅନ୍ୟାନ୍ୟ ବ୍ୟସ୍ତବହୁଳ ଦୈନିକ ଦାୟିତ୍ୱ ସମାପନ କରି ଫେରିଲାବେଳକୁ ମୋତେ ବହିପତ୍ର ଉପରେ ଏଇପରି ସୁପ୍ତ ଅବସ୍ଥାରେ ଦେଖୁଥିଲେ ତଥା ଅତ୍ୟନ୍ତ ବ୍ୟସ୍ତ ହୋଇ ପଡୁଥିଲେ ଏବଂ ମୋର ସହପାଠୀମାନଙ୍କୁ ମୋତେ ଉଠାଇ ଦେବାକୁ କହୁଥିଲେ । କିନ୍ତୁ ସେମାନେ ମୁଁ ଅତ୍ୟନ୍ତ ଗଭୀର ନିଦ୍ରାରେ ଶୋଇ ପଡୁଥିବାରୁ ମୋତେ ଉଠାଇବା ପାଇଁ ସେମାନଙ୍କର ଅସହାୟତା ପ୍ରକାଶ କରୁଥିଲେ । କାରଣ ସେମାନେ ଆଗରୁ ଏ ପ୍ରକାର ଅପଚେଷ୍ଟା କରି ଆଦୌ କୃତକାର୍ଯ୍ୟ ହୋଇପାରୁ ନଥିଲେ ।

ଏହିପରି ଭାବରେ ବର୍ଷଟି ଗଡ଼ି ଚାଲିଲା ଏବଂ ମୋର ଅଷ୍ଟମ ଶ୍ରେଣୀ ପଢା ଶେଷରେ, ବାର୍ଷିକ ପରୀକ୍ଷାରେ ମୁଁ ତୃତୀୟ ସ୍ଥାନ ଅଧିକାର କରି ନବମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥାଏ । କେଶବବାବୁ ଏ କଥା ଶୁଣିଲାବେଳକୁ ଦୁର୍ଭାଗ୍ୟବଶତଃ ଗୁରୁତର ବାତଜ୍ୱରରେ ପୀଡ଼ିତ ହୋଇ ପ୍ରାୟ ଶଯ୍ୟାଶାୟୀ ହୋଇ ପଡ଼ିଥାଆନ୍ତି । ତଥାପି ତାଙ୍କର ବ୍ୟକ୍ତିଗତ ଯନ୍ତ୍ରଣା ସତ୍ତ୍ୱେ ସେ ମୋତେ ତାଙ୍କ ପାଖକୁ ଡକାଇ

କହିଥିଲେ, "ତୁମେ ଯଦି ଆଦୌ ପଢ଼ାପଢ଼ି ନ କରି କ୍ଲାସ୍‌ରେ ତୃତୀୟ ସ୍ଥାନ ପାଇ ପାରୁଛ, ତେବେ ମନଦେଇ ପଢ଼ାପଢ଼ି କଲେ ଆହୁରି ଭଲ କରନ୍ତ ନାହିଁ ?" ମୋର ସେତେବେଳେ ଆଦୌ ସେତେଟା ଦାୟିତ୍ୱବୋଧ ଆସି ନ ଥିଲା । ତେଣୁ ମୁଁ ମୋର ଏପରି ଦାୟିତ୍ୱହୀନତା ପାଇଁ ଲଜ୍ଜିତ ହେବାର ଅଭିନୟ କରି ଏଣିକି ମନ ଦେଇ ପଢ଼ିବି ବୋଲି ପ୍ରତିଶ୍ରୁତି ଦେଇ ତାଙ୍କ ପାଖରୁ ଫେରି ଆସିଥିଲି ।

ଉପରୋକ୍ତ ଘଟଣାଟି ମୋ ମନରେ ତଥା ପରବର୍ତ୍ତୀ ଜୀବନରେ ଗଭୀର ରେଖାପାତ କରିଥିଲା ଏବଂ ଏ ପର୍ଯ୍ୟନ୍ତ ମୋର ଗୋଟିଏ ଅଭୁଲା ସ୍ମୃତି ହୋଇ ରହିଯାଇଛି । କାରଣ ଅନ୍ୟ ସବୁ ଛାତ୍ରଙ୍କ ପରି ମୁଁ ବି ଜଣେ ସାଧାରଣ ଛାତ୍ର । ତାଙ୍କର କୌଣସି ସଂପର୍କୀୟ ନୁହେଁ, ତଥାପି ମୋ ପ୍ରତି ତାଙ୍କର ଏଇ ପିତୃତୁଲ୍ୟ ସ୍ନେହ ଏବଂ ସ୍କୁଲର ଉନ୍ନତି ଓ ନାଁ ପାଇଁ ତାଙ୍କର ଅତ୍ୟଧିକ ନିଷ୍ଠା ମୋତେ ଏ ପର୍ଯ୍ୟନ୍ତ ଅଭିଭୂତ କରେ । ଅବଶ୍ୟ ତାଙ୍କର ତଥା ଈଶ୍ୱରଙ୍କର ଆଶୀର୍ବାଦ ଲାଭ କରି ମୁଁ ତା' ପରବର୍ତ୍ତୀ କ୍ଲାସ ଅର୍ଥାତ୍ ନବମ ଶ୍ରେଣୀ ଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ସେହି ସ୍କୁଲରେ କ୍ଲାସ୍‌ରେ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ପ୍ରଥମ ସ୍ଥାନ ଅଧିକାର କରିଥିଲି ଏବଂ ତାଙ୍କରି ତଥା ଆମ ସ୍କୁଲର ସେ ବେଳର ପ୍ରେସିଡେଣ୍ଟ୍ ବିରିବାଟୀ ପାଖ ତଅଁରପା ଗାଁର ସ୍ୱର୍ଗତ ଅବସରପ୍ରାପ୍ତ ଦର୍ଶନ ଅଧ୍ୟାପକ ରତ୍ନାକର ପତିଙ୍କ ଆନ୍ତରିକ ପ୍ରେରଣା ଯୋଗୁଁ ହିଁ ହାଇସ୍କୁଲ ପରୀକ୍ଷାରେ ସ୍କୁଲ ପାଇଁ ଗୋଟିଏ ପ୍ରଥମ ଶ୍ରେଣୀ ପରୀକ୍ଷା ଫଳ ଆଣିଦେବାରେ ସମର୍ଥ ହୋଇଥିଲି ।

*ପୁରାତନ ଛାତ୍ର-୧୯୫୨*
*ନାୟାପଲ୍ଲୀ, ଭୁବନେଶ୍ୱର*



# ଦେଖିଲେ ଦେଖିଲା ପରି

✦ ଡକ୍ଟର ତୀର୍ଥାନନ୍ଦ ମିଶ୍ର

ଦୂରରୁ ଦେଖିଛି । ପରିଚୟ ଏଇ ସାଧାରଣ, ନିବିଡ଼ କି ଅନ୍ତରଙ୍ଗ ନୁହଁ । ଅଶୀତିପର ବର୍ଷରେ ବି ଯୁବସୁଲଭ ଉଦ୍ଦାମତା । ଗୋରା ତକ୍‌ତକ୍ ତମ୍ବା ରଙ୍ଗର ଚେହେରା, ମଥାରେ ପାଚିଲା କେଶ । ପୂରିଲା ପୂରିଲା ଦିହହାତ । ପରିଧାନ— ଗେରୁ ରଂଗର ଲୁଗା ଆଉ ସେଇ ରଂଗର ଫତେଇ । ପ୍ରକୃତରେ ସୁଠାମ ସୁଗଠିତ ବପୁ । କବି କହିଲାଭଳି— ଦେଖିଲେ ଦେଖିଲା ପରି ...

କେଶବ ନନ୍ଦ । ଗାଁ ଗହଳର ଲୋକଙ୍କ ଅତି ପ୍ରିୟ ନାଆଁ । ଯାହା ପାଖରେ ମାଳିକାପ୍ରସିଦ୍ଧ ରହ୍ନବଟ ଓ ଅନନ୍ତକୁଦ । ସେ ଗାଆଁ ପୁଣି ଘରଡିହ ବନ୍ଧା ଦେଇ ଭାଷାର କୋଣାର୍କ ଗଢ଼ିଥିବା ଗୋପାଳପୁରିଆ ମଣିଷଟିର ଗାଆଁ । କେବଳ ଗୋପାଳ ପ୍ରହରାଜ ନୁହନ୍ତି, ଅଶ୍ରୁବିନ୍ଦୁ ଉପନ୍ୟାସର ସଫଳ ସ୍ରଷ୍ଟା ବଟକୃଷ୍ଣ ପ୍ରହରାଜଙ୍କ ଗାଁ, ସୁପ୍ରସିଦ୍ଧ କଥାକାର ଶାନ୍ତନୁ ଆଗ୍ଚର୍ଯ୍ୟଙ୍କ ଗାଆଁ; ଆମ ସମୟର ଆଗ ଧାଡ଼ିର କବି ପ୍ରତିଭା ଶତପଥୀଙ୍କ ପିତା ଚକ୍ରଧର ଶତପଥୀଙ୍କ ଗାଁ ।

ଏ ଗାଁର ମହିମା ଅତୁଳନୀୟ । ଏଇ ଗାଁର ଲକ୍ଷ୍ମୀଧର ମଧ୍ୟ ଇଂରାଜୀ ବିଦ୍ୟାଳୟ ପରେ ଗୋପାଳ ସ୍ମୃତି ବିଦ୍ୟାପୀଠରେ କେବଳ ଆଖପାଖ ଗାଁଆର କାହିଁକି, ଜଗତ୍‌ସିଂହପୁର ତଥା କଟକ ସଦରର ଅନେକ ଛାତ୍ରଛାତ୍ରୀ ଅଧ୍ୟୟନ କରି ଆଜି ଓଡ଼ିଶାରେ ସୁପ୍ରତିଷ୍ଠିତ ହୋଇ ପାରିଛନ୍ତି । ଏଇ ଗାଁର ନବଜିଆ ପଦୁଲି ଅଜା ଓରଫ ପଦ୍ମନାଭ ଆଗ୍ଚର୍ଯ୍ୟ ଏ ଅଞ୍ଚଳର ଜଣେ ବିଚକ୍ଷଣ ପ୍ରତିଭା ।

ସେଇ ସୁପ୍ରସିଦ୍ଧ ଗାଁ ସିଦ୍ଧେଶ୍ୱରପୁର କେଶବବାବୁଙ୍କ ଜନ୍ମସ୍ଥାନ ।

ପିଲାଦିନୁ ମୁଁ ତାଙ୍କୁ ଦେଖି ଆସିଛି । ସିଦ୍ଧେଶ୍ୱରପୁର ଉଚ୍ଚବିଦ୍ୟାଳୟରେ ଅଧ୍ୟୟନ କରିବା କାଳରେ ତାଙ୍କୁ ଦୁଇତିନି ଥର ଆମ ବିଦ୍ୟାଳୟ ପରିସରରେ

ଦେଖିଛି । ସେତେବେଳେ ତାଙ୍କ ସୁଟ୍‌ପିନ୍ଧା ସାହେବୀ ଚେହେରା ମୋର ଏବେ ବି ମନେ ଅଛି । ସେ ବିଦ୍ୟାଳୟ ପରିସରକୁ ଆସିଲେ କୌଣସି ମହାପୁରୁଷ ଆସିଗଲା ପରି ଲାଗୁଥିଲା । ସେତେବେଳେ ମୋତେ ଲାଗୁଥିଲେ ଖୁବ୍ ଗମ୍ଭୀର ଓ ମିତବାକ୍ । ଲାଲ୍ ଓଠରୁ ମୁକୁଳି ଆସୁଥିଲା ଅମୃତର ହସ ଧାରେ । କଥା ଖୁବ୍ ଧୀର । ଗୋପାଳକୃଷ୍ଣ କହିଲାପରି "ବିନୟ ବାରିଧି ମୃଦୁବାଣୀ / ଶ୍ରୁତିପଥରେ ଯେ ଥିବ ଶୁଣି / ପୀୟୂଷାନନ ଜନଙ୍କୁ ଧନ୍ୟ ବୋଲି ବୋଲିବ ସେ କି ସୁଖରେ ଆଉ ।"

ସତରେ, ଆମ ପିଲାବେଳେ ଆମେ ତାଙ୍କ ବ୍ୟକ୍ତିତ୍ୱର ଯାଦୁକରୀ ସ୍ପର୍ଶରେ ବିମୋହିତ ହୋଇ ଉଠୁଥିଲୁ । ପଦୁଲି ଅଜାଙ୍କ ପରି ସେ ଏତେ ମିଶାଣ ପ୍ରକୃତିର ମଣିଷ ନ ଥିଲେ ମଧ୍ୟ ତାଙ୍କ ବ୍ୟକ୍ତିତ୍ୱର ଚୁମ୍ବକୀୟ ଆକର୍ଷଣ ମୋତେ ତାଙ୍କ ଆଡ଼କୁ ଟାଣି ନେଉଥିଲା । ମାତ୍ର ମୁଁ କେବେହେଲେ ତାଙ୍କର ନିକଟତର ହୋଇ ନଥିଲି । ଆଜି ପର୍ଯ୍ୟନ୍ତ ବି ଯେତେ ହେବା କଥା ସେତେ ହୋଇପାରିନି ।

ଏହାପରେ ତାଳଦଣ୍ଡା କେନାଲରେ ବହି ଯାଇଛି ଅନେକ ପାଣି । ତା' ମଧ୍ୟରେ କେଶବବାବୁ ମୋ ପାଇଁ ସେଇ ଅପହଂଚ ଦୂରତାର ମଣିଷ । କାର୍ ଚଲାଇ ଆଭିଜାତ୍ୟ ଖେଳାଇ ଗାଁକୁ ଆସୁଥିବା ମଣିଷ । ଜୀବନ ବୀମା କମ୍ପାନୀର ଉଚ୍ଚ ପଦପଦବୀର ମଣିଷ ।

**ତାଙ୍କର ଆଉ ରୂପଟିକୁ କେବଳ ଶୁଣିଥିଲି, ଦେଖି ନଥିଲି । ସିଦ୍ଧେଶ୍ୱରପୁର ହାଇସ୍କୁଲ ହେବା ମୂଳରେ ତାଙ୍କ ଅବଦାନ ଅନେକ । ଓଡ଼ିଶାର ବିଶିଷ୍ଟ ଦାର୍ଶନିକ** ତଥା ଆମ ଅଞ୍ଚଳର ମୂର୍ଦ୍ଧନ୍ୟ ସାରସ୍ୱତ ପ୍ରତିଭା ପ୍ରାବନ୍ଧିକ ୰ରତ୍ନାକର ପତିଙ୍କ ସହ ଗ୍ରାମି ଗ୍ରାମି ଅନୁଦାନ ସଂଗ୍ରହ କରି ଏ ଅଞ୍ଚଳର ସ୍ୱେଚ୍ଛାସେବୀମାନଙ୍କ ସହ ସେ ଗଢ଼ିଥିଲେ ଅଧୁନା ଏ ଅଞ୍ଚଳର ସୁପରିଚିତ ଗୋପାଳ ସ୍ମୃତି ବିଦ୍ୟାପୀଠ । ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିରରେ ତାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଅନ୍ୟମାନଙ୍କ ସହ ସେ ପାଦରେ ଗ୍ରାମି ଗ୍ରାମି ଏହି ବାଳିକା ବିଦ୍ୟାଳୟ ଗଠନ କରିବାରେ ମୁଖ୍ୟ ଭୂମିକା ନେଇଥିଲେ । ସେ ଥିଲେ କାଳେ ଖୁବ୍ ସମୟ ସଚେତନ । ଗାଁ ବୁଲି ଅନୁଦାନ ସଂଗ୍ରହ କରିବାପାଇଁ ଯେତେବେଳେ ସମୟ ଧାର୍ଯ୍ୟ ହେଉଥିଲା, ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ସେ ପହଂଚି ଯାଉଥିଲେ ଲକ୍ଷସଳରେ । କେହି ତାଙ୍କୁ କେବେ ପଛରେ ଆସିବା ଦେଖିନାହିଁ କି ସାମାନ୍ୟ ଅଥବା କୌଣସି ବିଶେଷ ବିପଦରେ

ତାଙ୍କର ଧୈର୍ଯ୍ୟଚ୍ୟୁତ ଘଟିବାର କେବେ ବି ଦେଖାଯାଇନି । ସେ ଯଥାର୍ଥରେ ଏକ କର୍ମବୀର । କୌଣସି ପଦପଦବୀର ଅଭିଳାଷ କେତେବେଳେ ତାଙ୍କର ବି ନ ଥିଲା ।

୧୯୭୮ ମସିହାରେ କେନ୍ଦୁଝରର ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ନୂଆ ନୂଆ ଯୋଗ ଦେଇଥାଏ । ଦୁର୍ଗାପୂଜା ଛୁଟି । କନ୍ଦରପୁରରେ କେଉଁ କାମରେ ମନେ ନାହିଁ ସନ୍ଧ୍ୟାରେ ଯିବାବେଳକୁ କେଶବବାବୁଙ୍କ ସହିତ ସାକ୍ଷାତ ହେଲା । ସେତେବେଳେକୁ ସେ କର୍ମକ୍ଷେତ୍ରରୁ ସମ୍ଭବତଃ ଅବସର ନେଲେଣି । ଦୀର୍ଘଦେହୀ ଉନ୍ନତ ବ୍ୟକ୍ତିତ୍ୱର ସେଇ ମଣିଷଟି ମୋତେ ସେ ଦିନ କାହିଁ ଦିଶୁଥିଲେ ଏକ ଦେବଦୂତ ପରି । ବିଶ୍ୱ କଲ୍ୟାଣ ପାଇଁ ଅବତରି ଆସିଥିବା ଶୂନ୍ୟଦେହୀ ମହାପୁରୁଷ!

ପାଖକୁ ଯାଇ ପାଦ ଛୁଇଁଲି । ସେ ପ୍ରଥମେ ପାଦ ଛୁଇଁବାକୁ ମନା କଲେ । ମାତ୍ର ପରେ ମଥାରେ ହାତଥୋଇ ମୋ ପରିଚୟ ପଚ୍ଚରିଲେ । ନମ୍ର କଣ୍ଠରେ କହିଲି, 'ଦଣ୍ଡୁଆସି ପଡ଼ାର ଧ୍ରୁବ ମିଶ୍ରଙ୍କ ପୁଅ ମୁଁ .... ।'

''କିଏ ତୀର୍ଥାନନ୍ଦ ! ତମକୁ କ'ଣ ମୁଁ ଚିହ୍ନିନି ! ଅରୁଣ (ତାଙ୍କ ସାନପୁଅ ଅରୁଣ ନନ୍ଦ) କହୁଥିଲା, 'ତମେ କାଳେ ସୁନ୍ଦର ପାଲା କରୁଛ । ଏବେ ପରା ଅଧ୍ୟାପକ ହେଲଣି ?''

ମୋତେ ଆକାଶରୁ ପଡ଼ିଲା ପରି ଲାଗିଲା । ଯୁଗପତ୍ ଆନନ୍ଦ ଏବଂ ବିସ୍ମୟ ଭିତିରେ ମୁଁ ବିହ୍ୱଳିତ ହୋଇ ପଡ଼ିଲି । ଦୂରର ମଣିଷ ପୁଣି ଏବେ ପାଖରେ! ସରଗ ଚନ୍ଦ୍ର ଖସି ପଡୁଛି କାହୁ ହାତରେ !!

ସେଇଠାରୁ ଅନ୍ତରଙ୍ଗତା । ୧୯୮୧ ମସିହାରେ ମୋ ବିବାହ ନିମନ୍ତ୍ରଣ ପତ୍ର ଦେଲି । ସେତେବେଳେ ଗାଁ ଗହଳିରେ ପୁଅ ବିବାହରେ ମଙ୍ଗନ ଦିନ ଏବଂ ଝିଅ ବିବାହରେ ବିବାହ ଦିନ ଭୋଜି ଦିଆଯାଉଥିଲା । ପୁଅ ବାହାଘରରେ ପୁଅ ବୋହୂଙ୍କୁ ସୁସଜ୍ଜିତ ଚଉକିରେ ବସାଇ ବ୍ୟବସାୟାତ୍ମକ ଭୋଜି ପରମ୍ପରା ନଥିଲା ।

ମଙ୍ଗନ ଦିନର ବାସ୍ତବତା ଭିତରେ ଆଟୁପାଟୁ ହେବାବେଳେ ଠିକ୍ ସୂର୍ଯ୍ୟ ଢ଼ଳିବାକୁ ଉପକ୍ରମ କଲାବେଳକୁ ସେ ପହଞ୍ଚିଲେ । ଧୋତିଟିଏ ହାଫସାର୍ଟ । ଆଖିରେ

ପାଓ୍ୱାର ଚଷମା । ସେଇ ସୁଠାମ ସୁଗୋଲ ଗୌରବପୁ । ବୟସରେ ସାମାନ୍ୟ ଅବନତ, ତଥାପି ତେଜୋଦୀପ୍ତ, ଅପରାହ୍ଣ ସୂର୍ଯ୍ୟପରି ଉଜ୍ଜ୍ୱଳ ଓ ଆଶିଃପ୍ରବଣ ।

ପାଦ ଛୁଇଁଲି । ଦୁଆରେ ଚଉକିଟିଏ ଦେଲି । ପାଦଧୋଇ ଦେବାକୁ ଡାକିଲି । ମନା କଲେ । କହିଲେ— 'ଆଜିକାଲି ଦାମୀ ଦାମୀ ବାହାଘର କାର୍ଡ଼ର ଝମେଲା । ହେଲେ ତମର ଏ ସାଦା କାର୍ଡ଼ (ମୋ ବାହାଘର କାର୍ଡ଼ ଅତି ସାଦାସିଧା ହୋଇଥିଲା ) ଦେଖି ଆଜି ଅନ୍ୟ ଦୁଇତିନୋଟି ଉତ୍ସବରେ ଯୋଗଦେବାକୁ ଥିଲେ ମଧ୍ୟ ତୁମ ପାଖକୁ ଆସିଲି ପ୍ରଥମେ ।

ମୁଁ ଅବନତ ହୋଇଗଲି । ସୌନ୍ଦର୍ଯ୍ୟ ଦୃଷ୍ଟିରୁ ବିଭିନ୍ନ ଗାଁରେ କାର୍ଡ଼ ଦିଆଯାଏ । ଏବେ ଯେମିତି ମୋ ପାଖକୁ ଆସୁଛି । ମାତ୍ର ସବୁଠି ଯୋଗ ଦେଇ ହୁଏ ନାହିଁ । ହେଲେ ଏ ପରିଣତ ବୟସରେ ମାଘର ଏ ଉତ୍ତୀର୍ଣ୍ଣ ଅପରାହ୍ଣରେ ଏକା ଏକା ସାଇକେଲରେ !

ତାଙ୍କ ଆଶିଷରେ ଧନ୍ୟ ହୋଇ ଯାଇଥିଲି ମୁଁ । ପୁଣି ତାଳଦଣ୍ଡା କେନାଲରେ ଅନେକ ପାଣି ବହିଗଲା ।

ପରେ ମୋ ଘରେ ଅଗ୍ରଜଙ୍କ ଆସି ପହଁଚିଲେ ସେ । କହିଲେ,"ତୀର୍ଥାନଂଦ ! ନେତ୍ରାନନ୍ଦ ପାଖକୁ ଆସିଥିଲି । ନେତ୍ରାନନ୍ଦ ଓରଫ୍ ନାଳ'ନା, ମୋ ମାମୁଁ ପୁଅ ଭାଇ । ଏ ଅଞ୍ଚଳର ଜଣେ ଜଣାଶୁଣା ଲୋକ । କେଶବବାବୁଙ୍କର ତାଙ୍କ ପ୍ରତି ଥିଲା ଅଫୁରନ୍ତ ସ୍ନେହ ଓ ଶ୍ରଦ୍ଧା ... । ତମ ପାଇଁ ଗୋଟିଏ ବହି ଆଣିଛି ପଢ଼ିବ ।"

ଏହାପରେ ତାଙ୍କ ଝୁଲାମୁଣିରୁ ବାହାରିଲା ଯେଉଁ ବହିଟି, ତାହା ଥିଲା ତାଙ୍କର ଉପନ୍ୟାସ 'ଗୋରାଗ୍ରନ୍ଦ' । ଆଶ୍ଚର୍ଯ୍ୟ ହୋଇଗଲି ମୁଁ । ଏ ପୁଣି ଲେଖାଲେଖି କରନ୍ତି ! ହଁ, ନ ଲେଖିବେ କାହିଁକି ? ସେ ମାଟି ତ ସାହିତ୍ୟିକଙ୍କ ମାଟି । ସେଇ ମାଟିର ଦାୟାଦ କେଶବବାବୁ ଜଣେ ଲେଖକ ହେବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ବା ଅଛି ?

ସେଦିନ ରାତିକେ ଉପନ୍ୟାସଟି ସାରିଦେଲି । ଭାଷାବିନ୍ୟାସ ଅତି ସରଳ । ଚରିତ୍ର ଚିତ୍ରଣରେ ସୂକ୍ଷ୍ମ ଅନ୍ତର୍ଦୃଷ୍ଟି ପ୍ରକୃତରେ ଆକର୍ଷଣୀୟ । କଳେବର କ୍ଷୁଦ୍ର ହେଲେ ମଧ୍ୟ ବଳିଷ୍ଠ ।

ଗାଆଁରେ ବେଶୀ ସମୟ ରହୁନଥିଲି ମୁଁ । ଏଣୁ ତାଙ୍କୁ ଭେଟିବା ମୋ ଭାଗ୍ୟରେ ନଥିଲା । ତ୍ୟାଗର ଜୀବନ୍ତ ପ୍ରତିମୂର୍ତ୍ତି ଥିଲେ ସେ । କନ୍ଦରପୁର ମହାବିଦ୍ୟାଳୟ ଗଢ଼ା ହେବା ମୂଳରେ ତାଙ୍କ ତ୍ୟାଗପୂତ ସାଧନାର ପଟାନ୍ତର ନାହିଁ । ପରିଣତ ବୟସରେ କାନ୍ଧରେ ଝୁଲାମୁଣି ଝୁଲାଇ କଲେଜ ପାଇଁ କୁଆଡ଼େ ଯାଇନାହାନ୍ତି ସେ । ଖରା ଓ ତରାକୁ ଏକ କରି ଜାତି ପାଇଁ ଖଟିବା ଲୋକ ସେ । ଏ ମାଟିରେ ଯଦି ଗୋଟିଏ କଲେଜ ହୁଏ, ତେବେ ଏ ଅଞ୍ଚଳରେ ପିଲା ଆଉ କଟକ ଯିବେ ନାହିଁ । ଗରିବଗୁରୁବା ପିଲା ମାଟ୍ରିକ୍ ପରେ ମୂର୍ଖ ରହିବେ ନାହିଁ । ଘରେ ଶାଗପଖାଳ ଦୁଇଟା ଖାଇ କଲେଜରେ ପଢିବେ । ଗାଆଁର ମଳିମୁଣ୍ଡିଆ ମଣିଷ ଶିକ୍ଷିତ ହେବେ । ପାଠପଢି ପାରିଲିନାହିଁ ବୋଲି କାହା ମନରେ ଆଉ ଅବଶୋଷ ରହିବ ନାହିଁ ।

ଶେଷରେ ତାଙ୍କ ଅକୃପଣ ତଥା ନିଷ୍ଠାପର ସାଧନା ତଥା ଅନ୍ୟମାନଙ୍କର ଯଥାଶକ୍ତି ସାହାଯ୍ୟ ସହଯୋଗରେ ଗଢିଉଠିଲା କନ୍ଦରପୁର କଲେଜ । ଏ ଅଞ୍ଚଳରେ ଝିଅପୁଅ ଅଧ୍ୟୟନର ସୁଯୋଗ ପାଇଲେ । କେଶବବାବୁ ଏ ସବୁ ଦେଖି ଉତ୍‌ଫୁଲ୍ଲ ହୋଇଉଠିଥିବେ ନିଶ୍ଚୟ । ଆଖିକୋଣରେ ଜକେଇ ଆସିଥିଲା ଅଶ୍ରୁ । ସେ ଅଶ୍ରୁ ଆଶ୍ୱାସର, ଆନନ୍ଦର, ପରିତୃପ୍ତିର ।

ଏହାପରେ କନ୍ଦରପୁରରେ ପ୍ରାୟତଃ ଦେଖାହୁଅନ୍ତି ସେ । ପ୍ରାୟତଃ ଗେରୁ ରଂଗର ପୋଷାକ ପିନ୍ଧିବାକୁ ସେତେବେଳେ ଭଲ ପାଉଥାଆନ୍ତି । ପ୍ରଶସ୍ତ ଲଲାଟ, ଉଦାସଶୂନ୍ୟ ଓଠରେ ସେଇ ମୁକ୍ତାନିନ୍ଦୀ ହସ, ମୁଖ କ୍ରମେ କ୍ରମେଦନ୍ତହୀନ ଅଥଚ ସୁପ୍ରସନ୍ନ ।

ବେଳେବେଳେ ସାଇକେଲରେ ଧାନ କୁଟିବାକୁ ଆସିଥିବେ ତ ଆଉ କେତେବେଳେ ପରିବାପତ୍ର ପାଇଁ । ଯଥାର୍ଥରେ ସେ ଥିଲେ ଏକ କର୍ମଯୋଗୀ । ତାଙ୍କ ବିଶ୍ୱରରେ କୌଣସି କର୍ମ ଛୋଟ ଅଥବା ବଡ଼ ନୁହେଁ । ନିଷ୍ଠାର ସହ ପାଳନ କଲେ ସବୁ କର୍ମ ଅମୃତ ଫଳ ଦେଇଥାଏ । ବ୍ୟକ୍ତିଗତ କାର୍ଯ୍ୟ ପ୍ରତି ସେ ବୀତସ୍ପୃହ ନ ଥିଲେ କେବେ । ମାତ୍ର ସମାଜ କାର୍ଯ୍ୟ ପ୍ରତି ତାଙ୍କର ଥିଲା ଅନେକ ଶ୍ରଦ୍ଧା । କନ୍ଦରପୁରରେ ଫାଣ୍ଡି ହେବ, ଡାକ୍ତରଖାନା ହେବ, ଲୋକମତ ସଂଗ୍ରହ କରି ଉଚ୍ଚ କର୍ତ୍ତୃପକ୍ଷଙ୍କ ନିକଟରେ ଯଥାବିଧି ଉପସ୍ଥାପନ କରିବାକୁ ଅଣ୍ଟାଭିଡ଼ି ବାହାରି ପଡୁଥିଲେ । ଅନେକ ଦିନପରେ ମୋ ଝିଅ କଥାରେ ଅଗ୍ରନକ ଚମକି ପଡ଼ିଲି ମୁଁ । ତାହା

ସମ୍ଭବତଃ ୨୦୦୦-୨୦୦୨ ମସିହା । ମୋ ଝିଅ ସେତେବେଳେକୁ ବି.ଏ. ଶ୍ରେଣୀର ଛାତ୍ରୀ ।

'ନନା ତମେ କେଶବନନ୍ଦଙ୍କୁ ଜାଣିଛ ?' ଝିଅର କଥାରେ ବିସ୍ମିତ ହୋଇ-ଉଠିଲି ମୁଁ ।

'କାହିଁକି ! କ'ଣ ହେଲା କି ?' ଅଧିକ କୌତୂହଳ ନ ହୋଇ କହିଲି ।

'ନନା ! କେଡ଼େ ସୁନ୍ଦର ଉପନ୍ୟାସ ସେ ଲେଖିଛନ୍ତି । ଏକ ରିକ୍ସାବାଲାର ଜୀବନଗାଥା, କି ସୁନ୍ଦର ହୋଇଛି ।'

ମୁଁ ପୁଲକିତ ହୋଇଗଲି । କାଳୋହ୍ୟୟଂ ନିରବଧି ବିପୁଳା ଚ ପୃଥ୍ୱୀ । ମୁଁ ଅନେକ ଦିନ ତଳେ ଏ ବହିଟି ପାଇଥିଲି ସ୍ୱୟଂ ଲେଖକଙ୍କ ପାଖରୁ । ଯାହାଠୁ ସେତେବେଳେ ଯେଉଁ ବହି ପାଇଛି, ପ୍ରାପ୍ତିସ୍ୱୀକାର କରିଛି । ଅଥଚ ଅକୃତଜ୍ଞ ପରି ସେ ବହିଟି କେବଳ ମୁଁ ପଢ଼ିଲି । ମାତ୍ର ମୋର ମତାମତ ପଦଟିଏ ବି ଲେଖକଙ୍କୁ ଜଣାଇ ପାରିଲି ନାହିଁ । କାହିଁକି ଆସିଥିଲେ ସେଦିନ । ସେ ବୟସ୍କ ଲେଖକ ଜଣକ ମୋ ପାଖକୁ ? କାହିଁକି ମୋ ହାତରେ ଧରାଇ ଦେଇଥିଲେ ଗୋରାଗ୍ରନ୍ଦ ବହି ! ସେ କ'ଣ ଅପେକ୍ଷା କରିଥିବେ ମୋ ମତାମତକୁ !

ତ୍ରୁଟି, ସଂକୋଚ ଏବଂ ପାପବୋଧର ମିଶ୍ରିତ ଆତ୍ମଗ୍ଲାନିରେ ଉବୁଟୁବୁ ହୋଇଯାଇଥିଲି ମୁଁ ସେଦିନ ଝିଅର କେଇପଦ କଥାରେ । ଏବେ ବି ସେ ମୋତେ 'ଗୋରାଗ୍ରନ୍ଦ'ର ଲେଖକଙ୍କ କଥା ପଗ୍ରରେ, ଆଉଥରେ ଦ୍ୱିତୀୟାର୍ଦ୍ଧ ବାହାରିଲା କି ନାହିଁ ପଗ୍ରରେ ।

ମୋ ପାଖରେ କିନ୍ତୁ ଉତ୍ତରରେ କିଛି ଉପାଦାନ ନଥାଏ । କେବଳ ଏକ ଅନୁପେକ୍ଷିତ ଉଦାସୀନତା ବ୍ୟତୀତ ଆଉ କିଛି ନଥାଏ । ଏଇ ମାଟିରେ ପ୍ରଥମ ପୃଥିବୀର ଆଲୋକ ଦେଖୁଥିବା ଗୋପାଳ ପ୍ରହରାଜ ! କିଏ ଏବେ ଆଉ ଏଠି ମନେ ରଖିଛି ତାଙ୍କୁ ? କ'ଣ ବା ହେଉଛି ତାଙ୍କ ପାଇଁ ! କେବଳ ତାଙ୍କ ଶ୍ରଦ୍ଧା ଦିବସରେ ସିଦ୍ଧେଶ୍ୱରପୁରର ବିଦ୍ୟାପୀଠରେ ତାଙ୍କର ସ୍ମୃତିଗ୍ରରଣ କରାଯାଉଛି । ତାଙ୍କ ଜନ୍ମସ୍ଥାନକୁ ଏକ ଦର୍ଶନୀୟ ସ୍ଥଳରେ ପରିଣତ କରିବା ପାଇଁ କ'ଣ କିଛି ଉଦ୍ୟମ ଅଛି ଜନସାଧାରଣଙ୍କର ନା ସ୍ଥାନୀୟ ରାଜନେତାଙ୍କର !

ଏ ମାଟିର ବଟକୃଷ୍ଣ ପ୍ରହାରାଜ ! କେତେ ସଫଳ ଔପନ୍ୟାସିକ । ସ୍ୱୟଂ ଗୋପାଳ ପ୍ରହରାଜ 'ସମାଲୋଚନ' ଶୀର୍ଷକରେ ଉତ୍କଳ ସାହିତ୍ୟର ୧୩୪୫ ସାଲ ଫାଲଗୁନ ସଂଖ୍ୟାରେ କେଡ଼େ ଚମତ୍କାର ପ୍ରବନ୍ଧଟିଏ ପ୍ରକାଶ ନ କରିଥିଲେ ସତେ ! ହେଲେ ପରବର୍ତ୍ତୀ ପର୍ଯ୍ୟାୟରେ ସେହି ବଟି ପ୍ରହାରାଜଙ୍କ ସ୍ମୃତିରକ୍ଷା ପାଇଁ ଏଠି କୌଣସି ଉଦ୍ୟମ ହୋଇପାରିଛି କି ନାହିଁ ସନ୍ଦେହ । ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର, କନ୍ଦରପୁର ମହାବିଦ୍ୟାଳୟ କ୍ରମେ କ୍ରମେ ପ୍ରାଚୀନ ହୋଇଯିବେ । କେଶବବାବୁଙ୍କ ସହକର୍ମୀମାନେ କ୍ରମେ ହଜିଯିବେ । ଉତ୍ତରପିଢ଼ି ଆଉ କେଶବବାବୁଙ୍କୁ ଚିହ୍ନି ପାରିବ ନାହିଁ । ଏହି ଝୁଲାମୁଣି ଧରି ଗାଆଁ ଗାଆଁ ବୁଲି ମୁଠି ଚାଉଳ ସଂଗ୍ରହ କରି ଅନୁଷ୍ଠାନ ଗଢୁଥିବା ତ୍ୟାଗଦୀପ୍ତ ଉଜ୍ଜ୍ୱଳ ଚେହେରାଟି ସ୍ମୃତିର ଆକାଶରୁ କ୍ରମେ କ୍ରମେ ଲିଭିଯିବ । 'ସ ଜାତୋ ଯେନ ଜାତେନ ଯାତି ବଂଶଃସମୁନ୍ନତିମ୍' ମଣିଷଟି ସବୁଦିନ ପାଇଁ ଦୃଷ୍ଟିର ଦିଗ୍‌ବଳୟରୁ ଲୁଚିଯିବ । ସେତେବେଳେ ଆଉ କ'ଣ କେବେ କାହା ଉଜ୍ଜ୍ୱଳ ତଥା ସୁଠାମ ଚେହେରାକୁ ଆଙ୍ଗୁଠି ଦେଖେଇ କହିହେବ— 'ଦେଖିଲେ ଦେଖିଲା ପରି .... ।

*ପୁରାତନ ଛାତ୍ର*
*ଅନ୍ୱେଷା, ଦଣ୍ଡୁଆସାପଡ଼ା, ଆଯତପୁର*
*କିଶୋର ନଗର, କଟକ-୭୫୪୧୩୧*



# ଦଇବୀ କଳା

✦ ଶ୍ରୀ ବିଧାନ ଚନ୍ଦ୍ର ଜେନା

*"ଧନ୍ୟ ତୁମ ମାତା ପିତା ହେ ନନ୍ଦବଳା*
*ବିଦ୍ୟା ମନ୍ଦିର ତୁମ ଜନ୍ମଗତ କଳା"*

କଳା ବିଦ୍ୟା, କଳାକାର, କଳାପ୍ରେମୀ, କଳାଧନ, କଳାରଂଗ, କଳାଅନ୍ଧାର ଇତ୍ୟାଦି, ଅନେକ ପ୍ରକାର କଳାସଂଯୁକ୍ତ ଶବ୍ଦ ଅଛି । ଏହାର ଅର୍ଥ ମଧ୍ୟ ଭିନ୍ନ ଭିନ୍ନ । କଳା ଶବ୍ଦଟି ଅନେକ କ୍ଷେତ୍ରରେ ଅଶୋଭନୀୟ ହୋଇଥିଲେ ମଧ୍ୟ ଈଶ୍ୱରଦତ୍ତ ଜନ୍ମଗତ ଅଦୃଶ୍ୟ ଦଇବୀ କଳାର ମାହାତ୍ମ୍ୟ ଅନେକ ଉଚ୍ଚକୋଟୀର ଅଟେ । ଧର୍ମ-ଶାସ୍ତ୍ରରେ ଲେଖାଅଛି:-

*"ଜଗନ୍ନାଥ ଯେ ଷୋଳକଳା, ତହୁଁ କଳା ଏ ନନ୍ଦବଳା" ।*

ଭଗବାନ୍ ଶ୍ରୀକୃଷ୍ଣ ଦ୍ୱାପରଯୁଗରେ ଷୋଳକଳା ମଧ୍ୟରୁ ଏକ କଳା ନେଇ ମର୍ତ୍ତ୍ୟମଣ୍ଡଳରେ ମାନବ ରୂପରେ ଜନ୍ମଗ୍ରହଣ କରିଥିଲେ । ସେହିପରି ✓କେଶବବାବୁ (କେଶବ ନନ୍ଦ)ଙ୍କର ବିଦ୍ୟାମନ୍ଦିର ନିର୍ମାଣ କରିବା ଏକ ଜନ୍ମଗତ କଳା ଥିଲା । ସେହି ଦୁର୍ଲଭ କଳାର ଅଧିକାରୀ ହୋଇଥିବାରୁ ସେ ସର୍ବଦା ନୂତନ ବିଦ୍ୟାମନ୍ଦିର ନିର୍ମାଣର ସ୍ୱପ୍ନ ଦେଖିଥିଲେ । ଗୋପାଳ ସ୍ମୃତି ବିଦ୍ୟାପୀଠ, ଚିନ୍ତାମଣି ବାଳିକା ବିଦ୍ୟାମନ୍ଦିର, କନ୍ଦରପୁର କଲେଜ ଭଳି ଶିକ୍ଷା ଅନୁଷ୍ଠାନ ପ୍ରତିଷ୍ଠା କରିବାରେ ତାଙ୍କର ମୁଖ୍ୟ ଭୂମିକା ହିଁ ଏହାର ଜ୍ୱଳନ୍ତ ପ୍ରମାଣ । ଗ୍ରାମାଞ୍ଚଳରେ ବାସ କରୁଥିବା ଗରିବ ଚାଷୀ, ଶ୍ରମଜୀବୀଙ୍କ ପିଲାମାନେ କିପରି ନିରକ୍ଷର କଳା ଅନ୍ଧକାର ମଧ୍ୟରୁ ମୁକ୍ତ ହୋଇ ଶିକ୍ଷାର ନୂତନ ଆଲୋକ ଦର୍ଶନ କରିବେ, ଏହା ହିଁ ତାଙ୍କ ଉତ୍ସର୍ଗୀକୃତ ଜୀବନର ଶ୍ରେଷ୍ଠବ୍ରତ ଥିଲା । ଗୋପାଳ ସ୍ମୃତି ବିଦ୍ୟାପୀଠ ୧୯୬୧-୬୨ ମସିହାରେ ଚତୁର୍ଥ ଶ୍ରେଣୀ ଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଚାଲୁଥାଏ । ଶିକ୍ଷାବିତ୍ ପୂଜ୍ୟ ଶ୍ରୀ ଶିବପ୍ରସାଦ ମିଶ୍ର ପ୍ରଧାନ ଶିକ୍ଷକ ଓ ପୂଜ୍ୟ ସ୍ୱର୍ଗୀୟ କେଶବ ନନ୍ଦ ସମ୍ପାଦକ ଥାଆନ୍ତି ।

ସେହି ସମୟରେ ସ୍କୁଲଟି ଗୋଟିଏ ଆଦର୍ଶ ସ୍କୁଲରେ ପରିଗଣିତ ହେଉଥାଏ । ମୁଁ ସେତିକିବେଳେ ଜାଣିବାକୁ ପାଇଥିଲି ଯେ ସ୍ୱୟଂ ସମ୍ପାଦକ କେଶବବାବୁ ହାଇସ୍କୁଲ ନିର୍ମାଣର ମୁଖ୍ୟ ବ୍ୟକ୍ତି ।

ଦିନ ଗଡ଼ିଗଲା— ତନ୍ମଧ୍ୟରୁ ସେ ପୁଣି ସ୍ୱପ୍ନ ଦେଖିଲେ ବାଳିକାଙ୍କ ସମୃଦ୍ଧି ଓ ଶିକ୍ଷା । ଗଢ଼ିଲେ ଚିନ୍ତାମଣି ବାଳିକା ବିଦ୍ୟାମନ୍ଦିର । ୧୯୭୮ ମସିହାରେ କେତେକ ଉଚ୍ଚାଭିଳାଷୀ ଯୁବକ ଚିନ୍ତାକଲେ କନ୍ଦରପୁର କଲେଜର ପ୍ରତିଷ୍ଠା । ବହୁ ସମାଜସେବୀ, ବୁଦ୍ଧିଜୀବୀ, ଶିକ୍ଷାବିତ୍, ବ୍ୟବସାୟୀ, କର୍ମଚାରୀ, କୃଷୀ, ଶ୍ରମିକମାନେ ଉତ୍ସାହୀ ଯୁବକମାନଙ୍କ ସହିତ ମିଶି କନ୍ଦରପୁର କଲେଜ ପ୍ରତିଷ୍ଠାର ଉଦ୍ୟମ କଲେ । ଠିକ୍ ସମୟରେ ସମସ୍ତେ ଚିନ୍ତାକଲେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାକାରୀ କରିତ୍କର୍ମା କେଶବବାବୁଙ୍କୁ ଏବଂ କେଶବବାବୁ ହିଁ ହେଲେ କଲେଜ ସ୍ଥାପନର ମୁଖ୍ୟ ପୁରୋଧା । କଥାରେ ଅଛି, "ଯାହା ବାପା ଚଢ଼ିଥାଏ ଘୋଡ଼ା, ତା' ପୁଅ ଚଢ଼େ ଥୋଡ଼ା ଥୋଡ଼ା" । ....... ସେହି ସମୟରେ କେଶବବାବୁଙ୍କ ସୁପୁତ୍ର ଅରୁଣଭାଇନା ଜଣେ ସ୍ୱଚ୍ଛ ସମାଜସେବୀ ଭାବେ ଅନେକ ସାମାଜିକ ସଂଗଠନରେ ମୁଖ୍ୟତଃ ଆଗୁଆ ଯୁବକ ଥାଆନ୍ତି । ବିଶେଷ କରି ତାଙ୍କରି ଆହ୍ୱାନରେ କଲେଜର ଉତ୍ପତ୍ତି । ମୁଁ ଅରୁଣ ଭାଇନାଙ୍କ ପ୍ରେରଣା ପାଇ କନ୍ଦରପୁର କଲେଜ ଗଠନରେ ସାମିଲ ହୋଇ କେଶବବାବୁଙ୍କ ପରଶ ପାଇଥିଲି । ପିତାମାତା ସୁକୃତରୁ ପୁତ୍ରମାନେ ମଧ୍ୟ ଉଚ୍ଚଶିକ୍ଷିତ ହୋଇପାରିଛନ୍ତି । ମୋର ଅନୁଭୂତି, ପ୍ରାୟ ଯେଉଁ ମହାନ ବ୍ୟକ୍ତିମାନେ ତାଙ୍କ ଅଞ୍ଚଳରେ ଶିକ୍ଷା ମନ୍ଦିର ନିର୍ମାଣ କରିଛନ୍ତି, ତାଙ୍କର ବଂଧଶରମାନେ ନିଶ୍ଚୟ ଉଚ୍ଚଶିକ୍ଷାର ଅଧିକାରୀ ହୋଇଛନ୍ତି । ସେହି କେଶବବାବୁଙ୍କ ପରଶରେ ମୁଁ ମଧ୍ୟ ଦିନେ ନୂତନ ଶିକ୍ଷା ଅନୁଷ୍ଠାନ ପ୍ରତିଷ୍ଠାର ସ୍ୱପ୍ନ ଦେଖିଥିଲି । ନୂତନତ୍ୱର ସ୍ୱପ୍ନ ଦେଖୁଥିବା ଅନେକ କଳାପ୍ରେମୀ ପୂଜ୍ୟ ମହାନ୍ ବ୍ୟକ୍ତିଙ୍କ ଶରୀର ବିଳୟ ହୋଇଗଲାଣି— କିନ୍ତୁ ନାମ ଅମର ରହିଛି ଏବଂ ରହିବ । ହେ ସ୍ରଷ୍ଟା କଳାପ୍ରେମୀ କେଶବବାବୁ—

*"ଏ ସବୁ ବିଦ୍ୟାମନ୍ଦିର ଥିବ ଯେତେ କାଳ,*
*ମନେ ରହିଥିବ ତୁମ କଳାକୃତି ଫଳ ।"*

**

*ପୁରାତନ ଛାତ୍ର, ସରସୁଦା*

# କେଶବବାବୁଙ୍କ ବିଷୟରେ ପଦେ

✦ ଶ୍ରୀ ସୁବୋଧ ଚନ୍ଦ୍ର ବ୍ରହ୍ମା

ଏ ମର୍ତ୍ତ୍ୟମଣ୍ଡଳରେ ଜନ୍ମ ହେଲେ ମରଣ ସୁନିଶ୍ଚିତ । ତାହାକୁ କେହି ଅଟକାଇ ପାରିବେ ନାହିଁ । ସଂସାରକୁ ଆସି ଆମେ ଏପରି ମହତ୍ କାର୍ଯ୍ୟ କରିଯିବା. ଯାହାକୁ ଆମ ମଲା ପରେ ଲୋକମାନେ ସବୁବେଳେ ମନେ ରଖିପାରିବେ । ସେହିପରି ଜଣେ ଲୋକ ଆମ ଗହଣରେ ଆଜି ନାହାନ୍ତି ସତ; ମାତ୍ର ତାଙ୍କ କାର୍ଯ୍ୟଦକ୍ଷତାରୁ ଆମେ ତାଙ୍କୁ ସବୁଦିନ ପାଇଁ ମନେ ରଖିପାରିବା ।

ସେହି ଦକ୍ଷ ବ୍ୟକ୍ତି ଜଣକ ହେଉଛନ୍ତି ସ୍ୱର୍ଗତ କେଶବଚନ୍ଦ୍ର ନନ୍ଦ । ତାଙ୍କର ଜନ୍ମ କଟକ ଜିଲାର ସିଦ୍ଧେଶ୍ୱରପୁର ଶାସନରେ । ସେ ଏକ ସଂଭ୍ରାନ୍ତ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜୀବନଶୈଳୀ ଅତି ନିରାଡ଼ମ୍ବର ଥିଲା । ସେ ଭାରତୀୟ ଜୀବନବୀମାର ଜଣେ ଡେଭେଲପ୍‌ମେଣ୍ଟ ଅଫିସର ଭାବେ କାର୍ଯ୍ୟ କରି ଅବସର ଗ୍ରହଣ କରଥିଲେ ।

ସ୍ୱର୍ଗତ କେଶବବାବୁ ତାଙ୍କର ଜୀବନକାଳ ମଧ୍ୟରେ ତିନିଗୋଟି ମଣିଷ ତିଆରି କାରଖାନା ପ୍ରତିଷ୍ଠା କରିଯାଇଛନ୍ତି । ପ୍ରଥମରେ ସିଦ୍ଧେଶ୍ୱରପୁରରେ ଏକ ଉଚ୍ଚମାଧ୍ୟମିକ ବିଦ୍ୟାଳୟ ପ୍ରତିଷ୍ଠା କରି ତାହାରି ନାମ ଗୋପାଳ ସ୍ମୃତି ବିଦ୍ୟାପୀଠ ନାମରେ ପରିଚିତ କରିଦେଇ ଯାଇଛନ୍ତି । ସେତେବେଳ ସମୟରେ ପ୍ରାୟ ୧୦/ ୧୨ କିଲୋମିଟର ପରିସର ମଧ୍ୟରେ କୌଣସି ଉଚ୍ଚମାଧ୍ୟମିକ ବିଦ୍ୟାଳୟ ସ୍ଥାପିତ ହୋଇନଥିଲା । ସେହି ବଦ୍ୟାଳୟରେ ମଧ୍ୟ ଗୋଟିଏ ହଷ୍ଟେଲର ସୁବିଧା ରହିଥିଲା । ଯାହାଦ୍ୱାରା ଦୂରଦୂରାନ୍ତରୁ ବହୁ ଛାତ୍ର ଉକ୍ତ ହଷ୍ଟେଲରେ ରହି ବିଦ୍ୟାଶିକ୍ଷା କରିପାରୁଥିଲେ । ସେତେବେଳେ କେବଳ କଟକ ସହରରେ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ଥିଲା । ଯଦ୍ଦ୍ୱାରା ଗ୍ରାମବାସୀ ଗରିବ ଓ ମଧ୍ୟବିତ୍ତ ଶ୍ରେଣୀର ଲୋକମାନେ

ତାଙ୍କର ପିଲାମାନଙ୍କୁ ସେଠାକୁ ପଠାଇ ପାରୁ ନଥିଲେ । ସିଦ୍ଧେଶ୍ୱରପୁରରେ ଏକ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ପ୍ରତିଷ୍ଠିତ ହେବାରୁ ଗ୍ରାମାଞ୍ଚଳ ଲୋକେ ତାଙ୍କ ପିଲାମାନଙ୍କୁ ସେହି ବିଦ୍ୟାଳୟରେ ପାଠ ପଢ଼ାଇପାରୁ ଥିଲେ । ଉକ୍ତ ବିଦ୍ୟାଳୟର ଅନ୍ତେବାସୀ ଭାବେ ରହି ବହୁ ଛାତ୍ରଛାତ୍ରୀ ଦେଶବିଦେଶରେ ଡାକ୍ତର, ଇଞ୍ଜିନିୟର ଓ ପ୍ରଶାସନରେ ବଡ଼ ବଡ଼ ପଦବୀମାନ ଅଳଙ୍କୃତ କରି ସୁନାମ ଅର୍ଜନ କରିଛନ୍ତି ।

ଦ୍ୱିତୀୟରେ ସ୍ୱର୍ଗତ କେଶବବାବୁ ନାରୀଶିକ୍ଷାର ପ୍ରସାର ନିମନ୍ତେ ସେହି କଟକ ଜିଲ୍ଲାର ଅଥଙ୍ଗା ଗ୍ରାମରେ ଏକ ବାଳିକା ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ସେ ବିଦ୍ୟାଳୟଟି ବର୍ତ୍ତମାନ ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର ନାମରେ ପରିଚିତ । ଉକ୍ତ ବାଳିକା ବିଦ୍ୟାଳୟରେ ମଧ୍ୟ ଏକ ହଷ୍ଟେଲର ସୁବିଧା ରହିଥିଲା । ଉକ୍ତ ବିଦ୍ୟାଳୟରୁ ବହୁ ବାଳିକା କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ଭିନ୍ନ ଭିନ୍ନ ସ୍ଥାନରେ ବଡ଼ ବଡ଼ ପଦବୀ ଅଳଙ୍କୃତ କରି ରହିଆସିଛନ୍ତି ।

ତୃତୀୟରେ ସ୍ୱର୍ଗତ କେଶବବାବୁଙ୍କ ମନରେ ବହୁ ଉଚ୍ଚ ଆଶା ଉଙ୍କି ମାରିବାରୁ ଏକ ଡିଗ୍ରୀ କଲେଜ ବା ମହାବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ମନ ବଳାଇଥିଲେ । ସେତେବେଳେ ବହୁ ଲୋକ କଲେଜ ପ୍ରତିଷ୍ଠା କରିବାକୁ ଅସହଯୋଗ ଆରମ୍ଭ କରିଥିଲେ ମଧ୍ୟ ସ୍ୱର୍ଗତ କେଶବବାବୁ ସେ ସବୁକୁ ଭୁଲିଯାଇ ଅଦମ୍ୟ ଉଦ୍ୟମ ଫଳରେ ଏକ ଡିଗ୍ରୀ କଲେଜ (ମହାବିଦ୍ୟାଳୟ) ପ୍ରତିଷ୍ଠା କରିପାରିଥିଲେ । ସେହି ଡିଗ୍ରୀ କଲେଜ କନ୍ଦରପୁର ମହାବିଦ୍ୟାଳୟ ନାମରେ ମାନ୍ୟତା ପାଇ ବର୍ତ୍ତମାନ ତା'ର ନିଜସ୍ୱ ସ୍ଥିତିରେ ରହିଆସିଛି ।

ସ୍ୱର୍ଗତ କେଶବବାବୁଙ୍କର ନିଷ୍ଠାପର କାର୍ଯ୍ୟଦକ୍ଷତା ଓ ସମୟାନୁବର୍ତ୍ତିତା ବିଷୟରେ ମୋର ଦିନକର ଘଟଣା ଆଜି ମନେ ପଡ଼ିଯାଉଛି । ସ୍ୱର୍ଗତ କେଶବବାବୁ ଯେତେବେଳେ ଏକ ମହାବିଦ୍ୟାଳୟ କନ୍ଦରପୁର ଅଞ୍ଚଳରେ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କଲେ, ସେତେବେଳେ ସେ ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇଥିଲେ । ବହୁ ଲୋକ ଉକ୍ତ ମହାବିଦ୍ୟାଳୟଟି ପ୍ରତିଷ୍ଠା କରିବାରେ ଆବଶ୍ୟକ ଉତ୍ସାହ ଦେଖାଇ ନ ଥିଲେ । କିନ୍ତୁ କେଶବବାବୁଙ୍କର ଅକୁଣ୍ଠ ଚେଷ୍ଟା ଫଳରେ ଆଜି କନ୍ଦରପୁର ଅଞ୍ଚଳରେ ଏକ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇପାରିଛି । ସ୍ୱର୍ଗତ କେଶବବାବୁଙ୍କର ପ୍ରତିଷ୍ଠିତ ଗୋପାଳ ସ୍ମୃତି ବିଦ୍ୟାପୀଠରେ ମୁଁ ଜଣେ ପୁରାତନ ଛାତ୍ର ଥିଲି ଏବଂ

ତତ୍ ସଙ୍ଗେ ସଙ୍ଗେ ମୋର ସହଧର୍ମିଣୀ ତାଙ୍କ ପ୍ରତିଷ୍ଠିତ ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିରରେ ପ୍ରଥମ ଶିକ୍ଷୟିତ୍ରୀ ଭାବରେ ନିଯୁକ୍ତି ପାଇଥିଲେ ଓ ସେ ମଧ୍ୟ ଉକ୍ତ ଗୋପାଳ ସ୍ମୃତି ବିଦ୍ୟାପୀଠର ପୁରାତନ ଛାତ୍ରୀ ଥିଲେ । ତେଣୁ ସେହି ଦୃଷ୍ଟିରୁ ତାଙ୍କ ସହିତ ମୋର ତଥା ମୋ ପରିବାର ଏବଂ ମୋ ଶ୍ୱଶୁର ଘର ପରିବାରଙ୍କ ସହିତ ପ୍ରଗାଢ଼ ସଂପର୍କ ଥିଲା । ଶ୍ୱଶୁରଘର ହିସାବରେ ସ୍ୱର୍ଗତ କେଶବବାବୁ ମୋର ଅଜାସୁର ଭାବରେ ପରିଚିତ ।

ଦିନକର ଘଟଣା, ମୁଁ ମୋ ଶ୍ୱଶୁରଘର ସିଦ୍ଧେଶ୍ୱରପୁର ଆସିଥାଏ । ହଠାତ୍ ତାଙ୍କର ମୋର ସାକ୍ଷାତ ହୁଏ । ବହୁ କଥାବାର୍ତ୍ତା ପରେ ଏକ କଲେଜ ବା ମହାବିଦ୍ୟାଳୟ ପ୍ରତିଷ୍ଠା କରିବା ତାଙ୍କ ମନରେ ଆଶା ବାନ୍ଧିଥାଏ । ସେହି ମହାବିଦ୍ୟାଳୟ ପ୍ରତିଷ୍ଠା ବିଷୟରେ ସେ ମୋ ସାଙ୍ଗେ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ମହାବିଦ୍ୟାଳୟ ପାଇଁ କିଛି ଆର୍ଥିକ ସାହାଯ୍ୟ ଦେବା ଏବଂ କରାଇ ଦେବା ପାଇଁ ମୋତେ କହନ୍ତି । ସେତେବେଳେ ମୁଁ ରାଜଧାନୀ ଭୁବନେଶ୍ୱରରେ ଏକ ସରକାରୀ ଦପ୍ତରରେ ସ୍ୱଳ୍ପ ଦରମାରେ ନିଯୁକ୍ତି ପାଇଥାଏ । ସେଥିପାଇଁ ସେ ମୋ ଉପରେ ଭରସା ରଖିଥା'ନ୍ତି । ମୁଁ ତାଙ୍କୁ କିଛି ସାହାଯ୍ୟ ଦେବା ଏବଂ କାର୍ଯ୍ୟାଳୟରୁ କିଛି ସାହାଯ୍ୟ ଦେବାପାଇଁ ପ୍ରତିଶ୍ରୁତି ଦେଲି । ୨/୩ ମାସ ପରେ ଦିନେ ହଠାତ୍ କେଶବବାବୁ ମୋର ଭୁବନେଶ୍ୱର ବାସଭବନରେ ସକାଳ ଛ'ଟା ସମୟରେ ପହଞ୍ଚି କହିଲେ, 'ମହାବିଦ୍ୟାଳୟ ପାଇଁ ଦେଇଥିବା ଶ୍ରଦ୍ଧାର ପ୍ରତିଶ୍ରୁତି ଦେଇଦିଅ ।' ମୁଁ ସେତେବେଳେ ଦାନ୍ତ ଘଷୁଥାଏ । ହଠାତ୍ ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ ପଚ୍ଚାରେ-- ଆପଣ ଏତେ ସକାଳୁ କାହିଁକି ଆସିଲେ ? ମୁଁ ନିଜେ ଯାଇ ଆପଣଙ୍କୁ ସିଦ୍ଧେଶ୍ୱରପୁରରେ ଦେଇପାରିଥା'ନ୍ତି । ସେ କହିଲେ-- ମୁଁ ତୁମକୁ କଥା ଦେଇଛି ଓ ଏହା ମୋର କର୍ତ୍ତବ୍ୟ -- ତୁମ୍ଭ ପାଖରେ ପହଞ୍ଚି ମନେ ପକାଇଦେବା ଓ ଶ୍ରଦ୍ଧା ସଂଗ୍ରହ କରିବା । ଆହୁରି ମଧ୍ୟ ମୁଁ କେବଳ ତୁମ ପାଖକୁ ଆସିନାହିଁ, ଆହୁରି କେତେ ପୁରାତନ ଛାତ୍ର ଅଛନ୍ତି, ତାଙ୍କଠାରୁ ଶ୍ରଦ୍ଧା ସଂଗ୍ରହ କରିବାକୁ ଆସିଛି । ସକାଳୁ ତୁମମାନଙ୍କ ପାଖରେ ପହଞ୍ଚିଲେ ତୁମମାନଙ୍କ ସହିତ ଦେଖା ହେବ ଏବଂ ତତ୍ ସହିତ ବାଣୀବିହାର ଯାଇ ମହାବିଦ୍ୟାଳୟ ପ୍ରତିଷ୍ଠା ବିଷୟରେ କର୍ତ୍ତୃପକ୍ଷଙ୍କ ସଙ୍ଗରେ ଆଲୋଚନା ହେବ ଇତ୍ୟାଦି । ତେଣୁ ତାଙ୍କର ସେହି କର୍ତ୍ତବ୍ୟପରାୟଣତା ଓ ସମୟାନୁବର୍ତ୍ତିତା ଦେଖି ମୁଁ ବଡ଼ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ତାଙ୍କର ସେହି

କାର୍ଯ୍ୟଦକ୍ଷତା, କର୍ତ୍ତବ୍ୟପରାୟଣତା ଓ ସମୟାନୁବର୍ତ୍ତିତା ଗୁଣ ମୁଁ କେତେକାଂଶରେ ତାଙ୍କଠାରୁ ଶିକ୍ଷାକରି ନିଜକୁ ନିଜେ ସେହିପରି ହେବାପାଇଁ ପ୍ରେରଣା ପାଇଥିଲି ।

ଶେଷରେ ମୁଁ ଏତିକି କହିବାକୁ ଯାଏ ଯେ, ସ୍ୱର୍ଗତ କେଶବବାବୁ ଜଣେ ବଡ଼ ଅମାୟିକ, କର୍ତ୍ତବ୍ୟପରାୟଣ, କାର୍ଯ୍ୟଦକ୍ଷ ଓ ନିଜ କାର୍ଯ୍ୟରେ ଅଟଳବିଶ୍ୱାସୀ ଲୋକ ଥିଲେ । ଯଦ୍ଦ୍ୱାରା ସେ ତିନିଗୋଟି ପ୍ରତିଷ୍ଠାନରେ ସଂପାଦକ ରହି ସୁଗ୍ୱରୁରୂପେ ନିଜର କାର୍ଯ୍ୟଦକ୍ଷତା ପ୍ରଦର୍ଶିତ କରିପାରିଥିଲେ । କେଶବବାବୁଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା ମଣିଷ ତିଆରି କାରଖାନା ଆମକୁ ସବୁବେଳେ ମନେପକାଉଥିବ । ସେ ପରପାରିକୁ ଗ୍ୱଲିଗଲେ ମଧ୍ୟ ଆମ ପାଖରେ ସବୁବେଳେ ରହିଥିବା ପରି ମନେ ହେଉଥିବେ । ତାଙ୍କର କୀର୍ତ୍ତିରାଜିରୁ ଆଜି ଆମେ ଅନ୍ଧାରରୁ ଆଲୋକକୁ ଆସିପାରିଛୁ । ତାଙ୍କ ଦୂରଦୃଷ୍ଟି ବଳରେ ଆମେ ଆଜି ଶିକ୍ଷିତ ହୋଇପାରିଛୁ ଓ ଆମ ଅଞ୍ଚଳରେ ସେ ଜଣେ ଦିଗ୍‌ଦ୍ରଷ୍ଟା ଥିଲେ. ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ ଯଥାର୍ଥରେ କୁହାଯାଇଛି —

*'କେହି ରହିନାହିଁ, ରହିବେ ନାହିଁଟି*
*ଭବରଂଗ ଭୂମି ତଳେ,*
*ସର୍ବେ ନିଜ ନିଜ ଅଭିନୟ ସାରି*
*ବାହୁଡ଼ିବେ କାଳବଳେ ।'*

ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ଚରଣ ତଳେ ବିନମ୍ର ପ୍ରାର୍ଥନା, ତାଙ୍କର ଆତ୍ମାର ସଦ୍‌ଗତି ହେଉ । ସେ ସବୁଦିନ ପାଇଁ ଅମର ରୁହନ୍ତୁ । ଜୟ ଜଗନ୍ନାଥ !

*ମଧ୍ୟଶାସନ*



# ଅବିସ୍ମରଣୀୟ କେଶବବାବୁ

✦ ଶ୍ରୀ ଈଶ୍ୱର ପତି

*"ମଣିଷ ମରିବ ଦିନେ ଯଦି ଜନମିବ ସଂସାରେ*
*ଅମର ମଣିଷ ସେହୁ ଯା' ଲାଗି ଗୋଡ଼ିମାଟି ଝୁରେ ।"*

କେଶବ ନାମଧାରୀ ବହୁ ବ୍ୟକ୍ତି ଥିବେ ଓ ଅଛନ୍ତି । କିନ୍ତୁ କେଶବବାବୁ (କେଶବ ନନ୍ଦ) କହିଲେ, ସେ ସେଇ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ପ୍ରଣେତା ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଜନ୍ମ ମାଟିରେ ଜନ୍ମ ଗ୍ରହଣ କରିଥିବା ସ୍ୱନାମଧନ୍ୟ, ଖ୍ୟାତିସମ୍ପନ୍ନ ବ୍ୟକ୍ତିବିଶେଷ ୰କେଶବ ଚନ୍ଦ୍ର ନନ୍ଦ, ସିଦ୍ଧେଶ୍ୱରପୁରକୁ ହିଁ ଲୋକେ ପ୍ରଥମେ ଖିଆଲରେ ଆଣୁଥିଲେ । ଯେପରିକି ପ୍ରଫେସର ପତି କହିଲେ ଉତ୍କଳମଣି ଗୋପବନ୍ଧୁଙ୍କର ଜାମାତା, ତତ୍କାଳୀନ ଖ୍ୟାତନାମା ପ୍ରଫେସର ରତ୍ନାକର ପତି(ଦର୍ଶନଶାସ୍ତ୍ର) ତଅଁରପା, ବିରିବାଟୀଙ୍କୁ ଜାଣୁଥିଲେ ।

କେଶବବାବୁଙ୍କ ନାମ ଏ ଖଣ୍ଡମଣ୍ଡଳରେ ଡାକ ଥିଲା ଓ ତାଙ୍କୁ କିଏ ଜାଣୁ ନଥିଲେ କି ଚିହ୍ନୁ ନଥିଲେ ଏମିତି ନାହିଁ । ସେ ଜଣେ ନୀତିନିଷ୍ଠ, ନିଃସ୍ୱାର୍ଥପର, ଧର୍ମକର୍ମ-ପରାୟଣ ଲୋକ ଥିଲେ ।

କେଶବବାବୁ ତତ୍କାଳୀନ ଜମିଦାର ବଂଶଜ ଓ ରତ୍ନାକରବାବୁ ଜଣେ ବିଦ୍ୱାନ ପଣ୍ଡିତ ଥିଲେ । ସେମାନେ ସ୍ୱ ସ୍ୱ ଗାରିମାରେ ଯଦିଓ ଗାରିମାମୟ ଥିଲେ, ତଥାପି ଦିନକ ପାଇଁ କେବେହେଲେ ତାଙ୍କ ମଧ୍ୟରେ ମତ ପାର୍ଥକ୍ୟ ଦେଖାଯାଇ ନ ଥିଲା । ରତ୍ନାକରବାବୁ ଅଗ୍ରଜ ହେଲେ କେଶବବାବୁ ଅନୁଜ ଆଜ୍ଞାବହ । ଏ ପ୍ରକାରେ ଦୁଇ ମହାରଥୀ । ଦୁହିଁଙ୍କର ମୂଳ ଲକ୍ଷ୍ୟ ଥିଲା ଶିକ୍ଷାନୁଷ୍ଠାନର ଅଭାବ ପରିପୂରଣ । ସେତେବେଳେ ମାଇନର ସ୍କୁଲ୍ କାଁ ଭାଁ କେଉଁଠି କେମିତି ଥିଲା । ରାଣୀହାଟ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଓ ରେଭେନ୍ସା ମହାବିଦ୍ୟାଳୟ ଏ ଅଞ୍ଚଳ ପାଇଁ ଗୋଟିଏ

ମାତ୍ର ହାଇସ୍କୁଲ୍ ଓ ଗୋଟିଏ କଲେଜ ଥିଲା । କିନ୍ତୁ ସେମାନଙ୍କ ପ୍ରଚେଷ୍ଟାରେ ପ୍ରଥମେ ସିଦ୍ଧେଶ୍ୱରପୁର ଠାରେ ଓ ପରେ ବିରିବାଟୀ ଠାରେ ଏହିପରି ଦୁଇଟି ହାଇସ୍କୁଲ୍, ପ୍ରତିଷ୍ଠା ହୋଇଥିଲା । ଏହା ସେମାନଙ୍କର ଅମର କୃତି ଓ କାର୍ତ୍ତି । ଏହି ସ୍କୁଲ୍‌ର ସେତେବେଳେର କୃତୀଛାତ୍ର ହେଲେ ମୂରଲୀଧର ମହାପାତ୍ର, ଫକୀରପଡ଼ା(Naval Doctor); ବିଷ୍ଣୁ ରାଉତ, (ମଙ୍ଗୁଳି ରାଉତ) (HOD, Political science, BJB College, Bhubaneswar), ପ୍ରହ୍ଲାଦ ସ୍ୱାଇଁ,(Rly. yard manager) ବନ୍ଧମୁଣ୍ଡା ରାଉରକେଲା, ବେଣୁଧର ମିଶ୍ର (Prof. R. College), ବିନବାବୁ (CI of Schools), କାହ୍ନୁ ପ୍ରସାଦ ନନ୍ଦ (Manager, Brajaraj Nagar Paper Mill) ଏହିପରି ଅନେକ । ବର୍ତ୍ତମାନ ପରିଣତ ବୟସରେ ସେ ସବୁ ସ୍ମୃତିପଟକୁ ପୂରାପୂରି ଭାବେ ଆସୁନାହିଁ । ଯଦି ଏହି ସମୟରେ ସିଦ୍ଧେଶ୍ୱରପୁରଠାରେ ଗୋପାଳ ସ୍ମୃତି ବିଦ୍ୟାପୀଠ ଶିକ୍ଷାନୁଷ୍ଠାନ ✓କେଶବ ବାବୁଙ୍କ ପ୍ରଚେଷ୍ଟାରେ ପ୍ରତିଷ୍ଠାଲାଭ ନ କରିଥା'ନ୍ତା, ତାହାହେଲେ ଉକ୍ତ ଅଞ୍ଚଳର ଅନେକ ମେଧାବୀ ଛାତ୍ରଛାତ୍ରୀଙ୍କର ପୋଥିରେ ଡୋରୀ ବନ୍ଧା ହୋଇଥା'ନ୍ତା । ଏହି ✓କେଶବବାବୁଙ୍କର ଏ ଅଞ୍ଚଳ ପାଇଁ ଗୋଟିଏ ବଡ଼ ଅବଦାନ । ସେହିପରି ଶିକ୍ଷକମାନଙ୍କ ମଧ୍ୟରେ ✓ଭବାନୀ ଶଙ୍କର ପ୍ରହରାଜ, ବଟସାର, ନଟସାର, ଅନାଥବନ୍ଧୁ ପ୍ରଧାନ, ନିଶାକର ସାର ଇତ୍ୟାଦି । ସେତେବେଳେ ଶିକ୍ଷକମାନେ ଯେ କେବଳ ବିଦ୍ୟାଦାନ କରି (ଘଣ୍ଟା ବାଜିଲେ ପିରିୟଡ଼ ଶେଷ) ତାଙ୍କର କର୍ତ୍ତବ୍ୟ ସମ୍ପାଦନ କରୁଥିଲେ ଏପରି ନୁହେଁ, ସେମାନେ ଉକ୍ତ ସ୍କୁଲର ଗଠନମୂଳକ କାର୍ଯ୍ୟରେ ପୂର୍ଣ୍ଣ ସହଯୋଗ କରୁଥିଲେ । ସେତେବେଳେ ସେମାନେ ଉଚ୍ଚ ପଦପଦବୀର ଲାଳସାକୁ ତୁଚ୍ଛ କରି ନିଜର ଆଞ୍ଚଳିକ ଶିକ୍ଷାନୁଷ୍ଠାନ ପ୍ରତି ମାୟାମମତା ଓ ଆଗ୍ରହ ପୋଷଣ କରି ପୂରାପୂରି ଭାବରେ ଶିକ୍ଷକତା ବୃତ୍ତିକୁ ଶେଷ ପର୍ଯ୍ୟନ୍ତ ଆଦରି ନେଇଥିଲେ । ନିଜ ଜୀବନ-ଜଞ୍ଜାଳକୁ ଓ ପରିବାରଙ୍କୁ ପାଶୋରି ପକାଇଥିଲେ ।

ପରେ ପରେ ଅଥଙ୍ଗାଠାରେ ଗୋଟିଏ ବାଳିକା ବିଦ୍ୟାଳୟ, ଦେଧାରୀ ଖେଳପଡ଼ିଆ ଠାରେ କନ୍ଦରପୁର କଲେଜ ନିର୍ମାଣ ଆଉ ଏକ ବିଶେଷ କୃତି ଓ ସ୍ମୃତି । ସେତେବେଳେ ବାଳିକା ବିଦ୍ୟାଳୟ ଖୁବ୍ କମ୍ ଥିଲା । ✓କେଶବବାବୁ ଅଥଙ୍ଗା ଠାରେ ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର ନାମରେ ଗୋଟିଏ ବାଳିକା ବିଦ୍ୟାଳୟର ମୂଳଦୁଆ ପ୍ରଥମେ ପକାଇଥିଲେ ଓ ପରେ ତାହାକୁ ଉନ୍ନତ କରାଇଥିଲେ ।

ଉକ୍ତ ବାଳିକା ବିଦ୍ୟାଳୟର ପ୍ରଥମ ଶିକ୍ଷୟିତ୍ରୀ ସିଦ୍ଧେଶ୍ୱରପୁର ନିବାସୀ ଉପେନ୍ଦ୍ରନାଥ ଆଗ୍ରର୍ଯ୍ୟଙ୍କ କନ୍ୟା ଶ୍ରୀମତୀ ନଳିନୀ ପ୍ରଭା ଆଗ୍ରର୍ଯ୍ୟଙ୍କୁ ନିଯୁକ୍ତି ଦେଇ ସ୍କୁଲ କାର୍ଯ୍ୟ ପରିଗ୍ଳନା କରାଇଥିଲେ । ସେତେବେଳେ ଝିଅମାନଙ୍କ ଭିତରେ ବିଶେଷକରି ମଫସଲ ଅଞ୍ଚଳରେ ଶିକ୍ଷିତା ତଥା ଶିକ୍ଷକତା ଯୋଗ୍ୟତା ହାସଲ କରିଥିବା ଝିଅ ଖୁବ୍ କମ୍ ଥିଲେ । ଆଜିକାଲିକାର ଝିଅ ପରି ସେତେବେଳେ ଝିଅମାନେ ମୁକ୍ତ ରାଜପଥର ସ୍ୱଚ୍ଛନ୍ଦ ବିହାରିଣୀ ନଥିଲେ । ଝିଅମାନେ ବିଶେଷକରି ବୋହୂମାନେ ଘରୁ ଗୋଡ଼ କାଢ଼ିବା କଷ୍ଟକର ଥିଲା । ଓଢ଼ଣୀ ପ୍ରଥା ଖୁବ୍ ଜୋରଦାର ଥିଲା । ନଳିନୀପ୍ରଭା ଶିକ୍ଷୟିତ୍ରୀଙ୍କର ବିବାହ ହୋଇଗଲା ପରେ କାଳେ ଶ୍ୱଶୁରରାଳୟ ପକ୍ଷରୁ ଉକ୍ତ ଶିକ୍ଷୟିତ୍ରୀଙ୍କୁ ଉକ୍ତ ବୃତ୍ତିରୁ ରହିତ କରିବେ, ସେଥିନେଇ କେଶବବାବୁ ଚିନ୍ତିତ ହୋଇପଡ଼ିଥିଲେ । ସ୍କୁଲ କମିଟିର ସଭ୍ୟ ଓ ଅନ୍ୟ କେତେକ ଆଞ୍ଚଳିକ ଭଦ୍ରବ୍ୟକ୍ତିଙ୍କୁ ନେଇ ତାଙ୍କ ଶ୍ୱଶୁରାଳୟ ବରଡ଼ା (ମଧ୍ୟଶାସନ)ରେ ପହଞ୍ଚି ତାଙ୍କ ଶ୍ୱଶୁର ଘନଶ୍ୟାମ ବ୍ରହ୍ମା ଓ ତାଙ୍କ ସ୍ୱାମୀ ସୁବୋଧ କୁମାର ବ୍ରହ୍ମାଙ୍କୁ ବୁଝାଇ ସୁଝାଇ ତାଙ୍କ ମନରେ ପରିବର୍ତ୍ତନ ଆଣି ତାଙ୍କଠାରୁ ସ୍ୱୀକୃତି ଆଣିଥିଲେ ଓ ନଳିନୀପ୍ରଭାଙ୍କୁ ଶିକ୍ଷୟିତ୍ରୀ ଭାବେ ଉକ୍ତ ସ୍କୁଲରେ ପୁନଃ ଅବସ୍ଥାପିତ କରାଇ ରୋଜଗାରକ୍ଷମ କରାଇଥିଲେ । ଯାହାଦ୍ୱାରା କି ଶିକ୍ଷୟିତ୍ରୀ ଅଧିକ ଆର୍ଥିକ ସ୍ୱଚ୍ଛଳତା ଲାଭ କରିଥିଲେ ଓ ତାଙ୍କର ଭବିଷ୍ୟତ ସାଂସାରିକ ଜୀବନ ଓ କାର୍ଯ୍ୟ ଉଜ୍ଜ୍ୱଳମୟ ହୋଇଥିଲା । ଏବେ ମଧ୍ୟ ସେ ଓ ତାଙ୍କ ପରିବାର କେତେବେଳେ କଥା ପଡ଼ିଲେ ସେ କଥାକୁ ଅବତାରଣା କରନ୍ତି ଓ ବାବୁଙ୍କର ଭୂୟସୀ ପ୍ରଶଂସା ଓ ଗୁଣଗାନ କରନ୍ତି ।

କେଶବବାବୁ ଗୋଟିଏ ସ୍ୱତନ୍ତ୍ର କିସମର କର୍ମଯୋଗୀ ଥିଲେ । ନିଜ ପରିବାର, ନିଜ ଜଞ୍ଜାଳ, ନିଜ ଜୀବନକୁ ସମୂହ ସ୍ୱାର୍ଥପାଇଁ ବଳି ଦେଇଥିଲେ । ଆଞ୍ଚଳିକ ମମତା ଓ ପ୍ରୀତି ତାଙ୍କୁ ଏପରି ଉଦ୍‌ବୁଦ୍ଧ କରିଥିଲା ଯେ ସେ ନିଜ ଜୀବନକୁ ଉକ୍ତ ଅଞ୍ଚଳ ପାଇଁ ତିଳ ତିଳ କରି ଉତ୍ସର୍ଗ କରିଯାଇଛନ୍ତି । ତାଙ୍କ ପୋଷାକ ପରିଚ୍ଛଦ ସାଦାସିଧା । ଗୋଟିଏ ଖଦଡ଼ ଧୋତି ଓ ହାଫାନୀ, ଗାନ୍ଧୀ ଟୋପି କେତେବେଳେ କେତେବେଳେ ବ୍ୟବହାର କରୁଥିଲେ । ଗାନ୍ଧୀ ଝୁଲା ବ୍ୟାଗ୍, ଖଣ୍ଡେ ପୁରୁଣା ସାଇକେଲ ଧରି ଗାଁ କୁ ଗାଁ ବୁଲି ସ୍କୁଲର ଆବଶ୍ୟକୀୟ ଅସୁବିଧା ଜଣାଉଥିଲେ ଓ କେଶବବାବୁଙ୍କ ମୁହଁକୁ ଗ୍ରହିଁ ଲୋକେ ତାଙ୍କ କଥାରେ ଗୁରୁତ୍ୱ ଦେଇ ଅବିଳମ୍ବେ

ତାହା କରୁଥିଲେ । ତାଙ୍କ ସାଥିରେ ସମୟେ ସମୟେ ପ୍ରାବନ୍ଧିକ ୰ରତ୍ନାକର ପତି ଓ ଅନ୍ୟକେତେକ ଆଞ୍ଚଳିକ ମାନ୍ୟଗଣ୍ୟ ବ୍ୟକ୍ତି ଶ୍ରଦ୍ଧା ସଂଗ୍ରହ କରିବାକୁ ବିଭିନ୍ନ ଗ୍ରାମକୁ ଯାଉଥିଲେ । ପ୍ରାବନ୍ଧିକ ୰ରତ୍ନାକର ପତି ସେତେବେଳେ ପିଲାମାନଙ୍କୁ ଓ ତାଙ୍କ ଅଭିଭାବକଙ୍କୁ ନୀତିପୂର୍ଣ୍ଣ ଉପଦେଶମାନ ଦେଉଥିଲେ । କେତେବେଳେ କେତେବେଳେ ସେ ଅନ୍ୟ କବିମାନଙ୍କର କବିତା ଆବୃତ୍ତି କରୁଥିଲେ ।

*"ଧନ ମାନ ଜନ ଯାହା ଉପାର୍ଜନ କରିଅଛ ଧରା ତଳେ,*
*ହରଷିତ ମନେ କରତବ୍ୟ ଜ୍ଞାନେ କିଛି ଦିଅ ଯତ୍ନେ ଯଳେ ।"*

ଗୋପାଳ ସ୍ମୃତି ବିଦ୍ୟାପୀଠର ପ୍ରଥମେ ୪ଟି ବଡ଼ ବଡ଼ ଛପର ଘରେ ଅଷ୍ଟମ, ନବମ, ଦଶମ ଓ ଏକାଦଶ ୪ଟି ଶ୍ରେଣୀରେ ପାଠପଢ଼ା କାମ ଆରମ୍ଭ ହୋଇଥିଲା । ସବୁ ଘରର କାନ୍ଥ ବଡ଼ ବଡ଼ ଝରକା ନିମିଟେଲ ପର୍ଯ୍ୟନ୍ତ ଗଢ଼ା ହୋଇଥିଲା । ତଳ ସିମେଣ୍ଟ ଚଟାଣ ହୋଇ ନଥିଲା । କାନ୍ଥ ପ୍ଲାଷ୍ଟର୍ ହୋଇ ନଥିଲା । କିନ୍ତୁ ଶ୍ରେଣୀ ପରିଚାଳନା ପାଇଁ ଯାହା ଯାହା ଦରକାର, ସେ ସବୁ ବିଧିବଦ୍ଧ ଭାବରେ ଖଞ୍ଜାଯାଇଥିଲା । କାନ୍ଥରେ ସିମେଣ୍ଟର ବଡ଼ ବଡ଼ ବ୍ଲାକ୍‌ବୋର୍ଡ଼ ତିଆରି ହୋଇଥିଲା । ବିଦ୍ୟୁତ ପଙ୍ଖାର ଆବଶ୍ୟକତା ନ ଥିଲା । ଘରମାନଙ୍କ ବାର୍ଷିକ ମରାମତି ଓ ଛପର ନିମିତ୍ତ ନଡ଼ା ବାଉଁଶ ଇତ୍ୟାଦି ପଡ଼ୋଶୀ ଗାଁଗଣ୍ଡାରୁ ଯୋଗାଡ଼ ହେଉଥିଲା । ୰କେଶବବାବୁଙ୍କ କଥାରେ ପିଲାମାନଙ୍କର ଅଭିଭାବକ ଓ ଗ୍ରାମବାସୀମାନେ ନିଜ କାନ୍ଧରେ ବାଉଁଶ କାନ୍ଧେଇ ଆଣି ସ୍କୁଲ ଅଗଣାରେ ପକାଇବାର ନଜିର ମଧ୍ୟ ଅଛି । କେଶବବାବୁ ଏ ସବୁ କାମକୁ ଆଗେଇନେବା ପାଇଁ ପଛେ ପଛେ ପିଛା କରନ୍ତି । ଏହି ପ୍ରକାର ସ୍କୁଲ୍ ଗଠନରେ ଆର୍ଥିକ, ମାନସିକ, ଶାରୀରିକ ଶ୍ରମ କେତେ ଯେ ନିହିତ, ତାହା ବର୍ଣ୍ଣନା କରିହେବ ନାହିଁ ।

କେଶବବାବୁ ଭାଗ୍ୟବାଦରେ ଖୁବ୍ କମ୍ ବିଶ୍ୱାସ କରୁଥିଲେ । କର୍ମବାଦ ଉପରେ ସେ ତାଙ୍କର ଚିନ୍ତାଧରା ଓ ଆସ୍ଥା ପ୍ରକଟ କରୁଥିଲେ ।

*"କର୍ମ ଜୀବନ କର୍ମ ଧରମ*
*କର୍ମ ମୋ ନମୋ ନମଃ ।"*

ସେ ଏହି ଅଭିମନ୍ତ୍ରରେ ପୂରାପୂରି ଭାବରେ ଦୀକ୍ଷିତ ହୋଇଥିଲେ ଓ ଅନ୍ୟମାନଙ୍କ ପାଇଁ ପ୍ରେରଣାର ଉତ୍ସ ଥିଲେ । ତାଙ୍କର କ୍ରମାଗତ ଉଦ୍ୟମ ତଥା

ଅଧ୍ୟବସାୟ ଫଳରେ ସିଦ୍ଧେଶ୍ୱରପୁର ଠାରେ ପାଖାପାଖି ତିନୋଟି ବିଦ୍ୟାଳୟ ଯଥା-- ଉଚ୍ଚବିଦ୍ୟାଳୟ, ମହାବିଦ୍ୟାଳୟ ଓ ଗୋଟିଏ ବାଳିକା ବିଦ୍ୟାଳୟ ପ୍ରତିଷ୍ଠାଲାଭ କରିପାରିଥିଲା, ଯାହାକି ବର୍ତ୍ତମାନ ସେ ଅଞ୍ଚଳ ପାଇଁ ଓ ଅଞ୍ଚଳବାସୀଙ୍କ ପାଇଁ ଗୌରବର ବିଷୟ ହୋଇଛି ।

ୱକେଶବବାବୁ ଯେପରି ଜଣେ ପ୍ରଗ୍ରରଧର୍ମୀ ଲୋକ ନଥିଲେ ବା ଅନ୍ୟାନ୍ୟ ନେତାମାନଙ୍କ ପରି ପୁରସ୍କାର ପାଇବା ତାଲିକାରେ ତାଙ୍କ ନାମ ନ ଥିଲା । କିନ୍ତୁ ସେ ଜଣେ ଚିନ୍ତାନାୟକ ଓ ଚିନ୍ତାଶୀଳ ଜନନାୟକ ଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ସେ ଜଣେ ନୀତିନିଷ୍ଠ ଲୋକ ଥିଲେ । ସେ ସବୁବେଳେ ଅଞ୍ଚଳବାସୀଙ୍କର ମଙ୍ଗଳ ବାଞ୍ଛା କରୁଥିଲେ ଓ ସେ ଅଞ୍ଚଳର ଉନ୍ନତି ନିମନ୍ତେ ଆପ୍ରାଣ ଉଦ୍ୟମ କରୁଥିଲେ । ଅଭାବୀ ଶିକ୍ଷାନୁଷ୍ଠାନର ପରିପୂରଣ କରି ଯେ ସେ ନିଶ୍ଚିନ୍ତ ହେଉଥିଲେ, ସେ କଥା ନୁହେଁ । ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ଗଢ଼ିତୋଳିବାର ଭୂମିକା ଗ୍ରହଣ କରିଥିଲେ । ଗରିବ ଛାତ୍ରଛାତ୍ରୀମାନଙ୍କୁ ବୃତ୍ତି ଦେବା, ଆର୍ଥିକ ସାହାଯ୍ୟ କରିବା, ଏପରିକି ବହି ଓ ପାଠ୍ୟୋପକରଣ ଇତ୍ୟାଦି ଯୋଗାଉଥିଲେ । ନୂଆ ସ୍କୁଲ, ନୂଆ କଲେଜ, ଛାତ୍ର ଉପସ୍ଥାନ ବୃଦ୍ଧି ଜରୁରୀ ଥିଲା । ଏହି ଛାତ୍ର ଉପସ୍ଥାନ ବୃଦ୍ଧି ନିମନ୍ତେ ସେ ପ୍ରାଣପଣେ ଚେଷ୍ଟା କରୁଥିଲେ । ଅନ୍ୟ ସ୍କୁଲରେ ପଢୁଥିବା ଏ ଅଞ୍ଚଳର ଛାତ୍ରଛାତ୍ରୀମାନଙ୍କୁ ଫେରିଆସି ନାମ ଲେଖାଇବାକୁ ପିଲାମାନଙ୍କୁ ତଥା ଅଭିଭାବକମାନଙ୍କୁ ପ୍ରବର୍ତ୍ତାଉ ଥିଲେ ଓ ପରାମର୍ଶ ଦେଉଥିଲେ । ଅଧାରୁ ପାଠ ଛାଡୁଥିବା ପିଲାମାନଙ୍କ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ଓ ତତ୍‌କ୍ଷଣାତ୍ ଅଭିଭାବକମାନଙ୍କ ପାଖରେ ପହଞ୍ଚି ଅସୁବିଧା ସୁବିଧା କଥା ପଗ୍ରରି ବୁଝି ପୁନଃ ନାମ ଲେଖାଇବାର ବନ୍ଦୋବସ୍ତ କରାଉଥିଲେ, ଯାହାଦ୍ୱାରା କି ଉପସ୍ଥାନର ବୃଦ୍ଧି ଘଟୁଥିଲା ।

ଲୋକମାନଙ୍କୁ ମାଲିମକଦ୍ଦମାରେ ପଡ଼ି ସର୍ବସ୍ୱାନ୍ତ ହେବାକୁ ଦେଉ ନଥିଲେ । ଖୁବ୍ କ୍ୱଚିତ୍ ଲୋକ କଥାରୁ ବାହାରି ଦୁର୍ଦ୍ଦଶାଗ୍ରସ୍ତ ହେଉଥିଲେ । ସେ ଗ୍ରାମ କଳହକୁ ଗ୍ରାମର ମୁଖିଆ ଲୋକଙ୍କ ସାହାଯ୍ୟରେ ନିଷ୍ପତ୍ତି କରାଉଥିଲେ ଓ ତହୁଁ ଅଧିକ ହେଲେ ବିଭିନ୍ନ ଗ୍ରାମର ମୁଖିଆ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ନେଇ କୌଣସି ଠାକୁରାଣୀ ପୀଠ ବା ସର୍ବସାଧାରଣ ସ୍ଥାନରେ ରୁଣ୍ଡ ହୋଇ ସତ୍ୟାସତ୍ୟ ଅନୁଧ୍ୟାନ କରି ନିଶାପ କରୁଥିଲେ । ଏହାକୁ ସେତେବେଳେ 'ଦିଗ ପଞ୍ଚାୟତ' ବୋଲି କୁହାଯାଉଥିଲା ।

ଏହି ଡିଗ-ପଞ୍ଚାୟତରେ ଟିମ୍ ଲିଡର୍ ଥିଲେ କେଶବବାବୁ । ବର୍ତ୍ତମାନର ନିଶାପ ପରି ଯୁଆଡ଼େ ବର୍ଷା ସିଆଡ଼େ ଛତା ଓ ନିଶାପ ସିଆଡ଼େ, ଏପରି କରୁ ନ ଥିଲେ । ପ୍ରକୃତ ସତ୍ୟାସତ୍ୟ ଅନୁଧ୍ୟାନ କରି ନ୍ୟାୟପ୍ରଦାନ କରୁଥିବାରୁ ଉଭୟ ପକ୍ଷ ସେ ନ୍ୟାୟକୁ ଆଦରି ନେଉଥିଲେ । ଯାହାର କାଇଲି ହେଉଥିଲା, ସେ ଆପେ ଆପେ କାଇଲିକୁ ମାନି ନେଉଥିଲା । ଉଭୟଙ୍କ ଅନ୍ତରରେ ଥିବା ତିକ୍ତତାକୁ ଉଭୟେ ପରିହାର କରି ପୂର୍ବବତ୍ ଭାଇବନ୍ଧୁ କୁଟୁମ୍ବ ପଡ଼ିଶା ହିସାବରେ ଜୀବନ ଜଞ୍ଜାଳ ସ୍ରୋତରେ ସାମିଲ ହେଉଥିଲେ ।

କିନ୍ତୁ ବର୍ତ୍ତମାନର ନ୍ୟାୟ ବିଗ୍ରରରେ ଆକାଶପାତାଳ ପ୍ରଭେଦ । ପ୍ରିୟାପ୍ରୀତି ତୋଷଣ, ପାତର ଅନ୍ତର ଇତ୍ୟାଦି ଭରପୂର । ନ୍ୟାୟପ୍ରଦାନ ମଧ୍ୟ ଏ ନେଇ ବିଳମ୍ବିତ ହେଉଛି । ଗ୍ରାମରେ କେହି କାହାରିକୁ ମାନିବାକୁ ନାରାଜ । ଏକ୍ ସେ ଏକ୍ ବଢ଼୍ କର, ଭାବ ପ୍ରଦାନ କରୁଛନ୍ତି । ଲୋକେ ମୁରବିମାନଙ୍କ କଥାକୁ ନ ମାନି କୋର୍ଟ କଚେରୀ ଦୌଡ଼ି ନିଃସ୍ୱ ହୋଇଯାଉଛନ୍ତି । ଠିକ୍ ନ୍ୟାୟ ମଧ୍ୟ ମିଳୁନାହିଁ । ସମାଜରେ ବିଜ୍ଞ ଚିନ୍ତାଶୀଳ ବ୍ୟକ୍ତିମାନେ ବର୍ତ୍ତମାନର ଚିନ୍ତାଧାରାକୁ ଦେଖି ଚକିତ ହେଉଛନ୍ତି ।

*''ଏ କିବା ବିଗ୍ରର ରୀତି*
*ଦୋଷ କରି ପ୍ରଜା ପାଏ ନାହିଁ ଦଣ୍ଡ*
*ଦୋଷୀ ହୁଏ ନରପତି ।''*

ପ୍ରଭୁ ପରମହଂସନାଥଙ୍କ ମନ୍ଦିର ପରିଗ୍ରଳନାଗତ ତ୍ରୁଟି ସୁଧାରିବା ନିମନ୍ତେ ଆଞ୍ଚଳିକ କେତେକ ଲୋକ ୰କେଶବବାବୁଙ୍କ ନାମ ସୁପାରିଶ କରିଥିଲେ । ତଦନୁଯାୟୀ ୰କେଶବବାବୁ ଉକ୍ତ ମନ୍ଦିରର ମ୍ୟାନେଜିଂ ଟ୍ରଷ୍ଟି ହୋଇଥିଲେ । ଉକ୍ତ ମନ୍ଦିରର ପୂର୍ବତନ ଟ୍ରଷ୍ଟି ବୋର୍ଡ଼ଙ୍କର ନିଃସ୍ୱାର୍ଥପରତା ଓ ନିଷ୍ଠାର ଅଭାବରୁ ପୂଜକ, ପଣ୍ଡା, ମାର୍ଫତଦାରଙ୍କ ଭିତରେ ବାରମ୍ବାର ଗୁରୁତର ମତଭେଦ ଘଟି ମନ୍ଦିରର ନୀତି ଓ ପୂଜା ନିର୍ଘଣ୍ଟ ଆଦିରେ ଘୋର ବିଭ୍ରାଟ ଘଟୁଥିଲା । ୰କେଶବବାବୁ ଦାୟିତ୍ୱ ଗ୍ରହଣ ପରେ ସେ ସବୁକୁ ସୁଧାରି ଥିଲେ । କିଛିଦିନ ଉକ୍ତ କାର୍ଯ୍ୟ ଶୃଙ୍ଖଳିତ ଭାବରେ ଗ୍ରଲିବା ପରେ ରାଜନୀତିରେ ପରିବର୍ତ୍ତନ ଘଟିଥିଲା । ପୁନରାୟ ନ୍ୟସ୍ତ ସ୍ୱାର୍ଥପରାୟଣ ପଣ୍ଡାମାନେ ବିଭ୍ରାଟ ଘଟାଇଥିଲେ । କେଶବବାବୁ ଶେଷରେ ଅତିଷ୍ଠ

ହୋଇ ଦେବୋତ୍ତର କମିଶନଙ୍କ ନିକଟରେ ନିଜର ଇସ୍ତଫାପତ୍ର ପଦାନ କରି ସେଥିରୁ ଅବ୍ୟାହତି ନେଇଥିଲେ । ସେହି ସମୟରେ ରାଜକୃଷ୍ଣ ବୋଷ ଓ ଅନ୍ୟାନ୍ୟ କେତେକ ନେତୃସ୍ଥାନୀୟ ବ୍ୟକ୍ତି ଉକ୍ତ କମିଶନରଙ୍କ କାର୍ଯ୍ୟାଳୟରେ ଉପସ୍ଥିତ ଥିଲେ ଓ କେଶବବାବୁଙ୍କୁ ଜନତା ଶାଢୀ ଧୋତି ଇତ୍ୟାଦିର ସଦର ମହକୁମାରେ ଥିବା କଟକ ଗୋଦାମରେ ସୁପର୍‌ଭାଇଜର୍ ପଦବୀରେ ନିଯୁକ୍ତି ଦେଇଥିଲେ । କିନ୍ତୁ ଉକ୍ତ ଜନତା ଧୋତି ଶାଢୀ ପ୍ରଥମେ ଲୋକଙ୍କ ଦ୍ୱାରା ଆଦର ଲାଭ କରିଥିଲେ ମଧ୍ୟ ପରକାଳରେ ଆଧୁନିକ ଚ୍ୱକଚକ୍ୟ ସଭ୍ୟତାରେ ତାହାର ଚ୍ୱହିଦା କମିଯାଇଥିଲା ଓ ପ୍ରାୟ ବନ୍ଦ ହୋଇଯାଇଥିଲା ।

ଶେଷରେ ବାର୍ଦ୍ଧକ୍ୟ ହେତୁ ତାଙ୍କର ମହାନ୍ ମହିମାମୟ କର୍ମଜୀବନର କ୍ରମଶଃ ଅବସାନ ଘଟିଲା ଓ ଶେଷରେ ସନ ୨୦୦୫ ମସିହାରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ । ତାଙ୍କର ଅମର ଆତ୍ମା ସଦ୍‌ଗତି ଲାଭକରୁ, ଏତିକି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

*ଟର୍ଥରପା*



# କେଶବବାବୁ— ଏକ ଅଭୁଲା ସ୍ମୃତି

✦ ଶ୍ରୀ ବଂଶୀଧର ଜେନା

୧୯୫୧ ମସିହା କଥା । ମୁଁ ରେଭେନ୍ସା ମହାବିଦ୍ୟାଳୟରୁ ସ୍ନାତକ ହୋଇ କଟକଠାରେ ଅବସ୍ଥାନ କରୁଥାଏ । ଜୁଲାଇ ମାସରେ ଘରକୁ ଆସି କନ୍ଦରପୁରଠାରେ ଓହ୍ଲାଇ ଜଣେ ସମ୍ପର୍କୀୟଙ୍କ ସହିତ ଆଳାପ କରୁଥିଲି । ସେଠାରେ କେଶବବାବୁ ପହଞ୍ଚିଲେ । ସମ୍ପର୍କୀୟ ତାଙ୍କ ପରିଚୟ କରାଇଦେଲେ । କେଶବବାବୁ ହଠାତ୍ ମୋତେ ନୂଆ ହୋଇ ଗଢିଉଠିଥିବା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକତା କରିବାକୁ କହିବାରୁ ମୁଁ ସଙ୍ଗେ ସଂଙ୍ଗେ ରାଜି ହୋଇଗଲି ଓ ବିଦ୍ୟାଳୟରେ ଯୋଗଦାନ କଲି । ସେ ବିଦ୍ୟାଳୟର ସଂପାଦକ ଥାଆନ୍ତି ।

ଅଳ୍ପଦିନ ମଧ୍ୟରେ ବିଦ୍ୟାଳୟ ପରିଚାଳନା ସମିତିର ସଭାପତି (ଦିବଂଗତ) ଅଧ୍ୟାପକ ରତ୍ନାକର ପତିଙ୍କ ସହ ଭେଟ ହେଲା । ଉଭୟେ ସମ୍ପାଦକ ଓ ସଭାପତି ଯେପରି ନିରାଡ଼ମ୍ବର ଭାବରେ ସାଧାରଣରେ ବିଚରଣ କରି ବିଦ୍ୟାଳୟର ପ୍ରତିଷ୍ଠା ପାଇଁ ଲାଗିପଡ଼ିଥା'ନ୍ତି, ତାହା ବେଶ୍ ପ୍ରଭାବଶାଳୀ ଥିଲା । କେଶବବାବୁ ଖଣ୍ଡେ ଧୋତି ପିନ୍ଧି ବେଳେବେଳେ ମୁଣ୍ଡରେ ଠେକାଟିଏ ଭିଡ଼ି ଏ ଗ୍ରାମରୁ ସେ ଗ୍ରାମ ହେଉଥା'ନ୍ତି । ଅଧ୍ୟାପକ ପତି ମଧ୍ୟ ଖଣ୍ଡେ ଧୋତି ଓ ଗୋଟିଏ ବେକଚିପା କୋଟ୍ ପିନ୍ଧି ବୁଲୁଥା'ନ୍ତି । ସେମାନଙ୍କର ନିରଳସ କର୍ମତତ୍ପରତା ପ୍ରଣିଧାନଯୋଗ୍ୟ ।

ଦିନେ ଦିନେ ଅଧ୍ୟାପକ ପତି ସକାଳ ଘ୧୦ଣ୍ଟା ୨୫ମିନିଟରେ ବିଦ୍ୟାଳୟରେ ପହଞ୍ଚି ଆମ୍ଭମାନଙ୍କ ଉପସ୍ଥିତି ଲକ୍ଷ୍ୟ କରୁଥା'ନ୍ତି । ତେଣୁ କୌଣସି ଶିକ୍ଷକ ବିଳମ୍ବରେ ବିଦ୍ୟାଳୟକୁ ଅସିବାର ପ୍ରଶ୍ନ ଉଠୁ ନଥିଲା । ସମ୍ପାଦକ କିନ୍ତୁ ବିଦ୍ୟାଳୟ ପାଇଁ କେଉଁଠୁ କି ଉପକରଣ ଆସିବ ବା ଅନ୍ୟ କୌଣସି ବିଷୟ

ଦରକାର ସେ ବିଷୟରେ ଯତ୍ନବାନ୍ ହେଉଥା'ନ୍ତି । ସତେ ଯେପରି ସେତେବେଳେ ବିଦ୍ୟାଳୟର ସ୍ଥିତି ଓ ଉନ୍ନତି ସେମାନଙ୍କର ଏକମାତ୍ର ଧ୍ୟେୟ ଓ କାମନା ।

ମୁଁ ୧୯୫୪ ମସିହା ଜୁନ୍ ମାସରେ ବିଦ୍ୟାଳୟରୁ ବିଦାୟ ନେଇ ସରକାରୀ ଚାକିରିରେ ଚାଲିଗଲି । କିନ୍ତୁ କେଶବବାବୁ ମୋତେ ଛାଡ଼ିବାକୁ ଯେପରି ନାରାଜ । ଗୋପାଳ ସ୍ମୃତି ବିଦ୍ୟାପୀଠ ସରକାର ହାତକୁ ନେଲେ । କେଶବବାବୁ ଚାହିଁଲେ ଗୋଟିଏ ଉଚ୍ଚ ଇଂରାଜୀ ବାଳିକା ବିଦ୍ୟାଳୟ ପ୍ରତିଷ୍ଠା କରିବାକୁ । ସେ ଏଥିପାଇଁ ଅଥଙ୍ଗା ଗ୍ରାମକୁ ବାଛିଲେ । ସେଠାରେ ମୋତେ ସେ ସଭାପତି ଭାବରେ ରଖି ବିଦ୍ୟାଳୟ ଆରମ୍ଭ କଲେ ।

ସ୍ୱର୍ଗତ ଜମିଦାର ଚିନ୍ତାମଣି ଆଚାର୍ଯ୍ୟଙ୍କର ସେ ଗ୍ରାମରେ ଜମି ତ ଥିଲା ଓ ଜମିଦାରୀ ଦେଖାଶୁଣା କରିବା ପାଇଁ ଘର ବି ଥିଲା । ଅବଶ୍ୟ ସେତେବେଳେକୁ ଜମିଦାରୀ ଉଠିଯାଇଥାଏ । ସେଇ ପରିତ୍ୟକ୍ତ ଘରେ ବିଦ୍ୟାଳୟର ୪ର୍ଥ ଶ୍ରେଣୀ ଖୋଲାଯାଇ ପାଠପଢ଼ା ଆରମ୍ଭ ହେଲା । ପରେ ଏହା ବର୍ତ୍ତମାନର ସ୍ଥାନକୁ ଉଠିଆସିଲା । ଏ ବିଦ୍ୟାଳୟଟି ସରକାରୀ ହେବା ପର୍ଯ୍ୟନ୍ତ ଆମ୍ଭେମାନେ ଏହାର ପରିଚାଳନା କରୁଥିଲୁ ।

କେଶବବାବୁ ଯଦିଓ ବିଦ୍ୟାଳୟ ସ୍ଥାପନା ନେଇ ବ୍ୟସ୍ତ ରହିଥିଲେ, ଜୀବନବୀମା ନିଗମର ଉନ୍ନୟନ ଅଧିକାରୀ ଭାବରେ ସେ ମଧ୍ୟ କାର୍ଯ୍ୟ କରୁଥଲେ । ବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ଜୀବନବୀମା ସେ କରାଉଥିଲେ । ଶିକ୍ଷାର ପ୍ରସାର ସତେ ଯେମିତି ତାଙ୍କ ଜୀବନର ଲକ୍ଷ୍ୟ ଥିଲା । ଆଜି ଶ୍ରାଦ୍ଧବାସରରେ ତାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇବା ସଙ୍ଗେ ସଙ୍ଗେ ଆତ୍ମାର ସଦ୍‌ଗତି କାମନା କରୁଛି ।

*ପୁରାତନ ଶିକ୍ଷକ,*

*ଗୋ: ସ୍ମୃ: ବିଦ୍ୟାପୀଠ*



# ମୁଁ ଯେତିକି ଜାଣେ

✦ ଶ୍ରୀ ରାଧାକୃଷ୍ଣ ପଣ୍ଡା

ଗୋଟିଏ ଦିନର ଘଟଣା, ୨୬/୭/୨୦୦୫ ମଙ୍ଗଳବାର ଦୈନିକ ସମ୍ବାଦରୁ ପଢ଼ିବାକୁ ପାଇଲି-- ସମାଜସେବୀ କେଶବ ଚନ୍ଦ୍ର ନନ୍ଦ ଆଉ ନାହାନ୍ତି । ଗତ ୨୪/୭/୨୦୦୫ ଶ୍ରାବଣ କୃଷ୍ଣ ଚତୁର୍ଥୀରେ ତାଙ୍କର ଦେହାନ୍ତ ହୋଇଯାଇଛି । ଓଃ ଅଦ୍ୟପ୍ରାତରେବା ନିଷ୍ଠ ଘଟଣଂ ।

*ପ୍ରଭାତେ ଯଃ ସ୍ମରେନ୍ନିତ୍ୟଂ ଦୁର୍ଗା ଦୁର୍ଗା କ୍ଷର ଦ୍ୱୟଂ*
*ଆପଦସ୍ତସ୍ୟ ନଶ୍ୟନ୍ତି ତମୋ ସୂର୍ଯ୍ୟୋଦୟେ ଯଥା ।*

ଏ ଶ୍ଳୋକଟି ମୁଁ ପ୍ରତିଦିନ ବିଛଣା ତ୍ୟାଗ ସମୟରେ ପଢ଼େ । ସେଦିନ ବି ପଢିଥିଲି । ତେବେ ଏ ଅଘଟଣ ଘଟିଲା କାହିଁକି ? ମନଟା ଦୁଃଖରେ ଦବିଗଲା । ଆଶା କରିଥିଲି ସେ ଶତାୟୁ ହେବେ । ମାତ୍ର ସେ ଆଶା ଆଶାରେ ରହିଗଲା । କବିବରଙ୍କ ଭାଷାରେ ମନକୁ ସାନ୍ତ୍ୱନା ଦେଲି ।

*''କେହି ରହିନାହିଁ ରହିବେ ନାହିଁ ଟି*
*ଭବ ରଂଗଭୂମି ତଳେ,*
*ସର୍ବେ ନିଜ ନିଜ ଅଭିନୟ ସାରି*
*ବାହୁଡ଼ିବେ କାଳବଳେ ।''*

Birth is eternal, death is too,
Life is a small bridge between that two.

ତା'ପରେ ଅତୀତର ସ୍ମୃତିଗ୍ରୁରଣ କରିବାକୁ ଲାଗିଲି । ଘଟଣା ସ୍ମୃତିପଟରେ ଆଙ୍କି ହୋଇଗଲା ।

୧୯୩୨ ମସିହାର କଥା, ଯେଉଁଦିନ ମୋର ପାଦଦୁଇଟି ଏହି ସିଦ୍ଧେଶ୍ୱରପୁର ଗାଁ ମାଟିକୁ ସ୍ପର୍ଶକଲା । ୧୯୩୨ମସିହା ଜାନୁଆରୀ ପ୍ରଥମ ସପ୍ତାହ । ମୁଁ ତଦାନୀନ୍ତନ ସିଦ୍ଧେଶ୍ୱରପୁର ମି:ଇ: ସ୍କୁଲରେ ୪ର୍ଥ ଶ୍ରେଣୀରେ ନାମ ଲେଖାଇବାକୁ ପିତା ସ୍ୱର୍ଗତ ବାଳକୃଷ୍ଣ ପଣ୍ଡାଙ୍କ ସଂଗରେ ଆସିଥାଏ । ଆମ ଗାଁର ଆଉ ୩/୪ ଜଣ ପିଲା ମଧ୍ୟ ସାଙ୍ଗରେ ଆସିଥା'ନ୍ତି । କୂଅବେଙ୍ଗ କୂଅରୁ ପଦାକୁ ଚାଲିଆସିଲେ ଯେପରି ଆଶ୍ଚର୍ଯ୍ୟ -ଚକିତ ହୁଏ, ଆମକୁ ଠିକ୍ ସେହିପରି ଲାଗୁଥାଏ । ମୋର ପିତା ଉକ୍ତ ବିଦ୍ୟାଳୟରେ ଦୀର୍ଘ ୨୫ ବର୍ଷ କାଳ ଶିକ୍ଷକତା କରିଥିଲେ ଓ ଖୁବ୍ ଲୋକପ୍ରିୟ ଓ ଦକ୍ଷ ଶିକ୍ଷକ ଥିଲେ । ପ୍ରହରାଜ ପରିବାରର ଘରୋଇ ଶିକ୍ଷକ ମଧ୍ୟ ଥିଲେ ।

ତିନି ନମ୍ବର ପୋଲ ଠାରୁ ଗାଁ ନାଳବନ୍ଧରେ ଆସୁଆସୁ ଦେଖିଲି ଗୋଟିଏ ଏକ ମହଲା କୋଠା । ନନାଙ୍କୁ ପଚାରିଲି, "ଏ କୋଠା କାହାର ?" ସେ କହିଲେ- ଏହା କୃଷ୍ଣଚନ୍ଦ୍ର ନନ୍ଦଙ୍କ ଘର (ନନ୍ଦଘର) । ସ୍ୱର୍ଗତ କୃଷ୍ଣ ଚନ୍ଦ୍ର ନନ୍ଦ ଦର୍ପଣୀ ଇଷ୍ଟେଟ୍‌ର ମ୍ୟାନେଜର ଥିଲେ । ଏହା ତାଙ୍କ ସ୍ୱଉପାର୍ଜିତ ଧନରେ ନିର୍ମିତ । କେଶବବାବୁ ସ୍ୱର୍ଗୀୟ କୃଷ୍ଣଚନ୍ଦ୍ର ନନ୍ଦଙ୍କର କନିଷ୍ଠ ପୁତ୍ର । ଜ୍ୟେଷ୍ଠ ୰ବାସୁଦେବ ନନ୍ଦ ।

କିଛିଦିନ ଅନ୍ତେ କେଶବବାବୁଙ୍କୁ ଦେଖିବାର ସୁଯୋଗ ମିଳିଲା । ସେ ବୋଧହୁଏ ଆଇ.ଏ. ପଢ଼ିଥା'ନ୍ତି । କି ସୁନ୍ଦର ଚେହେରା । ଗୋରା ତକତକ ଦେହ, ବଳିଲାବଳିଲା ବାହୁ, ସୁଗଠିତ ଅବୟବ । କେଶବବାବୁ ପ୍ରତ୍ୟହ ସକାଳେ କୁସ୍ତି କସରତ, ଦଣ୍ଡ ବୈଠକ କରି ଶରୀରକୁ ସୁସ୍ଥସବଳ— ସୁନ୍ଦର ରଖିଥା'ନ୍ତି ।

ଯାହା ମନେପଡ଼େ, ୧୯୩୩ ମସିହା ଗ୍ରୀଷ୍ମଛୁଟି (ମେ) ମଧ୍ୟରେ କେଶବ-ବାବୁଙ୍କ ବିବାହ ସ୍ଥାନୀୟ ଜମିଦାର ବଟକୃଷ୍ଣ ପ୍ରହରାଜଙ୍କର ଏକମାତ୍ର ଅଲିଅଳୀ କନ୍ୟା ଦୁର୍ଗାଦେବୀଙ୍କ ସହ ସଂପନ୍ନ ହେଲା, ମଣିକାଞ୍ଚନ ସଂଯୋଗ ଘଟିଲା । ଜମିଦାରଙ୍କ ପାଇଁ କେଶବବାବୁଙ୍କ ଖାତିର ଏବଂ ବ୍ୟକ୍ତିତ୍ୱ ବଢ଼ିଗଲା । ଦୁର୍ଗାଦେବୀ ଏକାଧାରରେ ସୁଶ୍ରୀ ମହିଳା, ଆଦର୍ଶ ପତ୍ନୀ, ଆଦର୍ଶ ଗୃହିଣୀ, ପତିବ୍ରତା ନାରୀ ଥିଲେ । ଦୁହିଁଙ୍କର ମିଳନ ଅପୂର୍ବ ଥିଲା ।

ବର୍ଷ ପରେ ବର୍ଷ ଗଡ଼ିଚାଲିଲା । ୧୯୩୫ ମସିହାରେ ମି.ଇ. ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ବୃତ୍ତି ପାଇଲି ଏବଂ ଉଚ୍ଚଶିକ୍ଷା ପାଇଁ କଟକ ଚାଲିଗଲି ।

କଟକ କଲିଜିଏଟ୍ ସ୍କୁଲରେ ନାମ ଲେଖାଇଲି । ମଧ୍ୟେ ମଧ୍ୟେ ନନାଙ୍କ ପାଖକୁ ସିଦ୍ଧେଶ୍ୱରପୁର ଆସେ। ସମ୍ଭବତଃ ୧୯୪୨ ମସିହାରେ ନନାଙ୍କ ବଦଳି ଜଗନ୍ନାଥପୁର(ତିର୍ତ୍ତୋଲ)କୁ ହୋଇଗଲା । ମୁଁ ଆଉ ସିଦ୍ଧେଶ୍ୱରପୁର ଆସିଲି ନାହିଁ। କଲିଜିଏଟ୍ ସ୍କୁଲରେ ୧୯୪୦ ମସିହାରେ ମ୍ୟାଟ୍ରିକ୍ ୨ୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଜୀବନ-ଜୀବିକା ଉପାର୍ଜନ ଆଶାରେ ସି.ଟି. ଅଧ୍ୟୟନ କଲି। ସି.ଟି. ପାସ୍ କରି ଅଳ୍ପ କେତେଦିନ ଶିକ୍ଷକତା କରି ବେଶୀ ଅର୍ଥୋପାର୍ଜନ ଲାଗି କୃଷି ବିଭାଗରେ କିରାଣୀ ଚାକିରି କଲି। କାରଣ ନନାଙ୍କର ଶିକ୍ଷକତା ପ୍ରତି ବିରାଗ ଆସିଯାଇଥାଏ । ମାତ୍ର ସରକାରୀ ଚାକିରିର ତିକ୍ତତା ମୋର ସ୍ୱାଧୀନ ମନକୁ କ୍ଷତବିକ୍ଷତ କରି ପକାଇଲା । ମୋତେ ଆକ୍ରୋଶମୂଳକ ଭାବେ କେଉଁଝର ବଦଳି କରାଗଲା । ବୋଧହୁଏ ୧୯୪୩ ମସିହା । ବେଶୀ ରୋଜଗାର ନୋହିଲା, ଇସ୍ତଫା ଦେଲି ।

ଫେରିଆସିଲି ମୋର ପିତାଙ୍କର କର୍ମକ୍ଷେତ୍ର ଗୋପାଳ ସ୍ମୃତି ବିଦ୍ୟାପୀଠକୁ (ନୂତନ ନାମ) । ପୁନଶ୍ଚ କେଶବବାବୁଙ୍କ ସଂପର୍କ ସାନ୍ନିଧ୍ୟ ଲାଭ କଲି । କାରଣ ସେ ସଂପାଦକ ଥିଲେ । ଇତିମଧ୍ୟରେ କେଶବବାବୁଙ୍କର ଚେହେରା ଓ ସ୍ୱଭାବରେ ବହୁ ପରିବର୍ତ୍ତନ ହୋଇଛି । ସେ ଚଞ୍ଚଳ ଚଞ୍ଚଳ ଯୁବକ ନାହାଁନ୍ତି । ଶାନ୍ତ-ଧୀର-ସ୍ଥିର ଗମ୍ଭୀର ପ୍ରୌଢ଼ । ପାଞ୍ଚଟି ପୁତ୍ରସନ୍ତାନର ଜନକ (ଝୁଲୁ, ବୁଲୁ, ସଂଖୀ, ଅରୁଣ ଓ ସାଲୁ) । ସେମାନେ ବିଭିନ୍ନ ପଦପଦବୀରେ ଅଧିଷ୍ଠିତ ହୋଇପାରିଛନ୍ତି । ସେମାନେ ସମସ୍ତେ ମୋର ଛାତ୍ର । କେଶବବାବୁ ସ୍ୱାଧୀନଚେତା, ସାମଜସେବୀ; ବିଶେଷତଃ ଶିକ୍ଷାର ପ୍ରସାର ଓ ପ୍ରଚାର ପାଇଁ ସେ ଖୁବ୍ ଆଗ୍ରହୀ । ତାଙ୍କର ଶ୍ୱଶୁର ସ୍ୱର୍ଗତ ବଟକୃଷ୍ଣ ପ୍ରହରାଜ ଜଣେ ସ୍ୱାଧୀନତା ପ୍ରେମୀ ସ୍ପଷ୍ଟବାଦୀ ବ୍ୟକ୍ତି ଥିଲେ । ବିଦେଶୀ ଶାସନ, ଗୋଲାମୀ ପ୍ରତି ତାଙ୍କର ଖୁବ୍ ଘୃଣାଭାବ ଥିଲା । କାରଣ ସେ ଜଣେ ସେ କାଳର ଗ୍ରାଜୁଏଟ୍ ଥିଲେ (୧୯୩୦ ପୂର୍ବ) । ଇଚ୍ଛା କରିଥିଲେ ସେ ବହୁ ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହୋଇପାରିଥାଁନ୍ତେ । ସେ ତାହା ଚାହିଁ ନ ଥିଲେ । କଂଗ୍ରେସ ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗ ଥିଲା । ଗାନ୍ଧୀ-ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, ମଧୁବାବୁଙ୍କ ଆଦର୍ଶରେ ସେ ଅନୁପ୍ରାଣିତ ହୋଇଥିଲେ । ବିଦେଶୀ ବସ୍ତୁ ବର୍ଜନ, ସ୍ୱଦେଶୀ ଆନ୍ଦୋଳନ, ସ୍ୱାଧୀନତା ସଂଗ୍ରାମ ପ୍ରତି ସେ ଆଗ୍ରହୀ ଥିଲେ । ଜୀବନସାରା ସେ ଖଦଡ଼ ବ୍ୟବହାର କରୁଥିଲେ । ତାଙ୍କ

ପ୍ରଣୀତ ଉପନ୍ୟାସ, 'ଅଶ୍ରୁବିନ୍ଦୁ' ଏକ ଉଚ୍ଚକୋଟୀର ପୁସ୍ତକ । ଶ୍ୱଶୁରଙ୍କର ପ୍ରଭାବ ଯେ କେଶବବାବୁଙ୍କ ଉପରେ ପଡ଼ି ନଥିଲା, ଏ କଥା ନୁହେଁ । କାରଣ ସେ ପ୍ରଥମ ଅବସ୍ଥାରେ ଚାକିରି ପଛରେ ନ ଧାଇଁ ଏକ ସାବୁନ୍ କାରଖାନା (କଟକରେ) ପ୍ରତିଷ୍ଠା କରିଥିଲେ । ପରିସ୍ଥିତିର ଚାପରେ ସେ ଏକ୍ସାଇଜ୍ ଅଫିସର ଓ ଶେଷରେ ଜୀବନବୀମା ନିଗମରେ ଡେଭଲପ୍‌ମେଣ୍ଟ ଅଫିସର ପଦରେ ଅଧିଷ୍ଠିତ ହୋଇଥିଲେ । ତା' ସତ୍ତ୍ୱେ ସେ ସାଧାରଣ ଶିକ୍ଷା ଓ ନାରୀ ଶିକ୍ଷାର ପ୍ରସାର ପାଇଁ ବିଦ୍ୟାଳୟ ସ୍ଥାପନ ଦିଗରେ ଆପ୍ରାଣ ଚେଷ୍ଟା କରୁଥିଲେ । ଚିନ୍ତାମଣି ବାଳିକା ବିଦ୍ୟାଳୟ (ଅଥଙ୍ଗା)ର ସେ ସଂପାଦକ ଥିଲେ । ସ୍ଥାନୀୟ କନ୍ଦରପୁର କଲେଜରେ ସେ ସଂପାଦକ ଓ ବିଶିଷ୍ଟ ସଭ୍ୟ ମଧ୍ୟ ଥିଲେ ।

ହେଲେ ଗୋପାଳ ସ୍ମୃତି ବିଦ୍ୟାପୀଠ ପାଇଁ ତାଙ୍କର ତ୍ୟାଗ, ଦାନ ଓ ସାଧନା ଭୁଲିବାର ନୁହେଁ । ସେ କାଳରେ ସରକାରୀ ସାହାଯ୍ୟ ବିନା ଗୋଟିଏ ହାଇସ୍କୁଲ କରିବା ସହଜ ନ ଥିଲା । ମୋର ମନେ ଅଛି, ଶିକ୍ଷକଙ୍କୁ ଦରମା ଦେବା ପାଇଁ ସେ ତାଙ୍କ ଦୋକାନ ଟଙ୍କାକୁ ଖର୍ଚ୍ଚ କରିଦିଅନ୍ତି, ଫଳରେ ବ୍ୟବସାୟ ମାନ୍ଦାପଡ଼େ । ଘରୁ ଗହଣା ନେଇ ବନ୍ଧା ପକାଇ ଶିକ୍ଷକମାନଙ୍କ ବେତନ ଦେଇଥା'ନ୍ତି ।

ସେ କାଳରେ ଘରୋଇ ଗୋପାଳ ସ୍ମୃତି ବିଦ୍ୟାପୀଠ ଓ ବର୍ତ୍ତମାନର ସରକାରୀ ଗୋପାଳ ସ୍ମୃତି ବିଦ୍ୟାପୀଠ ମଧ୍ୟରେ ତାରତମ୍ୟ ଖୁବ୍ ବେଶୀ । ସେ କାଳରେ ପରିଚାଳନା ସମିତିର ସଭାପତି ଥିଲେ ସ୍ୱର୍ଗତ ରତ୍ନାକର ପତି । ସ୍ୱର୍ଗତ ଗୋପବନ୍ଧୁ ଦାଶଙ୍କର ଜ୍ୱାଇଁ ସ୍ୱର୍ଗତ ପତିଙ୍କର ମାନବିକତା, ଆଦର୍ଶ, ଉଦ୍ୟମ, ଅଧ୍ୟବସାୟ, ଉଦାରତା, ଆଇନାନୁବର୍ତ୍ତିତା, ନିଷ୍ଠା ପ୍ରତ୍ୟେକ ଆଦର୍ଶ ଛାତ୍ରର ଅନୁକରଣୀୟ । ଗୋଟିଏ ନିଃସ୍ୱ ବ୍ରାହ୍ମଣ ପରିବାରର ସନ୍ତାନ ନିଜର ସାଧନା ଓ ପ୍ରତିଭା ବଳରେ ସେ କାଳରେ କୃତିତ୍ୱର ସହ ଏମ୍.ଏ. ପାଶ୍ କରି ସରକାରୀ କଲେଜରେ ପ୍ରଫେସର ପଦ ମଣ୍ଡନ କରିବା କିଛି କମ୍ କଥା ନୁହେଁ । ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସିଛନ୍ତି, ସେମାନେ କହିବେ ପ୍ରଫେସର ପତି କିପରି ଉଚ୍ଚକୋଟୀର ସର୍ବଗୁଣସଂପନ୍ନ ବ୍ୟକ୍ତି ଥିଲେ । ସ୍ୱର୍ଗତ କେଶବବାବୁ ଥିଲେ ତାଙ୍କର ଅତି ପ୍ରିୟ, ଅତି ବିଶ୍ୱାସୀ ଛାତ୍ର ଏବଂ ଘରୋଇ ଗୋପାଳ ସ୍ମୃତି ବିଦ୍ୟାପୀଠରେ ଯଦି ବିଶେଷତ୍ୱ ଥିଲା, ତାହା ଏହି ତୁଙ୍ଗ ବ୍ୟକ୍ତିତ୍ୱର ଉଦ୍ୟମ ଓ ଆଶୀର୍ବାଦ ଯୋଗୁଁ । ମୋର ମନେଅଛି, ସେ କାଳର ପରିଦର୍ଶକମାନେ

ବିଦ୍ୟାଳୟ ପରିଦର୍ଶନରେ ଆସିଲେ ରତ୍ନାକର ପତିଙ୍କୁ ଚୌକି ଛାଡ଼ି ଦେଉଥିଲେ । କାରଣ ସେ ଥିଲେ ସେମାନଙ୍କର ପୂଜ୍ୟ 'ସାର୍‌' ।

ଗୋଟିଏ ଛୋଟ ଘଟଣାର ଅବତାରଣା କରି ମୁଁ ମୋର ପ୍ରବନ୍ଧ ସାଙ୍ଗ କରିବି । ସେଥିରୁ ଶିକ୍ଷାନୁଷ୍ଠାନ ଖୋଲିବାରେ ତାଙ୍କର କିପରି ପ୍ରବଳ ବାସନା ଥିଲା, ତାହା ଜଣା ପଡ଼ିବ । ବୋଧହୁଏ ୧୯୭୫/୭୬ ମସିହାରେ ବାଲିମେଲଣ(ବାଲିହାଟ)ର ପ୍ରତିଷ୍ଠା ଦିବସରେ ତାଙ୍କୁ ମୁଖ୍ୟ ଅତିଥି ରୂପେ ନିମନ୍ତ୍ରଣ କରିଥିଲୁ । ସେ ସବୁ କାମ ବାତିଲ କରି ଉକ୍ତ ଉତ୍ସବକୁ ଯାଇଥିଲେ । ସେ ଦିନ ସେ ସ୍ଥାନୀୟ କେଳି କଦମ୍ବ ଉଚ୍ଚବିଦ୍ୟାଳୟ ପରିସରରେ ପହଞ୍ଚିଲେ । ସାଙ୍ଗରେ ଆମେ କେତେଜଣ ଯଥା— ପ୍ରଧାନ ଶିକ୍ଷକ ବାମନ ଚରଣ ଦାସ, ଅନାଥବନ୍ଧୁ ପ୍ରଧାନ, କୈଳାସ ଚନ୍ଦ୍ର ପଟ୍ଟନାୟକ, ✓ଧୂଳମଣି ସ୍ୱାଇଁ, ✓ହରିହର ରଣା, ✓ସୁରେନ୍ଦ୍ର ନାଥ ମହାନ୍ତି ଓ ମୁଁ ରାଧାକୃଷ୍ଣ ପଣ୍ଡା ହାଟର ଉଦ୍ୟୋକ୍ତାଗଣ ଉପସ୍ଥିତ ଥିଲୁ । ସେ କେଳିକଦମ୍ବ ସ୍କୁଲର ଅବସ୍ଥାନ ଓ ପାରିପାର୍ଶ୍ୱିକ ଅବସ୍ଥା ଦେଖି ବିଭୋର ହୋଇ କହିଥିଲେ-- ଏ ଜାଗା ଗୋଟାଏ କଲେଜ ହେବାପାଇଁ ବିଶେଷ ଉପଯୋଗୀ । ଏହା ଶୁଣି ଆମ୍ଭେମାନେ ଉତ୍ସାହିତ ହୋଇଥିଲୁ, ମାତ୍ର ବର୍ତ୍ତମାନର କେଳିକଦମ୍ବ ସ୍କୁଲର ପରିଚାଳନା, ଅଧ୍ୟାପନା, ଶୃଙ୍ଖଳା, ପୂଜ୍ୟପୂଜାକୁ ଚିନ୍ତା କଲେ, କଲେଜ ତ କଲେଜ ଯେଉଁମାନେ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ, ସେମାନେ ଭୁଲ କରିନାହାନ୍ତି ତ ?

ପରିଶେଷରେ କେଶବବାବୁଙ୍କର ସମ୍ବନ୍ଧରେ ଏତିକି କହିଲେ ସମୀଚୀନ ହେବ ।

*"ମାନବ ଜୀବନ ନୁହଁଇ କେବଳ*
*ବର୍ଷ, ମାସ, ଦିନ, ଦଣ୍ଡ*
*କର୍ମେ ଜୀଏଁ ନର କର୍ମ ଏକା ତାର*
*ଜୀବନର ମାନଦଣ୍ଡ ।"*

*ଅବସରପ୍ରାପ୍ତ ଶିକ୍ଷକ,*
*ଗୋପାଳ ସ୍ମୃତି ବିଦ୍ୟାପୀଠ, ସିଦ୍ଧେଶ୍ୱରପୁର*



# କିଛି ସ୍ମୃତି କିଛି ଅନୁଭୂତି

✦ ଡାକ୍ତର ବ୍ରଜସୁନ୍ଦର ମିଶ୍ର

ଗୋପାଳ ସ୍ମୃତି ବିଦ୍ୟାପୀଠର ପୁରାତନ ଛାତ୍ର ହିସାବରେ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦଙ୍କର କିଛି ସ୍ମୃତି ମୋର ମନେଅଛି । ତା' ସହିତ ମୋର ବ୍ୟକ୍ତିଗତ ଅନୁଭୂତି ମଧ୍ୟ କିଛି ଅଛି । ଆଜି ତାଙ୍କର ପ୍ରଥମ ଶ୍ରାଦ୍ଧ ଦିବସରେ ମୁଁ ତାଙ୍କୁ ଏଇ ଭକ୍ତିଅର୍ଘ୍ୟ ଅର୍ପଣ କରିବାର ସାମାନ୍ୟ ଚେଷ୍ଟା କରିଛି ।

ଭାଗବତରେ ଅଛି 'ପ୍ରାଣୀର ଭଲ ମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।' ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦଙ୍କର ଭଲ ଗୁଣ ଅନେକ ଥିଲା । ମନ୍ଦ ଗୁଣ କ'ଣ ଥିଲା ତାହା ମୋର ମନେନାହିଁ । ବୋଧହୁଏ ଭଲଗୁଣ ତୁଳନାରେ ତାହା ଯଥେଷ୍ଟ କମ୍ । ମୋ ଜାଣିବାରେ ସେ ଥିଲେ ସ୍ୱଳ୍ପଭାଷୀ । ସୁନ୍ଦର କଥା କହିବାର ମାଧୁର୍ଯ୍ୟ ଏପରି ଥିଲା ଯେ ସମସ୍ତେ ସେଥିରେ ମୁଗ୍ଧ ହୋଇଯାଉଥିଲେ । ମୁଁ ବିଦ୍ୟାଳୟର ଛାତ୍ର ଥିଲା ବେଳେ ସେ ଥିଲେ ଏହି ବିଦ୍ୟାଳୟର ସଂପାଦକ ଓ ସ୍ୱର୍ଗତ ରତ୍ନାକର ପତି ଥିଲେ ସଭାପତି । ସେଇଭଳି ଅସାଧାରଣ ବ୍ୟକ୍ତିତ୍ୱ ନ ଥିଲେ ପତି ମହାଶୟଙ୍କ ସହକର୍ମୀ ହେବା ବା ତାଙ୍କ ସହ କାମ କରିବା ସହଜ ନ ଥିଲା ।

ଏଇଠି ପୁରାଣ ଯୁଗର ଗୋଟିଏ କଥା ମନେପଡ଼େ । ମହାଭାରତ ଯୁଦ୍ଧରେ ଯେତେବେଳେ ଜ୍ଞାତି-ପରିଜନଙ୍କ ସହ ଯୁଦ୍ଧ କରିବାକୁ ହେବ ଦେଖି ଅର୍ଜୁନ ଅସ୍ତ୍ର ତ୍ୟାଗ କରିବାକୁ ପ୍ରସ୍ତୁତ, ସେତେବେଳେ ଭଗବାନ ଶ୍ରୀକୃଷ୍ଣ ତାଙ୍କୁ ବୁଝାଉଥିଲେ ଯେ ଏହି ଧର୍ମଯୁଦ୍ଧରେ ସତ୍ୟର ପକ୍ଷ ନେଇ ଯୁଦ୍ଧ କରିବା ତାଙ୍କର କର୍ତ୍ତବ୍ୟ । ତାଙ୍କୁ ମାଧ୍ୟମ କରି ଭଗବାନ ସତ୍ୟର ବିଜୟ ପାଇଁ କ୍ଷେତ୍ର ପ୍ରସ୍ତୁତ କରିସାରିଛନ୍ତି । ସେ ନହେଲେ ଆଉ କାହାକୁ ମାଧ୍ୟମ ରୂପେ ନିର୍ବାଚନ କରାଯିବ । ତା'ପରେ ଅର୍ଜୁନ ଅସ୍ତ୍ର ଧାରଣ କରି ଯୁଦ୍ଧ କ୍ଷେତ୍ରରେ ପ୍ରବେଶ କଲେ ।

ଏହି କଥାର ତାତ୍ପର୍ଯ୍ୟ ଏହି ଯେ କର୍ମୀ ହେବାର ଯୋଗ୍ୟତା କେବଳ ଜଣ ଜଣଙ୍କ ମଧ୍ୟରେ ରହିଥାଏ, ଯେଉଁମାନେ ମାଧ୍ୟମ ରୂପେ କାର୍ଯ୍ୟ କରନ୍ତି । ସେହିଭଳି ରତ୍ନାକର ପତି ମହାଶୟ ସ୍ୱର୍ଗତ ନନ୍ଦଙ୍କଠାରେ ଏଭଳି କିଛି ଦେଖିଥିଲେ, ଯାହା ଫଳରେ କି ସେ ତାଙ୍କୁ ନିଜର ସହକର୍ମୀ ରୂପେ ବାଛିଥିଲେ । ସେତେବେଳେ ଗୋଟିଏ ହତା ମଧ୍ୟରେ ଦୁଇଟି ସ୍କୁଲ ଥିଲା । ଗୋଟିଏ ହେଉଛି ଲକ୍ଷ୍ମୀନାରାୟଣ ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ଅନ୍ୟଟି ହେଉଛି ଗୋପାଳ ସ୍ମୃତି ଉଚ୍ଚ ବିଦ୍ୟାଳୟ । ଏହି ଦୁଇଟି ଅନୁଷ୍ଠାନକୁ ମିଶାଇ ଶେଷରେ ଗୋଟିଏ ବିଦ୍ୟାଳୟ କରାଗଲା, ଯାହାର ନାଁ ରଖାଗଲା 'ଗୋପାଳ ସ୍ମୃତି ବିଦ୍ୟାପୀଠ' । ଏଥିପାଇଁ ସ୍ୱର୍ଗତ ନନ୍ଦଙ୍କର ଚେଷ୍ଟା ଭୁଲିବାର ନୁହେଁ ।

କେବଳ ଗୋପାଳ ସ୍ମୃତି ବିଦ୍ୟାପୀଠ ନୁହେଁ, ଅଥଙ୍ଗା ବାଳିକା ବିଦ୍ୟାଳୟ ଏବଂ କନ୍ଦରପୁର ମହାବିଦ୍ୟାଳୟ ଅନୁଷ୍ଠାନଗୁଡ଼ିକ ମଧ୍ୟ କେଶବବାବୁଙ୍କର ଚେଷ୍ଟାରେ ଗଢ଼ି ଉଠିଥିଲା । ଅନେକ ନିନ୍ଦୁକ ତାଙ୍କ ଉପରକୁ କାଦୁଅ ଛିଟା ମାରିବାର ଅପଚେଷ୍ଟା ମଧ୍ୟ କରିଥିଲେ, ମାତ୍ର 'ନିନ୍ଦନ୍ତୁ ନୀତି ନିପୂଣା ଯଦି ବା ସ୍ତୁବନ୍ତୁ ... ନ୍ୟାଯ୍ୟାତ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ' ବାକ୍ୟଟିର ଯଥାର୍ଥତା ସେ ପ୍ରତିପାଦିତ କରିଥିଲେ । ଅର୍ଥାତ୍ କାହାରି ନିନ୍ଦା ବା ପ୍ରଶଂସାରେ ବିଚଳିତ ନ ହୋଇ ତାଙ୍କର କର୍ତ୍ତବ୍ୟ ଅବିଚଳିତ ଭାବେ ସେ କରିଯାଉଥିଲେ । ତାଙ୍କର ସେବା ମନୋବୃତ୍ତି ବାସନାରହିତ ହୋଇଥିବାରୁ ତାହାର ବାସ ସମାଜକୁ ଉଦ୍‌ବୁଦ୍ଧ କରୁଥିଲା ।

ସେତିକିବେଳର ଗୋଟିଏ କଥା ମୋର ଆଜି ମନେ ପଡୁଛି । ୧୯୫୯ ମସିହାର କଥା । ମୁଁ ମାଟ୍ରିକ୍ ପରୀକ୍ଷା ଦେଇଥାଏ । ସେତେବେଳେ ପରୀକ୍ଷାଫଳ ଏବଭଳି ବହି ଆକାରରେ ବାହାରୁ ନ ଥିଲା । ସେକେଣ୍ଡାରୀ ବୋର୍ଡ଼ ଅଫିସ ଥାଏ ଆଜିକାର ଖ୍ରୀଷ୍ଟ ମହାବିଦ୍ୟାଳୟ ସାମନାରେ । ସେଠାରେ ନୋଟିସ ବୋର୍ଡରେ ପରୀକ୍ଷାଫଳ ମାରିଦିଆଯାଏ ଓ ଅନ୍ୟମାନେ ତାକୁ ଦେଖି ନିଜର ଫଳାଫଳ ଜାଣନ୍ତି । କିନ୍ତୁ ଅନେକ ସମୟରେ ପିଲା ବା ଅଭିଭାବକମାନେ ସଂପୂର୍ଣ୍ଣ ଫଳ ବାହାରିଥିବା ନୋଟିସ୍‌କୁ ଚିପି ନେଇଯା'ନ୍ତି ଅନ୍ୟମାନଙ୍କର ଫଳ ଦେଖିବା ନିମନ୍ତେ । ସେଦିନ ସକାଳୁ ମୁଁ ସାଇକେଲ୍ ଯୋଗେ ନନ୍ଦ ମହାଶୟଙ୍କ ଘରକୁ ଗଲି । ତାଙ୍କର ନିର୍ଦ୍ଦେଶ ଥିଲା କଟକରେ ପରୀକ୍ଷାଫଳ ଦେଖି ମୁଁ ସିଧା ତାଙ୍କ ଗ୍ରାମ ସିଦ୍ଧେଶ୍ୱରପୁର ଯିବି

ଏବଂ ତା'ପରେ ନିଜ ଘରକୁ ଯିବି । ମୁଁ ସେଇଆ କଲି । ପରୀକ୍ଷା ଫଳ ଧରି ତାଙ୍କ ଘରେ ପହଞ୍ଚିବା ବେଳକୁ ଖରାଦିନ ଖରାବେଳ । ସେ ଅପେକ୍ଷା କରି ବସିଥିଲେ । ମୋର ସଫଳତାରେ ଅତ୍ୟଧିକ ଆନନ୍ଦିତ ହୋଇ ସେ ମୋତେ ଖାଇବାକୁ ଦେଲେ । ସେ ଖାଦ୍ୟର ସ୍ୱାଦ ଆଜି ବି ମୁଁ ଭୁଲିନାହିଁ । ପରବର୍ତ୍ତୀ ଜୀବନରେ ମୁଁ ଡାକ୍ତର ହେବା ପରେ ତାଙ୍କର ସୁଯୋଗ୍ୟ ପୁତ୍ର ତାଙ୍କୁ ଯେତେବେଳେ ମୋ ଚିକିତ୍ସାରେ ରଖୁଥିଲେ, ମୁଁ ନିଜକୁ ଧନ୍ୟ ମଣୁଥିଲି । ମୁଁ ଯେଉଁଭଳି ଚିକିତ୍ସା କଲେ ମଧ୍ୟ ତାଙ୍କର ମୋ ଉପରେ ଅଖଣ୍ଡ ବିଶ୍ୱାସ ଥିଲା ।

ଆଜି ଭାବୁଛି, ଏଭଳି ବ୍ୟକ୍ତିତ୍ୱ ସଂପର୍କରେ ଯଦି ନ ଆସିଥା'ନ୍ତି, ବୋଧହୁଏ ମୋ ଜୀବନରେ ଏକ ମହାନ ଅନୁଭୂତି ଲାଭ କରି ନଥା'ନ୍ତି । ✣

*କୋସିଦା,*
*ପୁରାତନ ଛାତ୍ର, ଗୋପାଳ ସ୍ମୃତି ବିଦ୍ୟାପୀଠ*



ସ୍ୱର୍ଗତ ନନ୍ଦ ନିଜର ପାଞ୍ଚପୁଅଙ୍କ ସହିତ

# ସ୍ମୃତି ସ୍ତୂପରୁ ଚେନାଏ

✦ ଶ୍ରୀମତୀ ପ୍ରେମଲତା ଆଗ୍ରର୍ଯ୍ୟ

*"ରହି ନାହିଁ କେହି ରହିବେ ନାହିଁ ଟି ଭବ ରଙ୍ଗଭୂମି ତଳେ*
*ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।"*

ମନରେ ପ୍ରଶ୍ନ ଉଠେ-- ସତରେ କ'ଣ ମନୁଷ୍ୟ ଜୀବନଟା ଏଇଥିପାଇଁ ଯେ, ସେ ଏହି ଦୁନିଆ ରଙ୍ଗମଞ୍ଚରେ ଅଭିନୟ କରି ଶେଷରେ ଏ ମର ଜଗତରୁ ବିଦାୟ ନେବ ? ଜୀବନ ତ ନିଶ୍ଚୟ ମରଣଶୀଳ । ହେଲେ ସେହି ଜୀବନକୁ କୌଣସି ପ୍ରକାର ବଞ୍ଚେଇ ହେବନି ? ଅମର କରି ହେବନି ?

*"ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ,*
*କର୍ମେ ଜୀଏଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।"*

ସତରେ ମର ଜୀବନରେ ମନୁଷ୍ୟ ନିଶ୍ଚୟ ଅମର ହୋଇ ରହି ପାରିବ । କର୍ମ ହିଁ ଅମର କରିପାରେ । ହେଲେ କର୍ମର ମୂଲ୍ୟ କ'ଣ ମଣିଷ ବୁଝେ ? ସତ୍ ଅସତ୍ କ'ଣ ସେ ବିଗ୍ରର କରେ ? ସ୍ୱାର୍ଥ, ପରମାର୍ଥର ମୂଲ୍ୟବୋଧ ସେ କ'ଣ ବିବେଚନା କରେ ? ସେହି ମନୁଷ୍ୟ, ଯିଏ ମର ଦେହରେ ଅମର ହୋଇଯାଏ, ସିଏ ପରମାର୍ଥ ଜୀବନ ବିୟୋଗ କରିଥାଏ । ଆତ୍ମସତ୍ତାକୁ ଜାଗ୍ରତ କରାଇ ଦେଶର ସମାଜର କିଛି କାମ କରିଯାଏ । ସେହି କର୍ମଯୋଗୀ ହିଁ ବାସ୍ତବରେ ଅମର ହୋଇ ରହେ । ସେହିପରି ଜଣେ କର୍ମଯୋଗୀ ଥିଲେ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ । ଯିଏ ଗାଁରେ ଶିକ୍ଷାର ଆଲୋକ ଦେବାକୁ ଯାଇ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଶିକ୍ଷାକୁ ସେ ସର୍ବାପେକ୍ଷା ଅଧିକ ମହତ୍ତ୍ୱ ଦେଉଥିଲେ । ତାଙ୍କରି ଉଦ୍ୟମରେ ଗଢ଼ି ଉଠିଛି "ସିଦ୍ଧେଶ୍ୱରପୁର ଗୋପାଳ ସ୍ମୃତି ବିଦ୍ୟାପୀଠ" ୧୯୪୮ ମସିହାରେ ଓ ନାରୀ ଶିକ୍ଷାର ଉନ୍ନତିକଳ୍ପେ ଅଥଙ୍ଗା "ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର"

୧୯୬୩ ମସିହାରେ ପୁଣି କନ୍ଦରପୁର କଲେଜ । ହେଲେ ଏଥିପାଇଁ ଯଥେଷ୍ଟ ଅର୍ଥର ଆବଶ୍ୟକ ଥିଲା ।

ସେ ଥିଲେ ସଚ୍ଚୋଟ ଏକ୍‌ସାଇଜ ଇନ୍‌ସପେକ୍ଟର । ଏ ଚାକିରି ମଧ୍ୟ ତାଙ୍କୁ ସୁହାଉ ନଥିଲା । କାରଣ ସେ ଅର୍ଥପ୍ରିୟ, ଲାଞ୍ଚନେବା ତଥା ଦୁର୍ନୀତି କରିବା ଲୋକ ନଥିଲେ । ତାଙ୍କ ଭଳି ଜଣେ ସଚ୍ଚୋଟ ଲୋକ ବୁଝିଥିଲେ ଭୋଗ ଆମେ କରୁନାହିଁ, ଭୋଗ ଆମକୁ ଭୋଗ କରେ । ଭୋଗକୁ ଭୋଗ କରି କେବେ ତୃପ୍ତି ମିଳେନା; ବରଂ ଇଚ୍ଛା ଶକ୍ତି ଆହୁରି ବଳବତ୍ତର ହୋଇ କୁପଥଗାମୀ କରାଏ । ସେ ଚାକିରିରୁ ଇସ୍ତଫା ଦେଇଦେଲେ । ଘରେ ରହିଲେ । ସମୟ ଦେଇ ଅନ୍ୟ କେତେଜଣ କର୍ମନିଷ୍ଠ ବ୍ୟକ୍ତିଙ୍କୁ ସାଙ୍ଗରେ ନେଇ ଘର ଘର ବୁଲି ଟଙ୍କା ଆଦାୟ କରିଥିଲେ । ସ୍କୁଲର ସଂପାଦକ ମଧ୍ୟ ଥିଲେ । ଏ ସବୁ ଶ୍ୱଶୁରଙ୍କଠାରୁ ଶୁଣିବାକୁ ପାଇଥିଲି । ହେଲେ ଏଥିପାଇଁ ତାଙ୍କ ସହଧର୍ମିଣୀଙ୍କର ଅବଦାନ ଥିଲା ଅନେକ । ସେ ଘରର ଯାବତୀୟ ଭଲମନ୍ଦ ସମସ୍ୟା ବା ଘର ଚଳାଇବାର ଭାର ନିଜେ ବହନ କରୁଥିଲେ । ସେ ଆମର ବନ୍ଧୁ ଥିଲେ । ଆମେ ତାଙ୍କୁ କକେଇ ବୋଲି ସମ୍ବୋଧନ କରୁଥିଲୁ । ଆମେ ପିଉସୀନାନୀ ବୋଲି ଦୁର୍ଗାନାନୀଙ୍କୁ ଡାକୁଥିଲାବେଳେ, ଶ୍ୱଶୁରଙ୍କ ମାମୁ ପୁଅ ଭାଇ ବୋଲି ୰କେଶବ ନନ୍ଦଙ୍କୁ ଆମେ କକେଇ ସଂବୋଧନ କରୁଥିଲୁ ।

ସିଦ୍ଧେଶ୍ୱରପୁରର କୃଷ୍ଣଚନ୍ଦ୍ର ନନ୍ଦ ରହୁଥିଲେ ଗାଁ ନିକଟରେ ଥିବା କମାପୁରରେ ଘରକରି । କୃଷ୍ଣଚନ୍ଦ୍ର ନନ୍ଦ ଥିଲେ ଦର୍ପଣୀ ରାଜାଙ୍କର ଦେବାନ । ତାଙ୍କ ପୁତ୍ର ଶ୍ରୀ କେଶବ ଚନ୍ଦ୍ର ନନ୍ଦ । କେଶବ ଚନ୍ଦ୍ର ନନ୍ଦଙ୍କ ପିଉସୀ ସରସ୍ୱତୀ ଦେବୀ, ମୋ ଶ୍ୱଶୁର ପଦ୍ମନାଭ ଆଗ୍ରେର୍ଯ୍ୟଙ୍କ ବୋଉ ଥିଲେ । ପୁଣି କେଶବ [redacted]ଚନ୍ଦ୍ର ନନ୍ଦ ବିବାହ କରିଥିଲେ ମୋ ଶ୍ୱଶୁରଙ୍କ କକେଇ ବଟକୃଷ୍ଣ ପ୍ରହରାଜଙ୍କ ଝିଅ ଦୁର୍ଗା ଦେବୀଙ୍କୁ-- ଏମିତି ସେ ଥିଲେ ଆମର ଦୁଇଆଡୁ ବନ୍ଧୁ ।

୧୯୫୫ ମସିହାରେ ସତରବର୍ଷ ବୟସରେ ବୋହୂ ହୋଇ ଆସିଥିଲି ପଦ୍ମନାଭ ଆଗ୍ରେର୍ଯ୍ୟଙ୍କ ଦ୍ୱିତୀୟପୁତ୍ର ଦୁଃଖୀଶ୍ୟାମ ଆଗ୍ରେର୍ଯ୍ୟଙ୍କୁ ବିବାହ କରି । ଆସିବାର ମାତ୍ର କେତେଦିନ ପରେ ମୁଁ କକେଇଙ୍କୁ ଜାଣିବାର ସୌଭାଗ୍ୟ ଲାଭ କରିଥିଲି । ସେ ଆମ ଘରକୁ ଆସନ୍ତି । ତାଙ୍କ ବାପା କୃଷ୍ଣଚନ୍ଦ୍ର ନନ୍ଦଙ୍କୁ ମୋ ବାପା ଜାଣିଥିଲେ । କାରଣ ଆମ ଛତିଆ ନନ୍ଦଘର ଦର୍ପଣୀରେ ଅନେକ ଚାଷ ଜମି ଥାଏ । ବାପା

ଦର୍ପଣା ଯାଉଥିଲେ । ତେଣୁ ମୋ ବାପା ରସାନନ୍ଦ ନନ୍ଦ କୃଷ୍ଣଚନ୍ଦ୍ର ନନ୍ଦଙ୍କୁ ଚିହ୍ନିବା ସହିତ କକେଇଙ୍କୁ ମଧ୍ୟ ଜାଣିଥିଲେ । ବାପା ସିଦ୍ଧେଶ୍ୱରପୁର ଆସି କକେଇଙ୍କ ସାଙ୍ଗରେ ଦେଖାହେଲେ କେତେକଥା ହୁଅନ୍ତି । କକେଇଙ୍କ ବାପା କୃଷ୍ଣଚନ୍ଦ୍ର ନନ୍ଦ କେମିତି ହାତୀ ଉପରେ ବସି ପ୍ରଜାଙ୍କ ପାଖକୁ ଯାଆନ୍ତି, ବାପା ସେ କଥା କହନ୍ତି । ମୋ ବାପାଙ୍କର କକେଇ ଚିହ୍ନା ଜାଣି ମୋତେ କକେଇଙ୍କୁ ଭାରି ଭଲ ଲାଗେ ।

କକେଇ ଆମ ଘର ଆଗ ରାସ୍ତାଦେଇ ତାଙ୍କ ଘରକୁ ଯାଆନ୍ତି । କେବେ ଝରକାବାଟେ ଦେଖି ବୋଉ ଡାକନ୍ତି । କେବେ ସେ ଆସି ନନା ବୋଉଙ୍କ ସାଙ୍ଗରେ କଥା ହୋଇ ଯାଆନ୍ତି । ସେ ଆସିଲେ ବୋଉ ମୋତେ ଡାକନ୍ତି । ମୁଁ ମୁଣ୍ଡରେ ଓଢ଼ଣା ପକାଇ ମୁଣ୍ଡିଆ ମାରେ । ବୋଉ କହନ୍ତି, ଗ୍ୱ' ଆଣି ଦିଏ । ଆଜି ତାଙ୍କ ସ୍ମୃତିସ୍ମରଣ କଲାବେଳେ ମୋ ଆଖି ଆଗରେ ଧାଁ ଦଉଡ଼ ଲଗାନ୍ତି ୧୯୫୫ ଠାରୁ ୨୦୦୫ ଯାଏ କେତେ ଘଟଣା । ସେ ସମୟର ସ୍ନେହ, ମମତା, ଆତ୍ମୀୟତା ଆଜି ସବୁ ସ୍ୱପ୍ନ ଭଳି ଲାଗେ ।

ଦିନେ ମଧ୍ୟାହ୍ନ ଓ ଅପରାହ୍ନର ମଧ୍ୟବର୍ତ୍ତୀ ସମୟ । ଆମ ନଡ଼ିଆ ଘରେ (ଘରର ନାମ) ବୋଉ-ଆଉ ଗାଁର ଦୁଇତିନି ଜଣ ନାନୀ ବସି ତାସ ଖେଳୁଥା'ନ୍ତି । ନନା ପାନଡ଼ାଲା ପାଖରେ ପାନ ଭାଙ୍ଗୁ ଥା'ନ୍ତି । କକେଇ ଘରକୁ ପଶି ଆସିଲେ । ମୁଁ ଲୁଗାପଟା ତୋଳି ଘରକୁ ଆଣୁଥାଏ । କକେଇଙ୍କୁ ବୋଉ ବସିବାକୁ କହିଲେ । ନନା ମଧ୍ୟ ପାନଭାଙ୍ଗି ସାରି ଖଟ ଉପରେ ବସିଲେ । ମୁଁ ଲୁଗାତକ କୋଠା ବାରଣ୍ଡା ତାରରେ ପକେଇ ଦେଇ କକେଇଙ୍କୁ ମୁଣ୍ଡିଆ ମାରି ଆସିଲି । କକେଇ କହିଲେ ମୋ ଶ୍ୱଶୁରଙ୍କୁ , ''ଏଇକ୍ଷିଣା ଉଷା (ମୋ ଡାକ ନାଁ) ଗ୍ୱ' ଘେନି ଆସିବ । ଖରାରୁ ଆସିଲି ଗ୍ୱହା ପିଇବାକୁ ଇଚ୍ଛା ହେଉନି ।''

ମନ ହଉଥିଲା, ପଗ୍ୱରିଥା'ନ୍ତି ସରବତ ଆଣିବି କି କକେଇ ? ଏ ପର୍ଯ୍ୟନ୍ତ ମୁଣ୍ଡରୁ ଗ୍ୱଖଣ୍ଡେ ଓଢ଼ଣା କମି ନ ଥାଏ, କଥା ହେବା ଦୂରର କଥା । ହେଲେ ବୋଉ କହିଲେ, ''ଯା' କକେଇ ପାଇଁ ସରବତ କରି ଆଣେ ।'' ମୁଁ ଫେରିପଡ଼ିଲା ବେଳକୁ କକେଇ କହିଲେ, ''ଶୁଣ ମା, ଦେଶୀ ସରବତ ଗିଲାସେ ଆଣିବୁ ।''

ମନରେ ହଡ଼ବଡ଼େଇ ଗଲି ମୁଁ । ସିଏ ପୁଣି କ'ଣ ? ନା ଟିକେ ବଡ଼ ପାଟିରେ କଥା କହି ବୋଉକୁ ପଗ୍ୱରି ପାରୁଛି ନା ନନାଙ୍କୁ । ବୋଉ କିଛି ନ

କହୁଣୁ କକେଇ କହିଲେ, "ଆରେ ମା' ତୋଡ଼ାଣୀ ସରବତ ଟିକେ । ବୋଉ ନନାଙ୍କ ହାତରୁ ପାନ ନେବାକୁ ଉଠି ଆସି କହିଲେ-- କକେଇଙ୍କୁ ତୋଡ଼ାଣୀରେ ଲେମ୍ବୁ ଲୁଣ ଦହି ଟିକେ ପକେଇ କଂସା ଗିଲାସରେ ଗିଲାସେ ଆଣି ଦେ ।

ସେ ଦିନ ଠିକ୍ ବାର ମନେପଡୁନି । ହେଲେ ଗୁରୁବାର କି ମଙ୍ଗଳବାର ଥାଏ । ଆମର ଏହି ଦୁଇଦିନ ବୋଉଙ୍କ ଉପାସ ପାଇଁ ତାଙ୍କ ଲାଗି ଅରୁଆ ରନ୍ଧା ହୁଏ । ସେ ଦିନ ଯାହା ଭାତ ବଳିଥିଲା, ପାଣି ପୂରେଇ ଦେଇଥାଏ । ମନେ ମନେ ଭାବୁଥିଲି ଅଭଡ଼ା ତୋଡ଼ାଣୀ ସିନା ପିଅନ୍ତି, ହେଲେ ଏଇ ଭାତ ତୋରାଣୀ । ଅରୁଆ ଭାତକୁ ଟିକେ ଭଲ ଭାବରେ ଚକଟି ଦେଇ ତୋଡ଼ାଣୀ କଂସାରେ ବାଢ଼ିଲି । ଲେମ୍ବୁ, ଲୁଣ, ଦହି ଖଣ୍ଡେ କଞ୍ଚା ଲଙ୍କା ଚକଟିଲି । ପରେ ଡାଲି କରଛୁଲିରେ ଟିକେ ଘିଅରେ ଜିରା ଚିମୁଟାଏ ଭାଜି ସେଥିରେ ପକେଇଲି । ଗୋଟାଏ କଂସା ଗ୍ଲାସରେ ଢାଳି କକେଇଙ୍କୁ ଆଣି ଦେଲି । ପ୍ରଥମ ତୋଡ଼ାଣୀ ସରବତ କରିଛି, ଯଦି ଖରାପ ଲାଗିବ ଲାଜ ମାଡ଼ିବ । ମୁଁ ସରବତ ଗ୍ଲାସ ନେଇ କକେଇଙ୍କ ହାତରେ ଧରେଇଦେଲି । ପିଇ ସାରିଲେ ଗ୍ଲାସ ଆଣିବି ବୋଲି ବାରଣ୍ଡା କାନ୍ଥ ପାଖରେ ଠିଆ ହେଲି । ସେତେବେଳକୁ, ସାରିଆନାନୀ, ରତନାନାନୀ ଆଉ ମାତାନାନୀ ଉଠି ଯାଇଥା'ନ୍ତି । ଖେଳ ବନ୍ଦ ହୋଇଯାଇଥାଏ । କକେଇ ପୂରା ଗ୍ଲାସକ ସରବତ ପିଇଦେଇ କହିଲେ, "ଓଃ କି ଶାନ୍ତି ! ଉଷା ତ ବଢ଼ିଆ ଦେଶୀ ସରବତ କଲା, ସତରେ ଭାଉଜ, ଭାରି ଭଲ ଲାଗୁଥିଲା ।" ଏ ପ୍ରକାର ପ୍ରଶଂସା ଶୁଣି ମନ କୁଣ୍ଢେମୋଟ ହୋଇଯାଉଥାଏ । ସେ ଦିନଟି ଏବେ ବି ମୋ ଆଖି ଆଗରେ ନାଚି ଉଠେ । ସେ ଥିଲା ମୋ ଜୀବନର ପ୍ରଥମ ଦେଶୀ ସରବତ ।

ଦିନ ଯାଏ ସ୍ମୃତି ରହିଯାଏ । ଜୀବନରେ ଶେଷ ନିଃଶ୍ୱାସ ତ୍ୟାଗ କଲା ପର୍ଯ୍ୟନ୍ତ । କେତେବେଳେ ସ୍ମୃତି ସମାଧିସ୍ଥ ହୋଇଯାଏ ତ କେତେବେଳେ ସ୍ମୃତିଗ୍ରହଣ କଲାବେଳେ ଫୁଲ କଢ଼ି ପରି ପ୍ରସ୍ଫୁଟିତ ହୋଇଉଠେ । ଆଜି ସବୁ ଆଖି ଆଗରେ ଗୋଟି ଗୋଟି କରି ନାଚି ଉଠୁଛି । ଆମ ଘରେ ଦୋଳ ଦଶହରା ସବୁ ହୁଏ । ଅଷ୍ଟମୀ ଦିନ ବା ନବମୀ ଦିନ ଗାଁ ଲୋକ ବନ୍ଧୁ ବାନ୍ଧବମାନଙ୍କୁ ଖାଇବାକୁ ଡକାଯାଏ । ଖିଆପିଆ, ପୂଜା ସରିଲେ ସନ୍ଧ୍ୟା ସୁଦ୍ଧା ଆରମ୍ଭ ହୋଇଯାଏ । କକେଇଙ୍କୁ ମଧ୍ୟ ଡକାଯାଏ । କକେଇ ଆସି ପୂଜା ସରୁ ସରୁ ପହଞ୍ଚି ଯାଇଥାଆନ୍ତି । ମୁଁ ସେତେବେଳେ

ଘରେ ଗେ ଁଏ ବୋହୂ ହୋଇଥାଏ । ସମସ୍ତେ ଆସି କୋଠା ବାରଣ୍ଡାରେ ଖାଇ ବସିଲେ ପୁଅମାନେ ଦଉଡ଼ାବଡ଼ି କରନ୍ତି । କକେଇ ଏକୁଟିଆ ଥିବାରୁ ବୋଉ କହିଲେ, "କକେଇଙ୍କୁ ଥାଳିରେ ଏଇ ନଡ଼ିଆ ଘରେ ବାଢ଼ି ଦେ' ।" ମୁଁ କକେଇଙ୍କୁ ବାଢ଼ିଦେଲି । ନନାବୋଉ ସବୁ ସେଇଠି ଥାଆନ୍ତି ।

ଆମ ବାଡ଼ି ପୋଖରୀରୁ ବେଶ୍ ମାଛ ଧରାଯାଏ । ମାଛ ତରକାରି ହୋଇଥାଏ । କକେଇ ଖାଇବାକୁ ବସି ପଡ଼ି କହିଲେ, ମୋ ଶାଶୁଙ୍କୁ, "ଭାଉଜ, ପିତ୍ତ କଡ଼ ଭଜା କାହିଁ ?" ମୋତେ ଏ କଥା ଶୁଣି ଆଶ୍ଚର୍ଯ୍ୟ ଲାଗୁଥିଲା । ପିତ୍ତକଡ଼ ପୁଣି କ'ଣ ? ନା କକେଇ ପିତ୍ତ ଭଜା ଖାଆନ୍ତି ?ବୋଉ କିଛି ନ ବୁଝିଲା ପରି କକେଇଙ୍କୁ ଚାହିଁ ରହିଲେ । ନନା ନଡ଼ିଆ ଘର ଖଟ ଉପରେ ବସିଥାଆନ୍ତି । ନନା ଟିକେ ହସି ହସି କହିଲେ, "ପିତ୍ତକଡ଼ କହିଲେ, ମାଛ ପିତ୍ତ ପାଖରେ ପେଟରେ ଘିମିରି ଭଳି ମେଞ୍ଚାଏ ଜିନିଷଟା ।" ମୁଁ ମୁଣ୍ଡ ତଳକୁ କରି ପଳେଇ ଆସିଲି ନଡ଼ିଆ ଘର ତଳ ପାହାଚକୁ । ବୋଉ କହିଲେ ନନାଙ୍କୁ ଗ୍ରହିଁ, "ତୁମେ ଦି' ଭାଇଙ୍କ ଅଡୁଆ କଥା ତୁମେ ଜାଣିଛ ।" ନନା ମୋତେ ଡାକି କହିଲେ, "ଆଲୋ ମା' ମାଛ ପେଟରେ ପିତ୍ତ ପାଖରେ ବିହନ ନ ଥାଏ ? ସେ ଘିମିରି ଭଳି ବଗ ବଗ ଦେଖା ଯାଏନି ? କେତେଗୁଡ଼ାଏ ପରା ବିହନ ବାହାରିଥିଲା । ସେହି ଭଜାରୁ ଆଣି ଦେ ।" ମୁଁ ଲାଜେଇ ଯାଇ ବିହନ ଭଜା ପାଇଁ ଆସିଲି । ନନାହେରିକା ହସୁଥିଲେ । ଆମ ନନା ଏମିତି ବହୁତ ମଜା କଥା କହନ୍ତି । ହେଲେ କକେଇ ଏମିତି କଥା କହନ୍ତି, ମୋର ଧାରଣା ନ ଥିଲା । ସେଇଦିନ ପ୍ରଥମେ ଜାଣିଲି କକେଇ ବି ଚୁପ୍‌ଚାପ୍ ରହି ମଜା କଥା କହି ଦିଅନ୍ତି ।

ମୁଁ ପ୍ରାୟ ୧୯୬୩ ଯାଏ ଗାଁରେ ଥାଏ । ଦୁର୍ଗାନାନୀ ଥିଲେ ଜଣେ ଶ୍ୱାସ-ରୋଗୀ । ତେବେ ବି ତାଙ୍କର କର୍ତ୍ତବ୍ୟନିଷ୍ଠା ଥିଲା ଅତୁଳନୀୟ । ହେଲେ ସେହି ବର୍ଷ ଦୁର୍ଗାନାନୀ ସମସ୍ତଙ୍କୁ ଛାଡ଼ି ଇହଧାମ ପରିତ୍ୟାଗ କଲେ । କେବଳ ବଡ଼ପୁଅ ଝୁଲୁଙ୍କର ବିବାହକାର୍ଯ୍ୟ ସଂପୂର୍ଣ୍ଣ ହୋଇସାରିଥିଲେ ମଧ୍ୟ ବୁଲୁ, ଶଙ୍କି, ଅରୁଣଙ୍କ କଥା ଗୋଟାଏ ପ୍ରକାର । କିନ୍ତୁ ସାନପୁଅ ସାଲୁ ସାନ ଥିଲେ । କକେଇଙ୍କ ଉପରେ ପଡ଼ିଲା ଗୋଟିଏ ଶକ୍ତ ଆଘାତ । ଗାଁ ସାରା ଲୋକ ତଥା ପଡ଼ୋଶୀ ଗାଁଲୋକମାନେ ମଧ୍ୟ ଦୁଃଖରେ ଅଭିଭୂତ ହୋଇ ପଡ଼ିଲେ । ସେତେବେଳକୁ ଦୁଇଟି ହାଇସ୍କୁଲ

କରି ସାରି କନ୍ଦରପୁର କଲେଜ୍‌ରେ ହାତ ଦେଇଥିଲେ । ଧନ୍ୟ ସେ କର୍ମଯୋଗୀ । କିଛି ଦିନ ପରେ ପୁଣି କର୍ମ ପଥରେ ଅଗ୍ରସର ହେଲେ । ତାଙ୍କର ଧୈର୍ଯ୍ୟ ଥିଲା ଅତୁଳନୀୟ ।

ଦିନ ମାସ ବର୍ଷ ହୋଇ ସମୟ ଗଡ଼ି ଚାଲିଲା । ମୋର ପୁଅ ଝିଅ ଚାରୋଟି ହୋଇ କିଛିଟା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା । ମୋ ସ୍ୱାମୀ ଜଣେ ଷ୍ଟେଟ୍ ଟ୍ରାନ୍ସପୋର୍ଟ ଅଫିସର ଏକାଉଣ୍ଟେଟ୍ ଥିଲେ । ସେତେବେଳେ ବା କେତେ ଦରମା । ସରକାର ସେତେବେଳେ ରାଷ୍ଟ୍ରଭାଷା ହିନ୍ଦୀ ପାଇଁ ଜୋର ଦେଉଥିଲେ । ପ୍ରତି ହାଇସ୍କୁଲରେ ହିନ୍ଦି ଶିକ୍ଷକ ପଦବୀ ଖୋଲା ହୋଇଥିଲା । ଆଗରୁ ମୁଁ ରାଷ୍ଟ୍ରଭାଷା ରତ୍ନ ପାଶ୍ କରିଥାଏ । କେତେ ଜଣଙ୍କ ପ୍ରେରଣାରେ ଚାକିରି କରିବାକୁ ଆଗ୍ରହ ହେଲା । ନନା ବୋଉ ମଧ୍ୟ ଉତ୍ସାହିତ କଲେ । ସେତେବେଳେ ଆମେ କଟକରେ ରହୁଥାଉ । ସେତେବେଳେ ହିନ୍ଦି ଟ୍ରେନିଂ କଲେଜ କଟକରେ ଥାଏ । ଟ୍ରେନିଂ ନେବାକୁ ହେଲେ ଗୋଟାଏ ସ୍କୁଲର ଅଭିଜ୍ଞତାର ପ୍ରମାଣ ପତ୍ର ଦରକାର । ସେତେବେଳକୁ ଅଥଙ୍ଗାରେ ବାଳିକା ହାଇସ୍କୁଲ ତିଆରି ସରିଥାଏ । ମୁଁ କକେଇଙ୍କ କଥା କହିଲି । ନନା କକେଇଙ୍କୁ ସେହିକଥା କହିଲେ । କକେଇ ଭାରି ଖୁସି ହୋଇଗଲେ । କହିଲେ, ''ମୋ ବୋହୂ ପାଇଁ ମୁଁ ଏତକ କରିପାରିବିନି ।'' ସେ ଦିନ ମୁଁ ଗାଁରେ ଥାଏ । ନଡ଼ିଆ ଘର ଝରକା ପାଖରେ କକେଇ କଥାବାର୍ତ୍ତା ହୋଇ ଗଲେ । ୧୯୭୬ ମସିହା, ଜୁନ୍ ମାସର କଥା ଇଏ । କକେଇ ତା' ପରଦିନ ଆଣି ସାର୍ଟିଫିକେଟ୍ ଦେଲେ । ଜୁଲାଇରେ ହିନ୍ଦୀ ଟ୍ରେନିଂ କଲେଜରେ ନାମ ଲେଖାଇଲି । ଆମ ବସା ପାଖକୁ ଟ୍ରେନିଂ କଲେଜ ଅଳ୍ପ ବାଟ । ମୁଁ ସବୁ ପିଲାଙ୍କୁ ସ୍କୁଲ ପଠାଇ ନିଜେ ଚାଲି ଚାଲି ଯାଉଥିଲି । ସେତେବେଳେ ଷ୍ଟାଇପେଣ୍ଡ ମାସକୁ ଶହେ ଟଙ୍କା ଲେଖାଁ ମିଳୁଥିଲା । ସେ ଟଙ୍କା ମୋ ପିଲାଙ୍କ ଖର୍ଚ୍ଚରେ ଲାଗିଯାଏ । ମୋତେ ସେତେବେଳେ ଜଣାଯାଉଥିଲା ସତେ ଯେପରି କକେଇ ମୋ ହାତକୁ ପିଲାଙ୍କ ଖର୍ଚ୍ଚପାଇଁ ଶହେଟଙ୍କା ଲେଖା ବଢ଼ାଇ ଦେଉଛନ୍ତି । ଅବଶ୍ୟ ସେହି ଟଙ୍କାରେ କକେଇଙ୍କୁ ବୋଉ ଦୋଳକୁ ଡକାଇ ମିଠା ଦେଇ କହିଲେ, ''ତୁମ ବୋହୂ ଟଙ୍କା ମିଠା ।'' ହେଲେ ସେଦିନ କକେଇ କିଛି କାହିଁ ସେ ବିଷୟରେ କହିଲେନି । ସେ ପର୍ଯ୍ୟନ୍ତ ବି କକେଇଙ୍କ ସାଙ୍ଗରେ କଥାବାର୍ତ୍ତା କିଛି କରୁ ନଥିଲି ।

ମନେ ମନେ ଭାବିଲି ନାନାଙ୍କ ମୃତ୍ୟୁ ପରେ କକେଇ ନିଶ୍ଚେ ମର୍ମାହତ ହୋଇପଡ଼ିଛନ୍ତି । କାରଣ ନାନୀ ଥିବାଯାଏ କକେଇଙ୍କ ଉପରେ ବିଶେଷ ଦାୟିତ୍ୱ ନ ଥିଲା ।

ତାଙ୍କରି ସାର୍ଟିପିକେଟ୍ ମୋ ପାଇଁ ଥିଲା ବିଭୂକୃପା ସଦୃଶ । ଫାଷ୍ଟକ୍ଲାସ ଡିଷ୍ଟିଙ୍ଗସନ୍ ପାଇ ପାସ୍ କଲି । ସରକାରୀ ବାଳିକା ହାଇସ୍କୁଲରେ ଗ୍ଚାକିରି ପାଇଲି କେନ୍ଦୁଝର ଟାଉନ୍‌ରେ । କେନ୍ଦୁଝର ଗଲା ପୂର୍ବରୁ ବୋଉ କକେଇଙ୍କୁ ଡକାଇଛନ୍ତି । ମୁଁ ଆସି ମୁଣ୍ଡିଆ ମାରିଲି । ଗ୍ଚାକିରି କଥା ଶୁଣି କକେଇ ଭାରି ଖୁସି ହେଲେ । ସେ ଦିନ ମୋ ମନର ଆନନ୍ଦ ବର୍ଣ୍ଣନାତୀତ । ହେଲେ କକେଇ କହିଲେ, "ଦେଖ ମା' ଗ୍ଚାକିରି ବଡ଼ କଥା ନୁହେଁ । କର୍ତ୍ତବ୍ୟ ଶିକ୍ଷକର ବଡ଼କଥା । ସେଥିକୁ ସବୁବେଳେ ଧ୍ୟାନ ଦେବୁ ।" ସତେକି ସେ ଦିନର ସେ କଥା ଦି' ପଦ ମୋ ମନରେ ଲିପିବଦ୍ଧ ହୋଇ ରହିଗଲା । କେନ୍ଦୁଝରରୁ ଅନେକ ଥର ଛୁଟିରେ ଗାଁକୁ ଆସେ, କକେଇଙ୍କ ସହିତ ଦେଖାହୁଏ । ମୁଣ୍ଡିଆ ମାରେ । ହେଲେ ଅନ୍ୟ ଭଲମନ୍ଦ କିଛି ନାହିଁ । ସେହି ଗୋଟିଏ କଥା-- କର୍ତ୍ତବ୍ୟ ଠିକ୍ କରୁଛୁ ତ ? ସତରେ ସେ ମନପ୍ରାଣ ସବୁ କିଛି ହିଁ ସତ୍ ପ୍ରେରଣା ଦେବାରେ ଓ ଶିକ୍ଷାର ମାନବୀୟବୋଧ ପାଇଁ ନିଯୋଗ କରୁଥିଲେ ।

ସମସ୍ତେ ସଂସ୍କାର ପାଇ ଥାଆନ୍ତି, ପିତାମାତା, ଗୁରୁ ଗୁରୁଜନଙ୍କ ଠାରୁ । ଗୁରୁଜନମାନେ ଆଶୀର୍ବାଦ କରି ପିଲାଛୁଆଙ୍କ ଭଲମନ୍ଦ ଦେହପା' କଥା ବୁଝନ୍ତି । ହେଲେ ମୋ ପାଇଁ ଜଣେ ମାତ୍ର କକେଇ, ଯିଏ କି ଶିକ୍ଷକର ସଚେତନତାକୁ ଦର୍ଶାଉଥିଲେ । ଈଶ୍ୱରଙ୍କ ଆଶୀର୍ବାଦ ଆଉ କକେଇଙ୍କ ପ୍ରେରଣାରୁ ମୁଁ ରାଜ୍ୟପାଳ ପୁରସ୍କାର ପାଇଲି ୧୯୯୦ ଖ୍ରୀଷ୍ଟାବ୍ଦରେ । ପାଇ ସାରିଲାପରେ ଭୁବନେଶ୍ୱରରୁ ସିଦ୍ଧେଶ୍ୱରପୁର ଆସିଲି । ନନା, କକେଇଙ୍କୁ ଡକେଇଲେ । ହେଲେ କକେଇ ସେତେବେଳେ ଗାଁରେ ନଥିଲେ ।

ଆମ ପ୍ରକୃତ ଘରୁ ଆମେ ଆସି ଦାଣ୍ଡକୁ ଲାଗି ବାଡ଼ି ଡିହରେ ଘର କଲୁ । ସେତେବେଳକୁ ଶାଶୁ ଶ୍ୱଶୁର ଏ ଦୁନିଆରେ ନ ଥିଲେ । କକେଇ ସେହି ଦାଣ୍ଡବାଟେ ସବୁଦିନେ ପ୍ରାତଃ ଭ୍ରମଣରେ ଯା'ନ୍ତି । ହାତରେ ଥାଏ ଖଣ୍ଡେ ବାଡ଼ି । ମୁଁ ବାରଣ୍ଡାରୁ ତାଙ୍କୁ ଦେଖି ଦାଣ୍ଡକୁ ଦଉଡ଼ି ଆସି ମୁଣ୍ଡିଆ ମାରେ । କକେଇ ଟିକେ ଠିଆ ହୋଇ

କହନ୍ତି, "ତୁ କୋଉଦିନ ଆସିଛୁ ? ହଉ ଯା' ।" ମୁଁ ତାଙ୍କେ-- କକେଇ ଆସନ୍ତୁ ଘରଆଡ଼େ । କକେଇ କହନ୍ତି, "( ଷା, ଯା' ମା ମୁଁ ପରା ଯାଉଛି ।" କକେଇ ଯା'ନ୍ତି ମୁଁ ଗୃହଁ ରହିଥାଏ । ବୟସ ଯଥେଷ୍ଟ ହୋଇଥିଲେ ମଧ୍ୟ କକେଇଙ୍କ ମୁହଁରେ ଜ୍ୟୋତି ଭରି ରହିଥାଏ ।

ଥରେ ଆସିଲାପରେ ଜାଣିଲି କକେଇ କାହାରିକୁ ହଠାତ୍ ଚିହ୍ନି ପାରୁ ନ ଥା'ନ୍ତି । ସେ ଥର ମୁଁ କେନ୍ଦୁଝରରୁ ଆସିଥାଏ । କକେଇଙ୍କୁ ସକାଳୁ ଦେଖି ତାଙ୍କ ପାଖକୁ ଯାଇ ପ୍ରଣାମ ଜଣାଇଲି । ସେ ଗ୍ଲି ଯାଉଥିଲେ । ମୁଁ କକେଇଙ୍କୁ ଧରି ପକାଇ ପଗ୍ରିଲି, "କକେଇ ମୋତେ ଚିହ୍ନି ପାରୁନାହାନ୍ତି କି ? ମୁଁ ପରା ଉଷା ।" କକେଇ ଏଥରକ ବୋଧେ ଚିହ୍ନିଲେ, କହିଲେ, "ହଉ ଯା ତୁ ଉଷା ।"

ସ୍ମୃତିର ଖଣିକୁ ଉଖାରିଲା ବେଳେ ମନେପଡୁଛି ଆଉ ଗୋଟିଏ ଦିନର ଘଟଣା । ୨୦୦୨ ଫେବୃଆରୀ ମାସ । ମୋ ନାତିର ବ୍ରତଘର । ସମସ୍ତଙ୍କୁ ଡକାଯାଇଥାଏ । କକେଇ ଓ ଶିବ କକେଇ ଆସି ପହଞ୍ଚିଲେ ସନ୍ଧ୍ୟା ପୂର୍ବରୁ । ସେହିଦିନ ପୁଣି କକେଇଙ୍କୁ ବାଢ଼ିଦେବାର ସୌଭାଗ୍ୟ ଜୁଟିଥିଲା । କକେଇଙ୍କୁ ଓ ଶିବ କକେଇଙ୍କୁ ଘରେ ବାଢ଼ିଦେଇଥିଲି । କକେଇ ଖାଇସାରି ହାତ ଧୋଇଲେ । ଗାମୁଛା ହାତ ପୋଛିବାକୁ ଦେଲି । ଟିକେ ବସିଲେ, କହିଲେ, "ଗ୍ରକିରି ସରିଗଲାଣି କହୁଥିଲୁ । କେମିତି ଲାଗୁଛି ।" ମୁଁ କହିଥିଲି-- ନାହିଁ କକେଇ ଆପଣଙ୍କ ପ୍ରେରଣା ଅନୁଯାୟୀ ମୁଁ ଲେଖାଲେଖି କରୁଛି । ତା' ପରେ କକେଇ ଯାଇଥିଲେ ।

ବାସ୍ତବରେ କକେଇ ଥିଲେ ଜଣେ ସାହିତ୍ୟ ସାରଥୀ । ତାଙ୍କ ହୃଦୟରେ ସାହିତ୍ୟ ପ୍ରତି ଥିଲା ଗଭୀର ଶ୍ରଦ୍ଧା । ୧୯୮୯ ମସିହା । ମୁଁ ସେ ବର୍ଷ କଟକରେ ପ୍ରଜାତନ୍ତ୍ର, ବିଷୁବ ମୀନାବଜାର ପୁରସ୍କାର ପାଇ ଆସିଥିଲି । ନନାବୋଉ ଭାରି ଖୁସି । କକେଇଙ୍କୁ ବୋଉ ଡକାଇଲେ । ମୋର ପ୍ରତି ସଫଳତାରେ ବୋଉ କକେଇଙ୍କୁ ଡକାନ୍ତି । କକେଇ ଆସିଲେ । ମୁଁ ଟଙ୍କା ପାଇବା କଥା କହି ସାର୍ଟିଫିକେଟ୍ ଦେଖାଇଲି । ଭାରି ଖୁସି ହେଲେ । କହିଲେ,"ଗୋଟିଏ ପାହାଚରେ ଥକିଯିବୁନି ।" ତାଙ୍କର ଏହି ସାହିତ୍ୟିକ ଭାଷା ମାଧ୍ୟମରେ ମୋ ପାଇଁ ଯେଉଁ ପ୍ରେରଣା, ଆଜି ମୁଁ ଚିନ୍ତା କଲାବେଳକୁ ଉପଲବ୍ଧି କରୁଛି । ଏ ପ୍ରକାର ପଦେ କଥା ମୁଁ କାହା ପାଟିରୁ ଶୁଣି ନ ଥିଲି । କିନ୍ତୁ ଆଜି ମୁଁ ନିଜକୁ ବଡ଼ ଦୋଷୀ ମନେ କରୁଛି । ଆଜି ସ୍ମୃତିର

ଗନ୍ତାଘର ମଧ୍ୟରୁ ତାଙ୍କ ସ୍ମୃତିଗୁଚ୍ଛ ସଜାଡୁ ଥିଲାବେଳେ, ଚିନ୍ତା କରୁଛି ଅନେକ ପୁରସ୍କାର ସହିତ ଆଠ ନଅଟି ବହି ପ୍ରକାଶିତ ହୋଇଥିଲେ ମଧ୍ୟ ମୁଁ ଗୋଟିଏ ବହି ତାଙ୍କ ନାଁରେ ଉତ୍ସର୍ଗ କରିପାରିନି । ସତରେ, ଏ ସଂସାର ମଣିଷକୁ ଏମିତି ଜଞ୍ଜାଳରେ ବାନ୍ଧିଦିଏ, ସତେ ଯେପରି ସିଏ ଅତୁଆ ଖିଅରୁ ନିଜକୁ ମୁକ୍ତ କରିବା କଷ୍ଟ ହୋଇପଡ଼େ । ଅନେକ କିଛି ଭୁଲିଯାଏ—

୨୦୦୪ ଖ୍ରୀଷ୍ଟାବ୍ଦରେ ପ୍ରାୟ ଅନେକ ଥର କକେଇଙ୍କୁ ତାଙ୍କ ବଡ଼ପୁଅ ଝୁଲୁଙ୍କ ସହିତ ଆମ ଦାଣ୍ଡରେ ଗଲାବେଳେ ଦେଖିଛି । କକେଇଙ୍କୁ ଝୁଲୁ ଧରି ଯାଆନ୍ତି । ମୁଁ ଯାଇ ମୁଣ୍ଡିଆ ମାରେ । କିଛି କହନ୍ତିନି । ଚିହ୍ନି ମଧ୍ୟ ପାରନ୍ତିନି । ହଠାତ୍ ତାଙ୍କ ଦେହ ବହୁତ ଖରାପ ହୋଇଗଲା । ସେ ଜମା କିଛି କହି ପାରୁ ନ ଥିଲେ ଭଲ ଭାବରେ । ଦିନେ ମୁଁ ଓ ମୋ ସାନ ଯାଆ ତରୁ ତାଙ୍କ ଘରକୁ ଯାଇଥିଲୁ । ଆମେ ମୁଣ୍ଡିଆ ମାରିଲୁ । ଝୁଲୁଙ୍କ ସହଧର୍ମିଣୀ ମୀରା କକେଇଙ୍କୁ କହୁଥିଲା, "ବାପା ଇଏ କିଏ କହିଲେ ?" ସେ ଜମା କିଛି କହୁ ନଥିଲେ । ମୁଁ ବାରମ୍ବାର କହୁଥିଲି, "କକେଇ ମୁଁ ପରା ଉଷା ।" ସେ ବୋଧେ ଚିହ୍ନି ପାରୁ ନଥିଲେ । ସେଇଟା ମୋ ପାଇଁ ଥିଲା କକେଇଙ୍କୁ ଦେଖିବାର ଶେଷ ଦିନ । ମୁଁ କେନ୍ଦୁଝର ଗଲିଭାରି । ଅଳ୍ପଦିନ ପରେ ବୁବୁ (ମୋ ପୁଅ) ଗାଁରୁ ଫୋନ କରି ଜଣେଇଲା, "ତୁ ଗଲାପରେ କେଶବବାପାଙ୍କ ଦେହ ବହୁତ ଖରାପ ହେଲା । ସେ କଟକ ଯାଇଥିଲେ । ଗୁଲିଗଲେ ।

ବୟସ ହୋଇଥିଲା ଗଲେ । ବଞ୍ଚି ରହି କଷ୍ଟ ଭୋଗିବା ଅପେକ୍ଷା ମୃତ୍ୟୁବରଣ କରିବା ଶତଗୁଣେ ଭଲ । ଏଇଟା ପ୍ରତି ମଣିଷର କାମ୍ୟ । ହେଲେ କକେଇ କ'ଣ ସତରେ ମରିଗଲେ; କିନ୍ତୁ ସେ ତ ମରଣଜୟୀ ! ତାଙ୍କୁ ମାରିବ କିଏ ? ଦୁଇଟା ହାଇସ୍କୁଲ ଗୋଟାଏ କଲେଜ ମଧ୍ୟରେ ଥାଇ ସେ ଚିର ଅମର । ତାଙ୍କର କର୍ମ-ତତ୍ପରତା, ଅନ୍ୟକୁ ସାହାଯ୍ୟ କରିବା ମନୋଭାବ ପାଇଁ ସମସ୍ତେ ତାଙ୍କୁ ମନେ ରଖିବେ । ଜୀବନର ସାୟାହ୍ନରେ ସେ ଲେଖି ଯାଇଥିବା ଉପନ୍ୟାସ ତିନିଖଣ୍ଡ ତାଙ୍କୁ ବଞ୍ଚାଇ ରଖିବ ।

ହେଲେ ସେ ଦିନ ଭାରି ଦୁଃଖ ଲାଗିଥିଲା । ଆଜି ତାଙ୍କ ସ୍ମୃତିଚାରଣ କଲାବେଳେ ଚକ୍ଷୁ ଲୋତକପୂର୍ଣ୍ଣ ହୋଇଯାଉଛି । ତାଙ୍କର ମୋ ପ୍ରତି ସ୍ନେହ,

ସହାନୁଭୂତି, ପ୍ରେରଣା ଅତୁଳନୀୟ । ଆଉ ମୋ କର୍ମମୟ ଜୀବନର ପ୍ରଥମ ପ୍ରେରଣା ଉତ୍ସ ତ ଥିଲେ କକେଇ !

"ଭକ୍ତିର କୁସୁମ ଭରି
ସ୍ମୃତିର ମାଳା ସଜାଡ଼ି
ତୁମ ପାଦ ଯୁଗଳ ସଜାଇ
ଅନ୍ତରେ ନୈବେଦ୍ୟ ଭରି
ଦେଉଛି ଆଜି ମୁଁ ବାଢ଼ି
ଘେନା କର ସ୍ୱର୍ଗପୁରେ ଥାଇ ।"

ସିଦ୍ଧେଶ୍ୱରପୁର

*

୧୯୬୩ ମସିହାରେ ମାତୃବିୟୋଗାନ୍ତେ ସ୍ୱର୍ଗତ କେଶବଚନ୍ଦ୍ର ନନ୍ଦ

# କେଶବବାବୁଙ୍କ ସ୍ମରଣେ

✦ ଶ୍ରୀ ସୁଦର୍ଶନ ଶତପଥୀ

ସେଦିନ ଥିଲା ଡିସେମ୍ବର ମାସ ୧୯୭୮ ମସିହାର କୌଣସି ଏକଦିନ । କନ୍ଦରପୁର କଲେଜରେ ଅଧ୍ୟାପକମାନଙ୍କ ସାକ୍ଷାତକାର ପାଇଁ ଗୋପାଳ ସ୍ମୃତି ବିଦ୍ୟାପାଠରେ ଆମ୍ଭେ ବହୁ ପ୍ରାର୍ଥୀ ଅପେକ୍ଷା କରିଥାଉଁ । ଧୋତି ପଞ୍ଜାବୀ ପରିହିତ କାନ୍ଧରେ ଏକ ଝୁଲାବ୍ୟାଗ ଧରି ପ୍ରାର୍ଥୀମାନଙ୍କ ସୁବିଧା ଅସୁବିଧା ପଚ୍ଛରି ବୁଝୁଥିବା ଏକ ସୌମ୍ୟଦର୍ଶନ ବ୍ୟକ୍ତିଆଡ଼କୁ ସ୍ୱତଃ ସମସ୍ତଙ୍କ ଦୃଷ୍ଟି ଆକର୍ଷିତ ହେଉଥିଲା । କୁହାକୁହି ହେଉଥିଲେ, ସେ ହେଉଛନ୍ତି କଲେଜର ସେକ୍ରେଟାରୀ 'କେଶବ ନନ୍ଦ' । କେବଳ ଯେ ଆଙ୍ଗିକ ସୌନ୍ଦର୍ଯ୍ୟ ସମସ୍ତଙ୍କୁ ଆକର୍ଷିତ କରୁଥିଲା ତା'ନୁହେଁ; ବରଂ ପୋଷାକ ପରିପାଟୀର ସୌଷ୍ଠବତା, କଥା କହିବାର ଶୈଳୀ, ଗାମ୍ଭୀର୍ଯ୍ୟପୂର୍ଣ୍ଣ ବ୍ୟକ୍ତିତ୍ୱ ସମସ୍ତଙ୍କ ମନକୁ ଆକର୍ଷିତ କରିବାର ଏକ ଅବାରିତ ଭାବଧାରା ନିରବଚ୍ଛିନ୍ନ ଗତିରେ ପ୍ରବାହିତ ହେଉଥିଲା । ସ୍ୱର୍ଗତ ବରଦାକାନ୍ତ ମିଶ୍ରଙ୍କ ସଭାପତିତ୍ୱରେ ବୋର୍ଡରେ ସାକ୍ଷାତକାର ଦେଇ ଯେ' ଯୁଆଡ଼େ ଚ୍ଛଲିଗଲୁ ।

ପ୍ରାୟ ୧୦/୧୨ ଦିନ ପରେ ହଠାତ୍ କଟକ ବାଦାମବାଡ଼ି ବସାରେ ସ୍ୱର୍ଗତ କେଶବବାବୁଙ୍କ ଉପସ୍ଥିତି ମୋତେ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ମୋତେ ସେ "ଶତପଥି ବାବୁ' କହି ସମ୍ବୋଧନ କଲେ (ଯେଉଁ ସମ୍ବୋଧନ ଏକମାତ୍ର ତାଙ୍କଠାରୁ ମିଳୁଥିଲା, ଆଉ ହୁଏତ ମିଳି ନ ପାରେ) । ମୁଁ ବସିବାକୁ କହିବା ପୂର୍ବରୁ ସେ ଠିଆଠିଆ କହିଚ୍ଛଲିଲେ, "ଆପଣ ଏତେ ନମ୍ବର ରଖିଛନ୍ତି । ଆମ କଲେଜରେ ତ ରହିଲେ— ଆଉ କେଉଁଠି ପାଇଲେ ଯଦି ଛାଡ଼ି ଚ୍ଛଲିଯିବେ, ଆମ ନୂଆ କଲେଜର ବହୁତ କ୍ଷତି ହେବ । ଆମେ ତ ସେମିତି କିଛି ଦେଇପାରିବୁନି; କିନ୍ତୁ ଆମ ସଙ୍ଗରେ ମିଳିମିଶି କଲେଜକୁ ଗଢ଼ିବାକୁ ପଡ଼ିବ । ପାରିବେ ?" ମୋର ଉତ୍ତର ଥିଲା-- "ଏଇ ପ୍ରଶ୍ନ ହିଁ ଇଣ୍ଟରଭିଉର ଶେଷ ସମୟରେ ବରଦାବାବୁ ପଚ୍ଛରିଥିଲେ ।"

"ହଉ, ଆପଣ ନିଯୁକ୍ତିପତ୍ର ପାଇବା ପରେପରେ ଯୋଗଦେବେ ।" ବାସ୍ ସ୍ରିଲେ, ଆଉ ବସିବାକୁ କହିବାର ପ୍ରୟୋଜନ ନାହିଁ । ୨/୩ ଦିନ ପରେ ନିଯୁକ୍ତିପତ୍ର ମିଳିଲା । ଡିସେମ୍ବର ୧୯ ତାରିଖରେ ଯୋଗଦେବାକୁ ଯିବା ଦିନ ସେ ଅଫିସ ଆଗରେ ଠିଆ ହୋଇଥିଲେ । ଆନ୍ତରିକତାର ସହ ଅଧ୍ୟକ୍ଷଙ୍କ ଅଫିସକୁ ଡାକିନେଲେ । ଏହାପରେ ବହୁ ଛୋଟ ଛୋଟ ଘଟଣାରେ ବି ସେ କଲେଜ ବିଷୟରେ ପଗ୍ରରି ବୁଝନ୍ତି । ୫ ତାରିଖ ହୋଇଗଲା— ଟଙ୍କା ଠିକ୍ ଜୁଟିପାରୁନାହିଁ । ଦରମା କେମିତି ଦେବି । ଗ୍ରଳରୁ ବର୍ଷା ପଡୁଛି, ପିଲା ଓଦା ହେଉଛନ୍ତି । ପରିଗ୍ରଳନା କମିଟିର ସଭ୍ୟ ହିସାବରେ ମୂଳରୁ ତାଙ୍କ କାର୍ଯ୍ୟକାଳ ପର୍ଯ୍ୟନ୍ତ ତାଙ୍କର ସମସ୍ତ ନିଃସ୍ୱାର୍ଥପର ସେବା ମୁଁ ଦେଖିଆସିଲି ।

୧୯୮୩ ରୁ ୮୫ ମସିହା (ଯେତେବେଳେ ସେ ଆଉ ସଂପାଦକ ନ ଥିଲେ) ତାଙ୍କ ଘରେ ତାଙ୍କ ସାନ୍ନିଧ୍ୟରେ ମୋତେ ରହିବାର ସୁଯୋଗ ମିଳିଥିଲା । ମୁଁ ଏକୁଟିଆ । ସେ ବି କିଛିଦିନ ପାଇଁ ଏକୁଟିଆ । କି ନିରଳସ ବ୍ୟକ୍ତିତ୍ୱ ! ଭୋର୍ ୪ଟାରୁ ଉଠିବା, ନିତ୍ୟକର୍ମ, ରୋଷେଇ, ମୂଲିଆ ଠିକଣା କରିବା, ଗ୍ରଷକାର୍ଯ୍ୟ ବୁଝିବା— ଧାନ କୁଟିବା, ନଡ଼ିଆ ତୋଳିବା, ଗାଈ ଦୁହାଁଇବା, ତିନିତିନୋଟି ଘରଡିହର ଗଛ ମାଛ ଦେଖିବା-- ସବୁକିଛି ତାଙ୍କ ତତ୍ତ୍ୱାବଧାନରେ । ଯେମିତି ସେ କର୍ମଯୋଗୀର ଏକ ମୂର୍ତ୍ତିମନ୍ତ ପ୍ରତୀକ । ସବୁକିଛି ଠିକ୍ ସମୟରେ । ନିରଳସ ବ୍ୟକ୍ତିତ୍ୱର ପ୍ରଚଣ୍ଡ ପରିପ୍ରକାଶ । ଆଣ୍ଠୁ ବିନ୍ଧେ— ଖାତିର ନାହିଁ, ସଂଧ୍ୟାରେ ନିଆଁକରି ସେକିହେବେ । ରୋଗ ଯେପରି ତାଙ୍କର ଅଧୀନ । ଗାଈଦୁହାଁ ପରେ କ୍ଷୀର ଦେବା ପାଇଁ ଡାକିବେ । ଉଠି ନଥିଲେ ଡାକରେ ନିଦ ଭାଙ୍ଗେ— ନିଜକୁ ଲଜ୍ୟା ଲାଗେ । ଆଗରୁ ଉଠିଥିବାର ଅଭିନୟ କରିଦିଏ । କ୍ଷୀର ଦେଇ କହନ୍ତି-- ଶତପଥିବାବୁ ଖାଲି କ୍ଷୀର ଦିଅନ୍ତିନି— ଟିକିଏ ପାଣି ମିଶାଇ ଗରମ କରିବେ । ଅବଶିଷ୍ଟ କଞ୍ଚା କ୍ଷୀର ସେଇଠି ଠିଆହୋଇ କେତେଥର ପିଇଦିଅନ୍ତି ସେ ।

ତାଙ୍କ ପାଖରେ ରହିବାର ୩/୪ ଦିନ ପରେ ପଗ୍ରରିଲେ— ଶତପଥିବାବୁ, ଠାକୁର ପୂଜା କରିପାରିବେ ? ମୁଁ ଯେତେବେଳେ 'ହଁ' ମାରିଲି— ସେ ବହୁତ ଖୁସି ହୋଇଗଲେ । ଠାକୁରଙ୍କ ଜିମାଦେଇ କଟକ ଘରକୁ ଯାଆନ୍ତି ସମୟେ ସମୟେ । ଉଠିବା ଆଗରୁ ପହଞ୍ଚିଯା'ନ୍ତି ସାଇକେଲଟିଏ ଧରି । ପ୍ରଥମେ ପଗ୍ରରନ୍ତି-- ଶତପଥିବାବୁ,

ଠାକୁର ପୂଜା କରିଥିଲେ ଟି ? ତା'ପରେ ଅନ୍ୟକଥା, ଗଛରୁ ଝଡ଼ିଥିବା ନଡ଼ିଆ ଦେଲେ କୁହନ୍ତି— ଗଛରୁ ପାଇକରି ମୋତେ ନଡ଼ିଆ କେହି ଦିଅନ୍ତିନି— ହଉ ଦିଅ । କିନ୍ତୁ ଗଛରୁ ତୋଳାହେଲେ ସେ ନଡ଼ିଆ ଦେବାକୁ କେବେ ବି ଭୁଲନ୍ତି ନାହିଁ ।

ଜୀବନବୀମାଟିଏ କରିଥିଲି ତାଙ୍କ ପାଖରେ । ମାସର ପ୍ରଥମ ରବିବାର ଦିନ ସେ ଟଙ୍କା କଥା କହିବେ । ସେଥିରେ ଗୋଟିଏ ୪୦ ପଇସାର ଖୁଚୁରା ଦେବାର ଥାଏ । ତା' ପାଇଁ ୧ ଟଂକା ବା ଆଠଣିଟିଏ ଦିଏ । ମାତ୍ର ଫେରସ୍ତ ୬୦ ପଇସା କିମ୍ବା ୧୦ ପଇସାର ହିସାବ ଥାଏ ତାଙ୍କ ନିକଟରେ । ୪/୫ ଥର ଦେବା ପରେ ତା'କୁ ସେ ହିସାବ କରି, ଯେତେବେଳେ adjust କରନ୍ତି, ମୋତେ ଆଶ୍ଚର୍ଯ୍ୟ ଲାଗେ ଏତେ ଟିକି ଟିକି ହିସାବ କରି କିପରି adjust କରୁଛନ୍ତି । କୁହନ୍ତି-- ଦେଖନ୍ତୁ ହିସାବରୁ ଗୋଟିଏ ପଇସା ବି ଭୁଲହେବା ଉଚିତ୍ ନୁହେଁ ।

ସିଦ୍ଧେଶ୍ୱରପୁର ଉଚ୍ଚ ବିଦ୍ୟାଳୟ, ଅଥଙ୍ଗା ବାଳିକା ଉଚ୍ଚବିଦ୍ୟାଳୟ କରିବା ତ ଶୁଣିଥିଲି । ଅଙ୍ଗେନିଭା କଥା କନ୍ଦରପୁର କଲେଜ ବିଷୟ ଦେଖିଲି । ସେକ୍ରେଟାରୀ ନ ଥାଇ ବି ରାଜକିଶୋର ଦାସ, ଇତିହାସ ଅଧ୍ୟାପକ ଓ ଦିବଂଗତ ଅମିତାଭ ଦାସ, ଅର୍ଥନୀତି ଅଧ୍ୟାପକ, ଯେତେବେଳେ ତାଙ୍କ ଘରେ ରୁହନ୍ତି, ଆସି ପଚାରନ୍ତି କଲେଜ ବିଷୟ । ଭଲମନ୍ଦ ବୁଝନ୍ତି । କିଛି ମନ୍ତବ୍ୟ କରନ୍ତି ନାହିଁ । କଲେଜ ବିଷୟ ବୁଝିବାକୁ ପଚାରିଲେ ମନା କରନ୍ତି— ଆଉ ସେଠାକୁ ଯିବିନି । ମୋ କର୍ତ୍ତବ୍ୟ ଯେତିକି — ସେତିକି କରିଦେଲି । ଆଉ ସବୁ ଅନ୍ୟମାନେ କରିବେ ।

ଥରେ ଜିଦି ଧରିଲେ ତାଙ୍କ ପୁରୁଣା ଡିହକୁ ଲାଗି ଗୋଟିଏ ଡିହ ଅଛି କିଣିବାକୁ । ୩-୪ ଥର ମନାକଲି-- ଏଠାରେ ମୋର ଜାଗା କିଣି ରହିବାର ନାହିଁ । କିନ୍ତୁ ସେ କହିଲେ, "ଦେଖ ଘରଭଡ଼ାରେ ରହିବା ଅପେକ୍ଷା ଦୁଇବଖରା ଘରକରି ରହିବା ଉଚିତ୍ ।" ଲାଗିଲାଗି ଡିହ କିଣାଇଲେ । ମୁଁ ଘରକରି ରହିଲି ତାଙ୍କ ପୁରୁଣା ଡିହ ନିକଟରେ, ଯେଉଁଠି ତାଙ୍କ ବଡ଼ପୁଅ ଶ୍ରୀମାନ୍ ଝୁଲୁବାବୁ, ବର୍ତ୍ତମାନ ଘରକରି ରହୁଛନ୍ତି ।

ସକାଳ ଭ୍ରମଣରେ ଆସିଲେ ଥରେଥରେ ସାକ୍ଷାତ ହୁଏ । ବେଳେବେଳେ କୁହନ୍ତି— ଶତପଥିବାବୁ, ଚାକିରି ଦେଲି, ଡିହ ଦେଲି, ମନେ ରଖିବ ଟି ? ସେ

ଯେଉଁ ଆନ୍ତରିକତା, ସେଥିରେ ସେ ମୋତେ ଯେପରି ଯୁଗଯୁଗ କରି ଋଣୀ କରିଦେଇ ଗଲେ ।

କନ୍ଦରପୁର ଅଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦଙ୍କର ଦାନ ଯେ ଅବିସ୍ମରଣୀୟ, ତାହା କେହି ବି ଅସ୍ୱୀକାର କରିପାରିବେ ନାହିଁ । ମାତ୍ର ସେ କେତେ ଶିକ୍ଷାପ୍ରେମୀ, ଗୋଟିଏ ସାଧାରଣ ଘଟଣାରୁ ଜାଣିହେବ । ୪ର୍ଥ ଶ୍ରେଣୀରେ ପଢୁଥିବା ମୋର ଜଣେ କକେଇଙ୍କ ପୁଅ ଭାଇ ମାତ୍ର ୧୦/୧୨ ଦିନ ପାଇଁ ମୋ ପାଖକୁ ଆସିଥିଲେ । ୨ଦିନ ପରେ ତା'ଠାରୁ ବୁଝି ତା'ପାଠ ଖରାପ ହେବ ଭାବି ନିଜେ ଖାତା କିଣି ଆଣି ସବୁଦିନ ସଂଧ୍ୟାରେ ୨ଘଣ୍ଟା ଲେଖାଏଁ ତାକୁ ପାଠ ପଢାଇବାରେ ଲାଗିଲେ । ଏହା କ'ଣ ଗୋଟିଏ ଛୋଟ କଥା ହୋଇପାରେ ?

ଆକାଶରେ ଅସଂଖ୍ୟ ନକ୍ଷତ୍ର ବିଦ୍ୟମାନ । ପୃଥିବୀପୃଷ୍ଠରେ ସେହିପରି ଅଗଣିତ ମନୁଷ୍ୟ ଜନ୍ମଲାଭ କରିଛନ୍ତି । ମାତ୍ର ଗ୍ରହ, ଉପଗ୍ରହ ଓ ନକ୍ଷତ୍ରର ତାରତମ୍ୟ ଭଳି ମଣିଷ ସମାଜରେ ହିଁ ମନୁଷ୍ୟର ତାରତମ୍ୟ ରହିଛି । କନ୍ଦରପୁର ଅଞ୍ଚଳର ଆକାଶରେ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦଙ୍କର ଅମ୍ଳାନ ଆତ୍ମା ଯେ ଚିର ଭାସ୍ୱର, ଏଥିରେ ଦ୍ୱିମତ ହେବାର ନାହିଁ । ଈଶ୍ୱରଙ୍କ ନିକଟରେ ଏତିକି ପ୍ରାର୍ଥନା — ତାଙ୍କ ଭଳି ଜଣେ ଦିବ୍ୟଆତ୍ମା ପୁଣିଥରେ ଏ ଅଞ୍ଚଳରେ ଆହୁରି ଦ୍ରୁତ ଗତିରେ ଆଗେଇ ନେବାପାଇଁ ଜନ୍ମଲାଭ କରୁ ।

*ସିଦ୍ଧେଶ୍ୱରପୁର,*
*ପୂର୍ବତନ ଅଧ୍ୟକ୍ଷ, କନ୍ଦରପୁର ମହାବିଦ୍ୟାଳୟ*



# ତାଙ୍କୁ କେମିତି ଜାଣିଲି

✦ ଶ୍ରୀ ଉମା ପ୍ରସାଦ ମିଶ୍ର

ବୋଧହୁଏ, ୧୯୭୦-୭୧ ମସିହା କଥା । ମୁଁ ସବୁଦିନ ପରି ସକାଳୁ ସକାଳୁ (ପ୍ରାୟ ୭ଟା) 'ସମାଜ' ଅଫିସ୍‌କୁ ଯାଉଥାଏ । ଦିନେ ଦେଖିଲି, ଜଣେ ଭଦ୍ରବ୍ୟକ୍ତି ଗୋପବନ୍ଧୁ ଭବନକୁ ଯାଇ, ବାହାର ଲମ୍ବା ବେଞ୍ଚରେ ବସିଥା'ନ୍ତି । ମୋତେ ଦେଖି ପଚ୍ଚରିଲେ— ତୁମେ କ'ଣ ଏଠାରେ କାମ କରୁଛ ? ମୁଁ ହଁ କହିବା ପରେ ସେ କହିଲେ, "ମୁଁ ଟିକିଏ ରାଧାନାଥବାବୁଙ୍କୁ ଦେଖା କରନ୍ତି ।" ମୁଁ କହିଲି-- ହଉ ଦେଖୁଛି । ବାବୁଜୀ (ରାଧାନାଥ ରଥ)ଙ୍କୁ ଯାଇ କହିଲି, "ଆଜ୍ଞା, ଜଣେ ଭଦ୍ରବ୍ୟକ୍ତି ଆସିଛନ୍ତି । ସେ ଆପଣଙ୍କୁ ଦେଖାକରିବାକୁ ଚାହୁଁଛନ୍ତି ।" ବାବୁଜୀ କହିଲେ-- କିଏ ସେ ? ମୁଁ କହିଲି-- ଗୋରା, ଡେଙ୍ଗା, ଛୋଟ ଖଦଡ଼ ଲୁଗା, ଫତେଇ କାନ୍ଧରେ ଗୋଟିଏ ନୀଳ ରଙ୍ଗର ଝୁଲା ବ୍ୟାଗ୍ ଅଛି । ସେ ଜଣେ କଂଗ୍ରେସିଆ ବା ସ୍ୱାଧୀନତା ସଂଗ୍ରାମୀ ପରି ଦିଶୁଛନ୍ତି । ତାଙ୍କୁ ଦେଖି ନାଁ ପଚ୍ଚରିବା ପାଇଁ ସାହସ ହେଲାନାହିଁ । ବାବୁଜୀ କହିଲେ— ତାଙ୍କୁ ଡାକ । ମୁଁ ଆସି ଭଦ୍ରଲୋକଙ୍କୁ କହିଲି -- ଆସନ୍ତୁ, ବାବୁଜୀ ଡାକୁଛନ୍ତି । ସେ ଗଲେ । ତାଙ୍କୁ ଦେଖୁ ଦେଖୁ ବାବୁଜୀ କହି ପକାଇଲେ-- ଯ୍ୟାଙ୍କୁ ଚିହ୍ନିନ ? ଏ ପରା କେଶବବାବୁ, ନନ୍ଦ ମହାଶୟ । ମୋର ମୁଁ ଗ୍ଲାନିଗଲି । ତା'ର ୩/୪ଦିନ ପରେ ସିଦ୍ଧେଶ୍ୱରପୁରରେ କାର୍ଯ୍ୟକ୍ରମ । ବାବୁଜୀ ତାଙ୍କ ଗ୍ରାମ ସ୍କୁଲର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି । ସେହିଦିନ ହିଁ ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ ।

ଘଟଣାକ୍ରମେ, ୧୯୭୨ ମସିହାରେ ମୁଁ ପିଠାପୁର ନୂଆ କଲୋନୀରେ ଘର ଖଣ୍ଡିଏ କରି ରହିଲି । ତା'ପରେ ମୁଁ ଅଫିସ୍‌କୁ ଯିବାବେଳେ, ନିମସାହିରେ ଥିବା ତାଙ୍କ ଘର ବାଟ ଦେଇ ଯାଏ । କେତେବେଳେ କେମିତି ଦେଖା ହୋଇଯାଏ, ପ୍ରାୟ

ସକାଳୁ ସକାଳୁ । ତା'ପରେ ବହୁବାର ତାଙ୍କ ଗ୍ରାମକୁ ବିଭିନ୍ନ କାର୍ଯ୍ୟକ୍ରମରେ ରାଧାନାଥବାବୁଙ୍କ ସହିତ ଯାଇଛି । ସେ ମଧ୍ୟ ବହୁବାର ଗୋପବନ୍ଧୁ ଭବନକୁ ଆସିଛନ୍ତି । ବିଭିନ୍ନ କାର୍ଯ୍ୟରେ ସେ ରାଧାନାଥବାବୁଙ୍କ ସହିତ ପରାମର୍ଶ କରିବାର ଦେଖିଛି । ସେ ସକାଳ ପ୍ରାୟ ୭ଟା/୭.୩୦ ବେଳକୁ ସିଦ୍ଧେଶ୍ୱରପୁରରୁ ସାଇକେଲରେ ଆସି କଟକରେ ପହଞ୍ଚିଯା'ନ୍ତି । ଭାରି ପରିଶ୍ରମୀ ଓ ପରୋପକାରୀ । ପ୍ରଥମ ଦେଖାରୁ ଶେଷ ପର୍ଯ୍ୟନ୍ତ ସେହି ପୁରୁଣା ସାଇକେଲ୍, ସେହି ପୋଷାକରେ ତାଙ୍କୁ ଦେଖି ଆସିଛି । ଦୀର୍ଘ ୩୫ବର୍ଷ ଧରି ଦେଖିଛି । ସେ ସବୁବେଳେ ତାଙ୍କ ଗ୍ରାମାଞ୍ଚଳର ଉନ୍ନତିରେ ଲାଗିଥା'ନ୍ତି । ଆଜି ଏତିକି ।

*ପିଠାପୁର, କଟକ*





ଗୋପାଳ ସ୍ମୃତି ବିଦ୍ୟାପୀଠର ପ୍ରଥମ ବିଜ୍ଞାନ ଶିକ୍ଷୟିତ୍ରୀ କୁମାରୀ ସରୋଜିନୀ ପଟ୍ଟନାୟକଙ୍କ ସହିତ ୰ନନ୍ଦଙ୍କ ଧର୍ମପତ୍ନୀ ୰ଦୁର୍ଗା ଦେବୀ

# କର୍ମ ଯାହାଙ୍କର ଧର୍ମ ଥିଲା

✦ ଶ୍ରୀ ପ୍ରଦ୍ୟୁମ୍ନ କୁମାର ଆଗ୍ରୱାଲ୍

ଆମଦେଶ ସ୍ୱାଧୀନ ହେବାର ଶହେ ବା ଅଧିକ ବର୍ଷ ପୂର୍ବରୁ କ୍ଷମତାସୀନ ଇଂରେଜ ସରକାର ଏକ ସମ୍ପୂର୍ଣ୍ଣ ନୂତନ ଶିକ୍ଷା ପ୍ରଦାନ ବ୍ୟବସ୍ଥା ପ୍ରଚଳନ କରାଇଥିଲେ । ଆଉ ଏ ଦେଶ ସ୍ୱାଧୀନତା ପାଇବାର ଅବଧି ସୁଦ୍ଧା ସେହି ଶିକ୍ଷା ପ୍ରଦାନ ବ୍ୟବସ୍ଥାର ପ୍ରସାରଣ କ୍ଷେତ୍ରରେ ଯାହା କିଛି ଅଗ୍ରଗତି ଘଟିଥିଲା, ସେ ସବୁ ମୁଖ୍ୟତଃ ସହରାଞ୍ଚଳ ମଧ୍ୟରେ ସୀମାବଦ୍ଧ ହୋଇ ରହିଯାଉଥିଲା ଏବଂ ତାହା ମଧ୍ୟ ପ୍ରତ୍ୟକ୍ଷ ଭାବରେ ସରକାରୀ ଧନ ଓ ଉଦ୍ୟମରେ ପ୍ରସାରଣ ନ ହୋଇ ତାହା ପରିବର୍ତ୍ତେ ରାଜା କିମ୍ବା ଜମିଦାର କିମ୍ବା ମିସନାରୀ ସଂସ୍ଥା ଅଥବା ସମାଜସେବୀ, ସାଧାରଣ ବର୍ଗର ଲୋକଙ୍କ ପ୍ରଚେଷ୍ଟାରେ ଆଗେଇ ପାରିଥିଲା । ସେଥିଯୋଗୁଁ ସହରାଞ୍ଚଳରେ ବସବାସ କରୁଥିବା ସନ୍ତାନ-ସନ୍ତତିମାନେ ଉଚ୍ଚଶିକ୍ଷିତ ହେବାର ସମ୍ଭାବନା ଯେତେ ଅଧିକ ରହିପାରୁଥିଲା, ତାହା ଗ୍ରାମାଞ୍ଚଳର ବାସିନ୍ଦାମାନଙ୍କ ପାଇଁ ସମ୍ଭବ ନ ଥିଲା । ଅଥଚ ଦେଶ ସ୍ୱାଧୀନ ହେବା ପୂର୍ବରୁ ସହରାଞ୍ଚଳରେ ଖୁବ୍ ବେଶୀରେ ସମୁଦାୟ ଜନସଂଖ୍ୟାର ଦଶଭାଗ ମଣିଷ ବସବାସ କରୁଥିବା ସ୍ଥଳେ ଗ୍ରାମାଞ୍ଚଳରେ ରହୁଥିବା ପ୍ରାୟ ନବେଭାଗ ଅଧିବାସୀ ଏବଂ ସେମାନଙ୍କ ମଧ୍ୟରୁ ପ୍ରାୟ ଅଶୀ ଭାଗ ପରିବାରର ଆର୍ଥିକ ଅବସ୍ଥା ଅତି ମାତ୍ରାରେ ଅସ୍ୱଚ୍ଛଳ ହୋଇ ଯୁଗଯୁଗ ଧରି ରହି ଆସୁଥିଲା ।

ଏହାପରେ ଆମ ଦେଶ ଯେତେବେଳେ ସ୍ୱାଧୀନ ରାଷ୍ଟ୍ରର ମାନ୍ୟତା ପାଇଲା, ସେତେବେଳେ ଦେଶର ସର୍ବାଙ୍ଗୀନ ବିକାଶ ସାଧନ ପାଇଁ ଯୋଜନା ପ୍ରଣୟନ କରାଗଲା । ଯାହାମଧ୍ୟରେ ଶିକ୍ଷାପ୍ରଦାନ ବ୍ୟବସ୍ଥା ମଧ୍ୟ ଅନ୍ୟତମ ଥିଲା । କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଏହା ପରିଲକ୍ଷିତ ହୋଇଥିଲା ଯେ, ସ୍ୱଦେଶୀ ସରକାର ମୁଖ୍ୟତଃ

ବୈଷୟିକ ଶିକ୍ଷାର ବିକାଶ ବ୍ୟତୀତ ସାଧାରଣ ଶିକ୍ଷାର ପ୍ରସାରଣ ପାଇଁ ଗୁରୁତ୍ୱ ଦେବାକୁ ପ୍ରସ୍ତୁତ ହୋଇପାରୁ ନ ଥିଲେ । ତେବେ ଛାତ୍ରଛାତ୍ରୀମାନେ ଇଞ୍ଜିନିୟର, ଡାକ୍ତର କିମ୍ବା ବୈଜ୍ଞାନିକ ଅଥବା ଟେକ୍‌ନିସିଆନ୍ ହେବାର ଥିଲେ ସେମାନେ ଯେ ଶିକ୍ଷା ବ୍ୟବସ୍ଥାର ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚମାଧ୍ୟମିକ ସ୍ତରଗୁଡ଼ିକ ଅତିକ୍ରମ କରିବା ଅତି ଜରୁରୀ, ଏହା ସମ୍ଭବତଃ ସରକାରୀ ଭାବନାରେ ସ୍ଥାନ ପାଇ ପାରି ନ ଥିଲା । ସୁତରାଂ ସରକାରୀ ଅଭିଳାଷକୁ ପୂରଣ କରିବା ପାଇଁ ସେହି ସହରାଞ୍ଚଳ ଅଧିବାସୀଙ୍କ ସନ୍ତାନ-ସନ୍ତତିମାନେ କେବଳ ସମର୍ଥ ଥିଲେ । ମାତ୍ର ଗ୍ରାମାଞ୍ଚଳର ସେହି ଅବହେଳିତ ନବେ ଭାଗଙ୍କ ପିଲାଏ ନବଭାରତ ଗଠନ ପ୍ରକିୟାରେ ସାମିଲ ହେବାର ପ୍ରଶ୍ନ ଆସିପାରି ନ ଥା'ନ୍ତା । ଏହା ସର୍ବବିଦିତ ଯେ, ଭାରତ ସ୍ୱାଧୀନତା ପାଇବାର ପ୍ରାୟ ପଚିଶ୍ଳିଶ ବର୍ଷପରେ ସାକ୍ଷରତା ଅଭିଯାନ ଆରମ୍ଭ କରାଯାଇଥିଲା ଏବଂ ଶିକ୍ଷାକୁ ଏକ ମୌଳିକ ଅଧିକାର ଭାବରେ ସମ୍ବିଧାନ ଅନ୍ତର୍ଭୁକ୍ତ କରାଯାଇଥିଲା । ତେଣୁ ଯଦି ଗ୍ରାମାଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ବିଭିନ୍ନ ଇଲାକାରେ ବସବାସ କରୁଥିବା କତିପୟ ସମାଜପ୍ରେମୀ ସାଧାରଣ ଅଧିବାସୀ ସାହାଯ୍ୟ, ସହଯୋଗ ଓ ସହାୟତା ଦେଇ ଉଦ୍ୟମ ଆରମ୍ଭ କରି ନ ଥା'ନ୍ତେ, ତେବେ ଆଜିର ଭାରତରେ ହୁଏତ ମାତ୍ର ଦଶଭାଗ ମଣିଷ ଶିକ୍ଷିତ ବୋଲି ତଥାପି ବୁଝାଯାଉଥା'ନ୍ତା । କିନ୍ତୁ ଘୋର ପରିତାପର ବିଷୟ ଏହା ହୋଇଥିଲା ଯେ, ଚିର ଅବହେଳିତ ପୁରପଲ୍ଲୀ ଇଲାକାଗୁଡ଼ିକରେ ଶିକ୍ଷାର ପ୍ରସାର ଅଥବା ଜ୍ଞାନର ବିକାଶ ଯେଉଁମାନଙ୍କର ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ସମ୍ଭବ ହୋଇପାରିଥିଲା, ସେମାନଙ୍କ ମଧ୍ୟରୁ ଅଧିକାଂଶ ଅଜ୍ଞାତ ଅବସ୍ଥାରେ ରହିଯାଇଥିଲେ । ଏବଂ ସେମାନଙ୍କ ମାନସପୁତ୍ରଗୁଡ଼ିକୁ ସରକାର ନିଜର ମୁଣ୍ଡ ଉପରେ ଏକ ବିରାଟ ବୋଝ ବୋଲି ଭାବୁଥିଲେ । ତେବେ ମଠରେ ଖାଇ ପଲଙ୍କ ଉପରେ ଶୋଇଥିବା ଭାରତୀୟମାନଙ୍କୁ ଗାଁ ମୁଣ୍ଡରେ ଛତୁ ଫୁଟିଲା ପରି ସ୍କୁଲ କଲେଜ ଖୋଲିବା ହୁଏତ ବିରକ୍ତିକର ମନେ ହୋଇପାରୁଥାଏ, ମାତ୍ର ଆଜିର ଭାରତ ଏକ ବିକାଶୋନ୍ମୁଖୀ ଦେଶ ବୋଲି ଯଦି ବାହ୍ୟ ଜଗତରେ ବିବେଚିତ ହୋଇପାରୁଥାଏ, ତାହାହେଲେ ଏହାର ପଶ୍ଚାତ୍ ଭାଗରେ ଏପରି ଛତୁ ଫୁଟିବା ପରି ଶିକ୍ଷାନୁଷ୍ଠାନ ଗଢ଼ିବାର କିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ଏହା ଏହି ଶ୍ରେଣୀର ମଣିଷମାନେ କଦାପି ବୁଝିପାରିବେନି ।

ତଥାପି ଗ୍ରାମାଞ୍ଚଳର ଶିକ୍ଷାର ପ୍ରସାରଣ ଏକ ପ୍ରଶଂସନୀୟ କିମ୍ବା ନିନ୍ଦନୀୟ କାର୍ଯ୍ୟ ମଧ୍ୟରୁ ଯାହା ବି ହୋଇପାରୁ, ମାତ୍ର ସର୍ବଭାରତୀୟ ସ୍ତରରେ ଏଥିପାଇଁ ଯେଉଁମାନେ ଅକ୍ଳାନ୍ତ ପରିଶ୍ରମ କରିଥିଲେ, ସେମାନଙ୍କ ମଧ୍ୟରେ କଟକ ଜିଲ୍ଲାର କନ୍ଦରପୁର ଗ୍ରାମପଞ୍ଚାୟତ ଅଧୀନସ୍ଥ କମାପୁର ଗ୍ରାମରେ ଜନ୍ମିତ ଅଧୁନା ସ୍ୱର୍ଗବାସୀ କେଶବ ଚନ୍ଦ୍ର ନନ୍ଦ ନିଶ୍ଚିତ ଭାବରେ ଜଣେ ଅଗ୍ରଗାମୀ ବ୍ୟକ୍ତି ଥିଲେ । କାରଣ ଅନ୍ୟମାନେ ପ୍ରାୟତଃ ଗୋଟିଏ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରାଇବା ପରେ ତୃପ୍ତ ହୋଇ ରହିଯାଉଥିବା ସ୍ଥଳେ ସ୍ୱର୍ଗତ ନନ୍ଦ ଦୁଇଟି ହାଇସ୍କୁଲ (ଯାହା ଗୋଟିଏ ବାଳିକାମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା) ଏବଂ ଗୋଟିଏ କଲେଜ କନ୍ଦରପୁର ବଜାରକୁ ଘେରି ରହିଥିବା ବିସ୍ତୃତ ଇଲାକାର ଅଧିବାସୀମାନଙ୍କୁ ଉପହାର ସ୍ୱରୂପ ପ୍ରଦାନ କରିଥିଲେ । ଏବଂ ଏହା ମଧ୍ୟରେ ଏଠାରେ ଉଲ୍ଲେଖଯୋଗ୍ୟ ହୋଇପାରେ ଯେ ଏଭଳି ଗୋଟିଏ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରାଇବାରେ ଏ ଦେଶର ଅନେକ ବ୍ୟକ୍ତି ଏପରି ସାମାଜିକ କାର୍ଯ୍ୟକୁ ଆୟୁଧ ଭାବରେ ଗ୍ରହଣ କରି ରାଜନୈତିକ ମଞ୍ଚରେ ସ୍ଥାନ ପାଇବା ପାଇଁ ପ୍ରୟାସୀ ହୋଇ ପାରିଥିବା ସ୍ଥଳେ, ସ୍ୱର୍ଗତ ନନ୍ଦ ସେ ଦିଗକୁ କେବେ ବି ଅନାଇ ନ ଥିଲେ କିମ୍ବା ସ୍ଥାନୀୟ ଅଧିବାସୀଙ୍କ ସ୍ତରରୁ ସ୍ୱତନ୍ତ୍ର ମାନ୍ୟତା ପାଇବା ପାଇଁ ମଧ୍ୟ ଆଶା ରଖୁ ନ ଥିଲେ ।

ସ୍ୱର୍ଗତ କେଶବଚନ୍ଦ୍ର ନନ୍ଦ କଟକ ଜିଲ୍ଲାର ସିଦ୍ଧେଶ୍ୱରପୁର ଗ୍ରାମରେ ପ୍ରଥମେ ୧୯୪୮ ମସିହାରେ ଯେତେବେଳେ 'ଗୋପାଳ ସ୍ମୃତି ବିଦ୍ୟାପୀଠ' ନାମରେ ଏକ ହାଇସ୍କୁଲ ପ୍ରତିଷ୍ଠା କରାଇଥିଲେ, ସେତେବେଳେ କଟକ ସହର ମଧ୍ୟରେ ଥିବା ରାଣୀହାଟ ହାଇସ୍କୁଲ ପରେ କୁଜଙ୍ଗ ଭିତରେ ଗୋଟିଏ ଭଲ ଉଚ୍ଚମାଧ୍ୟମିକ ବିଦ୍ୟାଳୟ ନ ଥିଲା । ସେହିପରି ତା'ର ଦୁଇବର୍ଷ ପୂର୍ବ ପର୍ଯ୍ୟନ୍ତ ଜଗତ୍‌ସିଂହପୁର ମଧ୍ୟରେ ବି ସେହି ସ୍ତରର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହୋଇପାରି ନଥିଲା । ତେଣୁ ସ୍ୱର୍ଗତ ନନ୍ଦ ଯଦି ସେ ସମୟରେ ଏଭଳି ଏକ ମହତ୍ କାର୍ଯ୍ୟପାଇଁ ଆଗେଇ ନ ଆସିଥାଆନ୍ତେ, ତେବେ ଆହୁରି ଅନେକ ବର୍ଷ ପର୍ଯ୍ୟନ୍ତ ହୁଏତ ଏ ଇଲାକାର ସନ୍ତାନ-ସନ୍ତତିମାନଙ୍କ ଶିକ୍ଷାଗତ ଯୋଗ୍ୟତା ମାଇନର ସ୍ତର ପର୍ଯ୍ୟନ୍ତ ସୀମିତ ହୋଇ ରହିଯାଇଥା'ନ୍ତା । କାରଣ ପ୍ରକୃତରେ ସେ ସମୟରେ ଗ୍ରାମାଞ୍ଚଳକୁ ଅର୍ଥ ସରବରାହ ଏତେ କମ୍ ଥିଲା, ଯଦ୍ୱାରା ପ୍ରାୟ ସତୁରୀ ଭାଗ ପରିବାର ଅସମୟରେ ଦଶଟା ଟଙ୍କା ଖର୍ଚ୍ଚ

କରିବା ପାଇଁ ମଧ୍ୟ ସମର୍ଥ ନ ଥିଲେ । ଦ୍ୱିତୀୟରେ ପିଲାଙ୍କୁ ଅଧିକ ଶିକ୍ଷିତ କରାଇବା ପ୍ରୟାସ ଅଥବା ଚେତନା ଅଧିକାଂଶ ମଣିଷଙ୍କର ନ ଥିଲା । ତୃତୀୟରେ ଏ ଇଲାକାରେ ନିଷ୍ଠାପର ସଂଗଠକ ସେପରି କେହି ନ ଥିଲେ । ତେଣୁ ସିଦ୍ଧେଶ୍ୱରପୁରରେ ପୂର୍ବରୁ ଥିବା ଜିଲ୍ଲାବୋର୍ଡ଼ଦ୍ୱାରା ପରିଚାଳିତ ମାଇନର ସ୍କୁଲ ପରିସର ମଧ୍ୟରେ ଗୋପାଳ ସ୍ମୃତି ବିଦ୍ୟାପୀଠ ନାମକ ଏକ ହାଇସ୍କୁଲ ସ୍ୱର୍ଗତ ନନ୍ଦଙ୍କର ଉଦ୍ୟମରେ ପ୍ରତିଷ୍ଠିତ ହେବା ପରେ ରଘୁନାଥପୁର, ବୟାଳିଶି ମୌଜା, ଗତିରାଉତପାଟଣା ଏବଂ ଦାମୋଦର-ପୁରଠାରୁ ଆରମ୍ଭ କରି କୋଟୁଆଁ ଭିତରେ ଥିବା ଗ୍ରାମାଞ୍ଚଳର ଛାତ୍ରଛାତ୍ରୀମାନେ ଅନ୍ତତଃ ହାଇସ୍କୁଲସ୍ତର ପର୍ଯ୍ୟନ୍ତ ଶିକ୍ଷା ଲାଭ କରିବାର ସୁଯୋଗ ଘରେ ଶାଗପଖାଳ ଖାଇ ପାଇପାରିଥିଲେ । ସ୍ୱର୍ଗତ ନନ୍ଦଙ୍କର ପରବର୍ତ୍ତୀ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିବା କନ୍ଦରପୁର କଲେଜରେ ସ୍ନାତକ ସ୍ତର ପର୍ଯ୍ୟନ୍ତ ସେହିପରି ଶାଗପଖାଳ ଖାଇ ଶିକ୍ଷା ଲାଭ କରିବା ସ୍ଥାନୀୟ ଆଗ୍ରହୀ ଛାତ୍ରଛାତ୍ରୀଙ୍କ ପାଇଁ ସମ୍ଭବ ହୋଇପାରିଥିଲା ।

ଏବେ ସ୍ୱର୍ଗତ ନନ୍ଦଙ୍କ ବିଷୟରେ ନିଜର ଅନୁଭୂତିରୁ କିଛି ମୁଁ ଏଠାରେ ଉଲ୍ଲେଖ ନ କରି ରହିପାରୁନାହିଁ । ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ ଗ୍ରାମ୍ୟ ସମ୍ପର୍କରେ ମୋର କକେଇ । କୁଟୁମ୍ବ ସମ୍ପର୍କରେ ମୋର ପିଉସା ଥିଲେ ମଧ୍ୟ ମୁଁ ତାଙ୍କୁ କକେଇ ବୋଲି ସମ୍ବୋଧନ କରୁଥିଲି । ଆଉ ମୋର ଜନ୍ମ ସିଦ୍ଧେଶ୍ୱରପୁର ଗ୍ରାମରେ ହୋଇଥିଲେ ମଧ୍ୟ ମୁଁ ନିଜ ଗ୍ରାମରେ କିଛି ବର୍ଷ ପର୍ଯ୍ୟନ୍ତ ରହିବାର ସୁଯୋଗ ୧୯୫୦ ମସିହା ଅଥବା ମୋତେ ପ୍ରାୟ ଚଉଦ ବର୍ଷ ହେବାପରେ ପାଇ ପାରିଥିଲି । ସେହି ୧୯୫୦ ମସିହାର ଜୁନ ମାସ କଥା ଉଲ୍ଲେଖ କରୁଛି । ଦିନେ ବଡ଼ି ସକାଳୁ ମୁଁ ନିଦରୁ ଉଠି ଦାଣ୍ଡ ବାରଣ୍ଡାରେ ଅଳସ ଭାଙ୍ଗୁଥିବା ବେଳେ କେଶବ କକେଇ ନିଜର ମୁଣ୍ଡ ଉପରେ ଝୁଡ଼ିଏ ଖତ ରଖି ଆମ ସାହି ଭିତର ଦେଇ ସ୍କୁଲ ସାମନାରେ ଥିବା ତାଙ୍କର ଧାନକ୍ଷେତକୁ ଯାଉଥିଲେ । ମୋତେ ଅଳସ ଭାଙ୍ଗୁଥିବା ଅବସ୍ଥାରେ ଦେଖି ସେଠି ଅଟକି ଯାଇ ପଚାରିଲେ-- ତୁ ଅନୁଭାଇନାଙ୍କ ପୁଅ ତ ? ହଁ କଲି । ତା'ପରେ ସେ ପଚାରିଲେ, ''କ'ଣ କରୁଛୁ ?'' କିଛି ଉତ୍ତର ନଦେଇ କେବଳ ଦାନ୍ତଟା ଦେଖେଇ ମୁଁ ରହିଯାଇଥିଲି । ସେ ପୁଣି ପଚାରିଲେ, ''ଆଉ ପଢ଼ା-ପଢ଼ି କିଛି କରୁଛୁ କି ନାହିଁ ?'' ମୁଁ କହିଲି, ''ଏ ବର୍ଷ ମାଇନର ପାଶ୍ କରିଛି ।'' କୋଉଠୁ ? ବାଙ୍କି ସହରରୁ । ସେ ପୁଣି ପଚାରିଲେ, ''ଏହାପରେ ପୁଣି ପଢ଼ିବୁ ନା

ନାହିଁ ?'' ମୁଁ କହିଲି, ''ହଁ ପଢ଼ିବା ପାଇଁ ତ ମୁଁ ଗୃହୁଁଛି । କିନ୍ତୁ ନନାଙ୍କର ଇଚ୍ଛା ଯେ ମୁଁ ଗାଁରେ ରହି ଗାଈଜଗା ଓ ବିଲବାଡ଼ି ଏକା ସମ୍ଭାଳିବି ।'' ସେ ହସି ହସି ତାଙ୍କ ସାଥିରେ ଆସିବା ପାଇଁ ମୋତେ ଡାକିଥିଲେ । ତେଣୁ ତାଙ୍କର ଧାନକ୍ଷେତ ପର୍ଯ୍ୟନ୍ତ ମୁଁ ଯାଇଥିଲି । ସେଠି ସେ ବିଲରେ ଖତ ଢାଳୁଥିବା ଅବସ୍ଥାରେ ମୋତେ କହିଲେ, ''ଏଇ ଦୁଇ ବର୍ଷ ହେବ ଆମେ ମାଇନର ସ୍କୁଲ ହତା ଭିତରେ ଗୋଟିଏ ହାଇସ୍କୁଲ ଖୋଲିଛୁ । ତୁ ଏଠି ପଢ଼ିବୁ କି ?'' ମୁଁ କହିଲି—ନନାଙ୍କୁ ଅବଜ୍ଞା କରି ମୁଁ କେମିତି ଅଧିକ ପାଠ ପଢ଼ିବି ? ମୋତେ ପଇସା କିଏ ଦେବ ? କେଶବ କକେଇ ମୋର ପଢ଼ିବା ବିଷୟ ନନାଙ୍କୁ ସେଦିନ ମୋ ଉପସ୍ଥିତିରେ ପଗ୍ଋରିଥିଲେ । ଆଉ ସେ କଥା ସେ ଶୁଣିବା ମାତ୍ରେଏକ ଅଶାଳୀନ ମନ୍ତବ୍ୟ ମୋ ସମ୍ବନ୍ଧରେ ଦେଇ ମୋତେ ଆଉ ପଢ଼ାଇବେ ନାହିଁ ବୋଲି ରୋକ୍‌ଠୋକ୍ ଭାବରେ କକେଇଙ୍କୁ ଶୁଣେଇ ଦେଇଥିଲେ । କିନ୍ତୁ କେଶବ କକେଇଙ୍କ ହୃଦୟରେ କେବଳ ମାନବିକତା କିମ୍ବା ସମାଜପ୍ରୀତି ନଥିଲା, ଅଧିକନ୍ତୁ ହାଇସ୍କୁଲ ପାଇଁ ଛାତ୍ରଛାତ୍ରୀ ସଂଗ୍ରହ କରିବା ମଧ୍ୟ ତାଙ୍କ ପାଇଁ ଏକ ଗୁରୁଦାୟିତ୍ୱ ପରି ରହିଥିବା ଯୋଗୁଁ ସେ ନନାଙ୍କୁ କହିଲେ, ''ଭାଇନା, ଆପଣ ନିଜେ ଜଣେ ଶିକ୍ଷିତ ମଣିଷ । ପୁଣି ଶିକ୍ଷକ ହୋଇ ସୁଦ୍ଧା ଯଦି ନିଜର ପିଲାକୁ ଅର୍ଦ୍ଧଶିକ୍ଷିତ ଅବସ୍ଥାରେ ରଖିବାକୁ ଉଚିତ ମନେ କରନ୍ତି, ତେବେ ଯେଉଁମାନଙ୍କର ଧନ ନାହିଁ, କିମ୍ବା ଶିକ୍ଷାଦୀକ୍ଷା ନାହିଁ, ଆମେ ସେମାନଙ୍କର ପିଲାଙ୍କୁ ଶିକ୍ଷିତ କରାଇବା ପାଇଁ ଯେଉଁ ସ୍କୁଲ ଖୋଲିଛୁ, ତାହାର ଭବିଷ୍ୟତ ତା'ହେଲେ କ'ଣ ହେବ ? ଯଦି ଆପଣ ଏ ପିଲାର ଶିକ୍ଷାପାଇଁ ଟଙ୍କାଏ/ମଣାଏ ଖର୍ଚ୍ଚ କରିବାକୁ କୁଣ୍ଠିତ ହେଉଥା'ନ୍ତି, ତେବେ ମୁଁ ସେ କଥା ବୁଝିବି । ଏତିକି କହି କେଶବ କକେଇ ଗ୍ଋଲି ଯାଇଥିଲେ ଏବଂ ତା' ପରଦିନ ମୋର ନାଁ ସ୍କୁଲରେ ସେ ଲେଖେଇ ଦେଇଥିଲେ । ଆଉ ତାଙ୍କରି ଦୟାରୁ ମୁଁ ମାଟ୍ରିକ୍ ସ୍ତର ପର୍ଯ୍ୟନ୍ତ ଶିକ୍ଷାଗତ ଯୋଗ୍ୟତା ମାଗଣାରେ ହାସଲ କରିପାରିଥିଲି ।

୧୯୫୪ ମସିହାରେ ମୁଁ ମାଟ୍ରିକ୍ ପାଶ୍ କଲି । ତା'ପରେ ବାଧ୍ୟ ହୋଇ ସେହି ଅଠର ବର୍ଷ ବୟସରେ ଜୀବିକା ନିର୍ବାହ କରିବା ପାଇଁ ବହୁଦୂର ସ୍ଥାନକୁ ଗ୍ଋଲିଯାଇଥିଲି । ଆଉ ମୁଁ ଅବସର ଗ୍ରହଣ କରି ଗାଁକୁ ୧୯୯୭ ମସିହାରେ ଫେରି ଆସିବା ପରେ ସେହିପରି ଦିନେ ବଡ଼ିଭୋରରୁ କେଶବ କକେଇ କାନ୍ଧରେ

ଗୋଟିଏ ଲମ୍ବା ଶିଢ଼ି ଧରି ମୋ ଘର ସାମନା ଦେଇ ଆମ ସାହି ଆଡ଼କୁ ଯାଉଥିଲାବେଳେ ମୋତେ ଦେଖି ଟିକିଏ ଅଟକି ଯାଇଥିଲେ । କିନ୍ତୁ କ୍ଷଣକ ପାଇଁ ବି ସେ ରୋକି ଯାଇ କାହା ସାଙ୍ଗରେ ଗପିବାର ମଣିଷ ନଥିଲେ । କାରଣ କର୍ମକୁ ସେ ଅଧିକ ଗୁରୁତ୍ୱ ପ୍ରଦାନ କରୁଥିଲେ । କାହାରି ସହିତ ବସି ଘଣ୍ଟା ଘଣ୍ଟା ଗପିବା କିମ୍ବା ଆରାମ କରିବା ଚରିତ୍ରର ମଣିଷ ସେ ନ ଥିଲେ । ରାତିପାହି ନୂଆ ସକାଳଟିଏ ଆସିଲେ ସନ୍ଧ୍ୟା ଭିତରେ ସେ କି କି କାର୍ଯ୍ୟ କରିବେ, ରାତିରେ ବିଶ୍ରାମ ନେବା ସମୟରେ ତାହା ଚୂଡ଼ାନ୍ତ କରି ଦେଉଥିଲେ । ତେଣୁ ରାତି ଗ୍ରରିଟା ସମୟରେ ସେ ବିଛଣାରୁ ଉଠି ନିଜର ନିତ୍ୟକର୍ମ କରି, ଠାକୁରଙ୍କ ପୂଜା ଶେଷ କରୁଥିଲେ । ସାମାନ୍ୟ କିଛି ଖାଇ ସେ ପ୍ରଥମେ ନିଜର ବିଲବାଡ଼ି କଥା ବୁଝୁଥିଲେ ଏବଂ ଦଶଟା ପରେ ସମାଜ ପାଇଁ ଆବଶ୍ୟକ ଥିବା କାର୍ଯ୍ୟ ଆରମ୍ଭ କରୁଥିଲେ । ତେଣୁ ସେ ଦିନ ସେ ମୋତେ ଦେଖି କ୍ଷଣକ ପାଇଁ ରୋକିଯାଇ ପୁଣି ଆଗେଇବା ପରେ ମୁଁ ତାଙ୍କର ପଛେ ପଛେ ଯାଇଥିଲି । ସେଇ ଅବସରରେ ସେ ମୋତେ କହିଲେ, "ମୁଁ ଏଠି ଗୋଟିଏ ଟେକ୍ନିକାଲ ସ୍କୁଲ ପ୍ରତିଷ୍ଠା ପାଇଁ ଭାବୁଛି ।"

ସେ ଜଣେ ମଣିଷ । ୧୯୬୩ ମସିହାରେ ନିଜ ପତ୍ନୀଙ୍କର ବିୟୋଗ ଘଟିବା ପରେ ନିଜର ଜୀବନ କିମ୍ବା ସମାଜ ପ୍ରତି ସେ ବୀତସ୍ପୃହ ନ ହୋଇ, ତାହା ପରିବର୍ତ୍ତେ ବାଳିକାମାନଙ୍କ ପାଇଁ ହାଇସ୍କୁଲଟିଏ କିପରି ପ୍ରତିଷ୍ଠିତ ହେବ, ସେହି କାର୍ଯ୍ୟରେ ନିମଗ୍ନ ହୋଇଯାଇ ଅଥଙ୍ଗା ଗ୍ରାମରେ ସେ 'ଚିନ୍ତାମଣି ବାଳିକା ବିଦ୍ୟାଳୟ' ପ୍ରତିଷ୍ଠା କରିଥିଲେ । ପୁଣି ସେହି କାର୍ଯ୍ୟ ସମ୍ପୂର୍ଣ୍ଣ ହେବାପରେ କନ୍ଦରପୁର ଇଲାକାରେ କଲେଜଟିଏ କିପରି ପ୍ରତିଷ୍ଠିତ ହେବ, ସେଥିରେ ମଧ୍ୟ ନିଜକୁ ସେ ନିୟୋଜିତ ନ କରି ରହି ପାରି ନ ଥିଲେ । ତେଣୁ ସେ ଦିନ ସେହି ଅଶୀତିପର ବୟସରେ କାନ୍ଧରେ ଶିଢ଼ି, ପୁଣି ଭାବନାରେ ଟେକ୍ନିକାଲ ସ୍କୁଲ ପ୍ରତିଷ୍ଠା କରାଇବାର ସ୍ୱପ୍ନକୁ ଲକ୍ଷ୍ୟ କରି ମୁଁ ସ୍ତମ୍ଭୀଭୂତ ହୋଇ ରହିଯାଇଥିଲେ ମଧ୍ୟ ପରେ ତାଙ୍କୁ କହିଲି— "କକେଇ ଗୋପାଳ ସ୍ମୃତି ବିଦ୍ୟାପୀଠ ପ୍ରତିଷ୍ଠା କରିବା ପାଇଁ ଆପଣଙ୍କ ପରି ଜଣେ ଦକ୍ଷ ସମ୍ଭ୍ରାନ୍ତବଂଶୀୟ ମଣିଷ ଟଙ୍କାଟିଏ ପାଇବାକ ଯେତେ ଲୋକଙ୍କର ପାଦ ଧରିଥିଲେ, ତାହାର କିଞ୍ଚିତ ଦୃଶ୍ୟ ମୁଁ ସ୍ୱଚକ୍ଷୁରେ ଦେଖିଥିଲି, ପୁଣ କଲେଜଟିଏ ପ୍ରତିଷ୍ଠା କରିବା ପାଇଁ ଯେଉଁ ଦୁର୍ନାମ ଶୁଣିଥିଲେ, ତାହା ମଧ୍ୟ ମୋ କାନରେ

ପଡ଼ିଥିଲା । ତେଣୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି, ଏଣିକି ଏ ଧରଣର ସାମାଜିକ କାର୍ଯ୍ୟରେ ମୁଣ୍ଡ ନ ପୂରାଇ ବରଂ ଶାନ୍ତିରେ ବିଶ୍ରାମ ନିଅନ୍ତୁ । ଅପାତ୍ରରେ ଦାନ କରିବା ଭଳି ଆପଣ ବହୁତ କିଛି ତ୍ୟାଗ କରିସାରିଛନ୍ତି ।''

ସେହି କେଶବ କକେଇ ଅବଶ୍ୟ ବର୍ତ୍ତମାନ ଚିର ଶାନ୍ତିରେ ବିଶ୍ରାମ ନେଇ ସାରିଲେଣି । ତଥାପି ତାଙ୍କ ସମ୍ବନ୍ଧରେ ମୋର ଏତିକି ଅଧିକ କହିବାର ରହିଛି ଯେ, ସେ ଜଣେ ଭୂତପୂର୍ବ ଦେବାନଙ୍କର ପୁତ୍ର ହୋଇଥିବା ବ୍ୟତୀତ ଯଥେଷ୍ଟ ପରିମାଣରେ ଭୂସଂପତ୍ତିର ମାଲିକ ହୋଇଥିଲେ ମଧ୍ୟ ଗର୍ବ ଅହଂକାର ତାଙ୍କୁ ସ୍ପର୍ଶ କରି ପାରିନଥିଲା । କିମ୍ବା କାହାରି ଉପରେ ଆକ୍ରୋଶ ରଖିବା, ପ୍ରତିଶୋଧ ପରାୟଣ ହେବା, କାହାରି ସହିତ ଝଗଡ଼ା କରିବା-- ଏ ସବୁ ତାଙ୍କ ଚରିତ୍ରରେ ନଥିଲା । ଖୁବ୍ କମ୍ କଥା କହି କାର୍ଯ୍ୟ ହାସଲ କରିପାରିବାର କଳା ତାଙ୍କର ଥିଲା । ଆଉ ଶେଷ ବିଷୟ ହେଲା, ସେ କର୍ମକୁ ଧର୍ମ ବୋଲି ସର୍ବଦା ଭାବି ଚ୍ଳିଥିଲେ, ଯେଉଁ କର୍ମ କେବଳ ପାରିବାରିକ ସ୍ୱାର୍ଥ ସାଧନର ଆଭିମୁଖ୍ୟ ନ ରଖି ସମାଜର ହିତ ସାଧନ ପାଇଁ ମଧ୍ୟ ଉଦ୍ଦିଷ୍ଟ ଥିଲା । ଏସବୁ ଯୋଗେ ସେ ଜଣେ ଅବିସ୍ମରଣୀୟ ବ୍ୟକ୍ତି ପରି ଏ ଇଲାକାବାସୀଙ୍କର ସ୍ମୃତିରେ ରହିବେ ବୋଲି ମୁଁ ଆଶା କରିପାରୁଛି ।

*ପୁରାତନ ଛାତ୍ର,*
*ସିଦ୍ଧେଶ୍ୱରପୁର, ଗୋପାଳ ସ୍ମୃତି ବିଦ୍ୟାପୀଠ*



# ମୋର ପ୍ରିୟ କେଶବ ଭାଇନା

✦ ଶ୍ରୀ ମୃତ୍ୟୁଞ୍ଜୟ ପ୍ରହରାଜ

ଏଇ କାଲିପରି ମନେପଡ଼େ । ମାଟ୍ରିକ୍ ପାଶ୍ କରି ଘରକୁ ଫେରୁଥାଏ । ଗାଁ' ମୁଣ୍ଡ ପୋଷ୍ଟ ଅଫିସ ପାଖରେ ଦେଖାହେଲା କେଶବ ଭାଇନାଙ୍କ ସହିତ । ତାଙ୍କୁ ନମସ୍କାର କଲାପରେ ସେ ହସି ହସି କହିଲେ, ''ତୁ ପରା ମାଟ୍ରିକ୍ ସେକେଣ୍ଡ୍ ଡିଭିଜନ୍‌ରେ ପାଶ୍ କଲୁ ।'' ମୁଁ ହଁ ଭରିବାରୁ ସେ କହିଲେ, ''ଭଲ ହେଲା, ଏବେ ଆଉ ଆଗକୁ ପଢ଼ିବୁ. ନା ଆଉ କିଛି କରିବୁ ?'' ମୁଁ କୌଣସି ଟ୍ରେନିଂ ଯିବାକୁ କହିବାରୁ ସେ ମୋତେ ସ୍କୁଲରେ ପଢ଼ାଇବାକୁ ପ୍ରସ୍ତାବ ଦେଲେ । ମୁଁ ଆସନ୍ତାକାଲି କହିବି ବୋଲି ଜଣାଇ ଘରକୁ ଫେରିଲି । ଘରେ ବୋଉ, ଦଦେଇ, ଦେଠେଇ ଓ ଭବାନୀ ଭାଇନାଙ୍କୁ ଜଣାଇଲି । ଭାଇନା ସ୍କୁଲରେ ବିଜ୍ଞାନ ଶିକ୍ଷକ ଥିଲେ । ସେ ମୋତେ ସ୍କୁଲରେ ରହି ସିଟି ଟ୍ରେନିଂ ଯିବାପାଇଁ ଭଲ ହେବ ବୋଲି କହିବାରୁ ମୁଁ ସେ କଥା ସେହିଦିନ କେଶବ ଭାଇନାଙ୍କୁ ଜଣାଇଲି । ପରଦିନ ସକାଳୁ କେଶବ ଭାଇନା ଆମ ଘରେ ପହଞ୍ଚି ମୋତେ ସାଙ୍ଗରେ ନେଇ ସ୍କୁଲକୁ ଆସିଲେ । ସେତେବେଳେ ବଡ ଭାଇନା ଓ ନଟବାବୁ ମାଇନର ସ୍କୁଲର ଦାୟିତ୍ୱରେ ଥିଲେ । କେଶବ ଭାଇନା ବଡଭାଇନାଙ୍କୁ କହିଲେ, ''ଏ ଆଜିଠାରୁ ସ୍କୁଲରେ ପଢ଼ାଇବ, ତାକୁ କ୍ଲାସ ଦିଅ ।'' ସେଥିରେ ବଡଭାଇନା ଖୁସି ହୋଇ ମୋତେ ମାଇନର ସ୍କୁଲରେ ଇତିହାସ, ଭୂଗୋଳ ଓ ହିନ୍ଦି ପଢ଼ାଇବାକୁ କହିଲେ, ସେହି ଅନୁସାରେ ମୁଁ ଶିକ୍ଷକତା ଆରମ୍ଭ କଲି ।

ମାସରେ ଶ୍ରିଳିଶ ଟଙ୍କା ଦରମା । ଯାହାହେଉ, ମୁଁ ଖୁବ୍ ଆନନ୍ଦିତ ଥିଲି । ୧୯୫୦ ମସିହାରେ ମୁଁ ଛୁଟିରେ ପୁରୀ ଯାଇଥିଲି । ସେଠାରେ ଭିଣୋଇ ରାଜକିଶୋର ନନ୍ଦଙ୍କ ସହିତ ସାକ୍ଷାତ ହେଲା । ତାଙ୍କ ଭାଇଁ ଜଣେ ଉଚ୍ଚପଦସ୍ଥ ଅଫିସର ଥିଲେ ।

ସେ ମୋତେ ସେକ୍ସସ୍‌ରେ ଚାକିରି କରିବାକୁ କହି ଗୋଟିଏ ଫର୍ମ ଦେଲେ ଦରଖାସ୍ତ କରିବାକୁ । ମୁଁ ଫର୍ମଟି ପୂରଣ କରି ତାଙ୍କୁ ଦେଲି । ସେ ତା'କୁ ନେଲେ ଓ ଅଫିସରୁ ଫେରି ୨୨ ତାରିଖରେ ଇଣ୍ଟରଭ୍ୟୁ ଦେବାକୁ କହିଲେ । ମୁଁ ଇଣ୍ଟରଭ୍ୟୁରେ କୃତକାର୍ଯ୍ୟ ହୋଇଗଲି । ମୋତେ ପଚରା ଯାଇଥିଲା ଯେ ବଲାଙ୍ଗୀର ଯିବାକୁ ରାଜି କି ? ମୁଁ ହଁ ଭରିଲି । ଏଣୁ ୩ଦିନ ଟ୍ରେନିଂ ନେବାକୁ ୨୫ ତାରିଖରେ ସ୍ଥିର ହେଲା । ଟ୍ରେନିଂ ନେଲା ପରେ ଆମେ ସବୁ ଘରକୁ ଫେରିଲୁ । ଏ କଥା ମୁଁ କାହାକୁ ଜଣାଇ ନ ଥିଲି । ପରମାସ ୧୦ ତାରିଖରେ ବଲାଙ୍ଗିର କାର୍ଯ୍ୟାଳୟରେ ଯୋଗ ଦେବାକୁ ନିଯୁକ୍ତି ପତ୍ର ଆସିଲା । ଚିଠିଟି ପାଇ ମୁଁ କେଶବ ଭାଇନାଙ୍କୁ ଯାଇ ଦେଖା କଲି । ସେ ଚିଠି ପଢ଼ି ଭାରି ଖୁସି ହେଲେ ଓ ମୋର ମଙ୍ଗଳ କାମନା କଲେ । ମୋତେ ନାନାପ୍ରକାର ଉପଦେଶ ଦେବା ସଂଗେ ସଂଗେ ଭଲ ମଣିଷ ହେବାକୁ ଆଶୀର୍ବାଦ ଦେଲେ । ମୋତେ ବାଧ୍ୟ ହୋଇ ସ୍କୁଲ ଛାଡ଼ିବାକୁ ହେଲା ଓ ମୁଁ ୧୯୫୦ ମସିହାରେ ବଲାଙ୍ଗୀର ଗଲି । ସେଠାରେ ଦୁଇବର୍ଷ ଚାକିରି ପରେ ମୁଁ ଘରକୁ ଫେରିଲି ।

ଦିନେ ହଠାତ୍ କେଶବ ଭାଇନାଙ୍କ ସଙ୍ଗେ ଦେଖା ହେଲା । ସେ ମୋତେ ସ୍କୁଲରେ ଖେଳ ଶିକ୍ଷକ ହୋଇ ରହିବାକୁ ପୁନର୍ବାର ସୁଯୋଗ ଦେଲେ । କିଛିଦିନ ରହିବା ପରେ ସ୍କୁଲ ଗ୍ରାଣ୍ଟ୍ ପାଇଲା । ଏଣୁ ଜଣେ ତାଲିମ୍‌ପ୍ରାପ୍ତ ଖେଳ ଶିକ୍ଷକ ନିଯୁକ୍ତି ପାଇଲେ । ତାଙ୍କ ନାମ ଥିଲା ଅନାଥବନ୍ଧୁ ପ୍ରଧାନ । ସେ ଆସିବା ପରେ ମଧ୍ୟ ମୁଁ ଶିକ୍ଷକତା କରୁଥିଲି । ସେ ଚାଲିଗଲା ପରେ ମୁଁ ପୁଣି ଖେଳ ଶିକ୍ଷକ ଦାୟିତ୍ୱରେ ଥିଲି । କିଛି ମାସ ପରେ ରାଧାକୃଷ୍ଣ ପଣ୍ଡା ଖେଳ ଦାୟିତ୍ୱ ନେଲେ । ସେହି ବର୍ଷ ୪ର୍ଥ ଓ ୫ମ ଶ୍ରେଣୀ ମାଇନର ସ୍କୁଲରୁ ଅଲଗା ହେବା ଫଳରେ ମୋ ଚାକିରିକାଳ ସେଠାରୁ ସରିଗଲା ଓ ମୁଁ କନ୍ଦରପୁର ସ୍କୁଲରେ ନିଯୁକ୍ତି ପାଇଲି । ସେଠାରେ ଏକବର୍ଷ ଚାକିରି ପରେ ଅନ୍ୟ ଚାକିରି ପାଇଁ ଚାଲିଗଲି ।

କେଶବ ଚନ୍ଦ୍ର ନନ୍ଦ, ଯାହାଙ୍କୁ ଆମେ କେଶବ ଭାଇନା ବୋଲି ଡାକୁ, ତାଙ୍କର ମହତ୍ ଗୁଣ ଅଶେଷ । ସେ ଗୋଟାଏ ଲୋକ, ଯାହା ନିକଟରେ ମୁଁ ରାଗ ବୋଲି ଜିନିଷ କିଛି ଅନୁଭବ କରିନାହିଁ । ଭୁଲ୍ କଲେ ସେ ଏପରି ଭାବରେ ବୁଝାଇ କହନ୍ତି, ଯାହାଦ୍ୱାରା ମନରେ ପରିବର୍ତ୍ତନ ସୃଷ୍ଟି ହୁଏ । ଏପରି ଦୁଇ

ଗ୍ଵରିଥର ମୋ ଜୀବନରେ ଘଟିଥିଲା । ଶିକ୍ଷକତା କଲାବେଳେ ଥରେ ଗୋଟିଏ ପିଲା ମିଛ କହିବାରୁ ତାକୁ ରାଗରେ ଖୁବ୍ ପିଟିଥିଲି । ସେଥିରେ ସେ ମୋତେ ଏପରି ବୁଝାଇ ଦେଲେ, ଯାହାଦ୍ଵାରା ମୁ ପିଲାଙ୍କୁ ମାରିବା ପରିବର୍ତ୍ତେ ସ୍ନେହଶ୍ରଦ୍ଧା କରିବାକୁ ଶିଖିଲି । ସେପର ମହାତ୍ ଲୋକ ଯାହା ଜୀବନରେ ଥରେ ଆସିଛନ୍ତି, ତା'ର ପରିବର୍ତ୍ତନ ନିଶ୍ଚିତ । ତାଙ୍କ ପ୍ରତି ମୋର ଆନ୍ତରିକ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି ।

*ସିଦ୍ଧେଶ୍ଵରପୁର*





ତା ୨୫.୦୭.୦୫ ରିଖ ଦିନ ସିଦ୍ଧେଶ୍ଵରପୁର ଗୋପାଳ ସ୍ମୃତି ବିଦ୍ୟାପୀଠ ପରିସରରେ ସ୍ଵର୍ଗତ କେଶବଚନ୍ଦ୍ର ନନ୍ଦଙ୍କ ମରଶରୀରରେ ଶିକ୍ଷକମାନଙ୍କର ମାଲ୍ୟାର୍ପଣ ।

# କିଛି ସ୍ମୃତି ଓ କିଛି ଅନୁଭୂତି

✦ ଶ୍ରୀମତୀ ନଳିନୀପ୍ରଭା ବ୍ରହ୍ମା

ସେ ଦିନ କାଲିପରି ଲାଗୁଛି । ଚାଳିଶ-ବୟାଳିଶ ବର୍ଷ ହେଲେ ବି ସେଦିନର ସ୍ମୃତି ଆଜି ମୁଁ ଭୁଲିପାରୁନି । ୧୯୬୩ ମସିହା ଡିସେମ୍ବର ମାସ ପହିଲା, ଗୁରୁବାର । ମୁଁ ଘରେ ଥାଏ । ପରମପୂଜ୍ୟ ଅଜା ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ ଆମ ଘରକୁ ଆସି ମୋତେ ଡକାଇଲେ । ଆସିବାର ଉଦ୍ଦେଶ୍ୟ ପଚାରିବାରୁ ସେ କହିଲେ, "ଆରେ ମା' ମୁଁ ଅଥଙ୍ଗାରେ ଗୋଟିଏ ବାଳିକା ସ୍କୁଲ୍ ଖୋଲୁଛି । ସେଥିରେ ତୁ ଶିକ୍ଷୟିତ୍ରୀ ହେବୁ ବୋଲି କହିବାକୁ ଆସିଛି ।" ତା' ପୂର୍ବରୁ ମୁଁ ଘର ପାଖାପାଖି ଗୋଟିଏ ନୂଆ ସ୍କୁଲରେ ଶିକ୍ଷୟିତ୍ରୀ ଥିଲି । ଏଇ ଚାରି ପାଞ୍ଚ ମାସ ପୂର୍ବରୁ ସେ ସ୍କୁଲ ଖୋଲା ଯାଇଥାଏ । ତେଣୁ ମୁଁ ଯାଇପାରିବି ନାହିଁ ବୋଲି କହିବାରୁ ମୋର ବଡ଼ ଭାଇମାନେ ଅଥଙ୍ଗା ସ୍କୁଲରେ ରହିବାକୁ ପ୍ରବର୍ତ୍ତାଇଲେ ଓ ଆଗ ସ୍କୁଲଟି ସଠିକ୍ ପରିଚାଳନା ଅଭାବରୁ ଭାଙ୍ଗିଯିବାର ସମ୍ଭାବନାକୁ ଏଡ଼ାଇ ହେବ ନାହିଁ ବୋଲି କହିଲେ । ମୁଁ ଅଥଙ୍ଗା କେଉଁଠି ଜାଣି ନଥିବାରୁ ପୂଜ୍ୟ ଅଜା ମୋତେ ଘରଠାରୁ ତାହା ୨ କି.ମି ବୋଲି କହିଲେ । ତେଣୁ ମୁଁ ଅଜାଙ୍କ ସାଙ୍ଗରେ ସେଠାରେ ଯାଇ ପହଞ୍ଚିଲି ।

ସେହି ଗାଁ ଭିତରେ ଥିବା ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟଙ୍କର ଗୋଟିଏ ଅଧାଭଙ୍ଗା କୋଠାଘର । ସେ ଘରଟିକୁ ଦେଖିଲେ ଯେ କୌଣସି ଲୋକକୁ ଡର ଲାଗିବ । ଫଟା କାନ୍ଥ, କଡ଼ିବରଗାଗୁଡ଼ିକ ଅଧା ଅଧା ଭାଙ୍ଗି ଦୋଳି ଖେଳୁଥାନ୍ତି । ସେଥିମଧ୍ୟରୁ ଦୁଇଟି ବଖରା ଆଗରୁ ସଫାସୁତୁରା ହୋଇଥାଏ । ସେଇ ଘରେ ଅଜା ସିଦ୍ଧେଶ୍ୱରପୁର ସ୍କୁଲରୁ କେତୋଟି ବେଞ୍ଚ, ଡେସ୍କ, ଟେବୁଲ୍ ଓ ଚେୟାର୍ ଆଣି ପକାଇଥା'ନ୍ତି ଓ ସେହି ଗ୍ରାମର ଜଣେ ବୟସ୍କ ଲୋକକୁ ସେ ସମସ୍ତର ଦାୟିତ୍ୱ ଦେଇଥା'ନ୍ତି । ତାଙ୍କ ନାଁ ବିଶ୍ୱନାଥ ପ୍ରଧାନ । ସେ ଭାରି ଭଲ ଲୋକ । ତାଙ୍କୁ ସ୍କୁଲରେ ପିଅନ ରଖିଛନ୍ତି

ବୋଲି ମୋତେ କହିଲେ । ତା' ପୂର୍ବରୁ ସେ ଗାଁ ଗାଁ ବୁଲି ପିଲା ଯୋଗାଡ଼ କରୁଥା'ନ୍ତି । ସେଇ ଗାଁର କେତେଜଣ ଝିଅଙ୍କ ନାଁ ଗୋଟିଏ କାଗଜରେ ଲେଖି ମୋତେ ଦେଇ କହିଲେ, "ଏମାନେ ଷଷ୍ଠ ଶ୍ରେଣୀରେ ପଢ଼ିବେ । ତାଙ୍କ ନାଁ ଉପସ୍ଥାନ ବହିରେ ଉଠାଇ ଦେ । ସପ୍ତମ ଶ୍ରେଣୀ ପାଇଁ ତୋତେ ପିଲା ଯୋଗାଡ଼ କରିଦେବି ।" ଅକ୍ଳାନ୍ତ ପରିଶ୍ରମ ଓ ଅଗାଢ଼ ବିଶ୍ୱାସ ଯୋଗୁଁ ସେ ଯେଉଁ କାମରେ ହାତ ଦେଉଥିଲେ, ସେଥିରେ କୃତକାର୍ଯ୍ୟ ହେଉଥିଲେ । ତାଙ୍କ କହିବାନୁଯାୟୀ ଦୁଇଦିନ ମଧ୍ୟରେ ସେ ପାଞ୍ଚଜଣ ଛାତ୍ରୀ ସପ୍ତମ ଶ୍ରେଣୀରେ ପଢ଼ିବେ ବୋଲି କହି ସେମାନଙ୍କର ନାଁ ଓ ଠିକଣା ମୋତେ ଦେଇ ଯଥୋଚିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ କହିଲେ । ଦୁଇଟି ଶ୍ରେଣୀରେ ଜଣେ ଶିକ୍ଷୟିତ୍ରୀ ପଢ଼ାଇବାରେ ଅସୁବିଧା ହେଲା । ଚାରିପାଞ୍ଚଦିନ ପରେ ହଳଦିଆପଡ଼ାର ବିଷ୍ଣୁପ୍ରିୟା ସାହୁଙ୍କୁ ଆଣି ସେଠାରେ ନିଯୁକ୍ତି ଦେଲେ । ଏହିପରି ଦୁଇତିନି ମାସ ଗଲାପରେ ମୋତେ ପଚାରି ପ୍ରଭାମୟୀ ଦେବୀଙ୍କୁ ସେ ସ୍କୁଲରେ ନିଯୁକ୍ତି ଦେଲେ । କିନ୍ତୁ ବିଷ୍ଣୁପ୍ରିୟା ସାହୁ ସ୍ୱାସ୍ଥ୍ୟ ବିଭାଗ ଟ୍ରେନିଂରେ ଗଲେ । ତେଣୁ ଆମେ ଯେଉଁ ଦୁଇଜଣକୁ ସେହି ଦୁଇଜଣ ରହିଲୁ । ଆମର ଅସୁବିଧାକୁ ହୃଦୟଙ୍ଗମ କରି ସେ ଆଉ ଜଣେ ଅବସରପ୍ରାପ୍ତ ଶିକ୍ଷକଙ୍କୁ ଆଣି ଆମ ସାଙ୍ଗରେ ନିଯୁକ୍ତି ଦେଲେ । ସେ ଥିଲେ ଶ୍ରୀଯୁକ୍ତ ଧର୍ମାନନ୍ଦ ଆଚାର୍ଯ୍ୟ ।

ଏହି ଅନୁଷ୍ଠାନର ସୁପରିଚାଳନା ନିମିତ୍ତ ସେ ଏତେ ବ୍ୟସ୍ତ ହୋଇ ପଡୁଥିଲେ ଯେ ଲେଖିହେଉନି । ନିଜେ ଜୀବନବୀମା ଅଫିସରେ ଚାକିରି କରୁଥିଲେ ମଧ୍ୟ ଅନୁଷ୍ଠାନର ଉନ୍ନତି ପାଇଁ ସେ ଏତେ ମନପ୍ରାଣ ଢାଳି ଦେଇଥିଲେ ଯେ ତାହା କେବଳ ପ୍ରତ୍ୟକ୍ଷଦର୍ଶୀ ହିଁ କହିପାରିବ । ଚାକିରିରୁ ଛୁଟି ନେଇ ସାଇକେଲ୍ ଖଣ୍ଡେ ଧରି ଓ ଝୁଲାଥଳିଟିଏ କାନ୍ଧରେ ପକାଇ ସେ ବହୁଲୋକଙ୍କ ଦ୍ୱାରସ୍ଥ ହୋଇ ନିଜର ସ୍ୱାସ୍ଥ୍ୟ ତଥା ଆଭିଜାତ୍ୟକୁ ବଳି ଦେଇ ଯେଉଁସବୁ ଅନୁଷ୍ଠାନ ଗଢ଼ିଛନ୍ତି, ସେ ସବୁ ତାଙ୍କର ଜୀବଦ୍ଦଶାରେ ନୁହେଁ; ମୃତ୍ୟୁ ପରେ ହିଁ ତାଙ୍କୁ ଅମର କରି ରଖିବ । ଆଜି ଡି.ପି.ଆଇ. ଅଫିସ ତ କାଲି ଡି.ଆଇ. ଅଫିସକୁ ଦୌଡ଼ି ଦୌଡ଼ି ଅନୁଷ୍ଠାନକୁ ବଞ୍ଚାଇ ରଖିବାର ଯେଉଁ ଅଦମ୍ୟ ଉତ୍ସାହ ଦେଖାଇଛନ୍ତି, ତାହା ସଭିଙ୍କର ହୃଦ୍‌ବୋଧ ହେବା ଉଚିତ୍ ।

ଆଉ ଦିନକର କଥା । ଡି.ପି.ଆଇ. ଅଫିସରୁ ଗୋଟିଏ ଚିଠି ଆସିଥାଏ ।

ତାଙ୍କୁ ମୁଁ ସ୍କୁଲରେ ରଖିଦେଇ ଆସିଥାଏ । କିନ୍ତୁ ପରଦିନ ସକାଳୁ ତାହା ନିତାନ୍ତ ଦରକାର ଥାଏ । ମୋର ଅପରିପକ୍ୱ ମସ୍ତିଷ୍କରେ ମୁଁ ତାହା ଜାଣି ପାରିଲି ନାହିଁ । ସେ ଦିନ ତାଙ୍କର ଦେହ ଖରାପ । ତଥାପି ସେ ସ୍କୁଲକୁ ଯାଇ ତାହା ନ ପାଇବାରୁ ସାଇକେଲରେ ମୋତେ ପୁଣି ବୋହି ବୋହି ନେଇ ଫେରିଲାପରେ ବଡ଼ କ୍ଳାନ୍ତ ଅନୁଭବ କରୁଥିଲେ । ଉତ୍କଳମଣିଙ୍କ ପରି ନିଜର ସ୍ୱାସ୍ଥ୍ୟ ତଥା ପରିବାରର ଜଞ୍ଜାଳକୁ ଦାଣ୍ଡରେ ପକାଇ ଗଢ଼ିଥିବା ଅନୁଷ୍ଠାନ ପାଇଁ ସେ ଯେଉଁ ପରାକାଷ୍ଠା ଦେଖାଇ ଯାଇଛନ୍ତି, ସେ ସ୍ମୃତିଗୁଡ଼ିକ ପ୍ରଥମ ଶିକ୍ଷୟିତ୍ରୀଭାବେ ମୁଁ ନିଜେ ଅନୁଭବ କରିଛି ।

୧୯୬୫ ମସିହା ବେଳକୁ ସ୍କୁଲ ବର୍ତ୍ତମାନ ସ୍ଥାନରେ ନିର୍ମାଣ ଆରମ୍ଭ ହେଲା । ସେ ସ୍ଥାନଟି ମଧ୍ୟ ସ୍ୱର୍ଗତ ଚିନ୍ତାମଣି ଆଗ୍ରୱାଲଙ୍କର । ସେ ଜାଗାଟି ଏହି ଅନୁଷ୍ଠାନକୁ ଦାନ କରିଥିଲେ । ତେଣୁ ଅନୁଷ୍ଠାନର ନାମ ତାଙ୍କରି ନାମରେ ରହିଥିଲା 'ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର' । ଗ୍ରନ୍ଥଘର ଠାରୁ ଆରମ୍ଭ କରି କୋଠାଘର ପର୍ଯ୍ୟନ୍ତ ତିଆରିରେ ପ୍ରତ୍ୟେକ ଇଟାଖଣ୍ଡରେ କେଶବବାବୁଙ୍କର ସ୍ୱାକ୍ଷର ଅନୁଭୁତ ହେଉଅଛି । ସେ ଅମର ଆତ୍ମା ଆଜି ଆମ ଗହଣରେ ନ ଥିଲେ ମଧ୍ୟ ତାଙ୍କର ବାଣୀ ଏବେ ବି କାନ ଭିତରେ ଗୁଞ୍ଜରି ଉଠୁଛି । ସ୍କୁଲକୁ ଆଗେଇନେବା ଭିତରେ କେତେଜଣ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ତାଙ୍କର କୁତ୍ସାରଟନା ପତ୍ରପତ୍ରିକା ମାଧ୍ୟମରେ କରୁଥିଲେ ମଧ୍ୟ ତାଙ୍କର ଉପଦେଶ ଥିଲା-- ଭଲ କାମ କରିଯାଅ, ନିନ୍ଦା ବା ପ୍ରଶଂସାକୁ ଖାତିର କରନାହିଁ, ତେବେ ତୁମେ ସିଦ୍ଧପୁରୁଷ ବୋଲାଇବ ଓ ଲଗାଇଥିବା ଗଛଟି ଫୁଲଫଳରେ ଭରିଉଠି ଜୀବନ ମାନସରେ ପଲ୍ଲବି ଉଠିବ ।

ହେ ପୂଜ୍ୟ ଅମର ଆତ୍ମା । ଆଜି ଏ ଶୁଭ ମୁହୂର୍ତ୍ତରେ ଆପଣଙ୍କର ଆଶୀର୍ବାଦ ଭିକ୍ଷା କରୁଛି ।

*ପୁରାତନ ଛାତ୍ରୀ, ଗୋ. ସ୍ମୃ. ବିଦ୍ୟାପୀଠ*
*ପ୍ରଥମ ଶିକ୍ଷୟିତ୍ରୀ,*
*ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର, ଅଥଗଡ଼*



# ସ୍ୱେଚ୍ଛାସେବୀ ସୂର୍ଯ୍ୟ

✦ ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀ

ସକାଳ ସୂର୍ଯ୍ୟୋଦୟ ପରେ, ରାତିରେ ମୃତପ୍ରାୟ ଜଗତ୍ ଜାଗ୍ରତ ହୋଇ ଉଠେ । ସମସ୍ତେ ନିଜ ନିଜ ଜୀବନ-ଜୀବିକାରେ ଲାଗିପଡ଼ନ୍ତି । ପୂର୍ବଦିନର ଚିନ୍ତା, ଯୋଜନା ପରଦିନରେ କିପରି କାର୍ଯ୍ୟକାରୀ ହେବ, ସେଥିରେ ମନ ନିଯୋଗ କରନ୍ତି । ଏହା ନିତ୍ୟପ୍ରତି ଘଟଣା । ସମସ୍ତଙ୍କ ଅଲକ୍ଷ୍ୟରେ ଏକ ମହାଜାଗତିକ ସ୍ୱୟଂକ୍ରିୟ ପ୍ରାକୃତିକ ପ୍ରକ୍ରିୟା ସଂଘଟିତ ହେଉଥାଏ । ସୂର୍ଯ୍ୟ ଜୀବ-ଜଗତର ମୂଳାଧାର ହେତୁ ତାଙ୍କଠାରୁ ଶକ୍ତି ସଂଗ୍ରହ କରି ସଂସାରର ସକଳ ସ୍ଥାବର-ଜଙ୍ଗମ ସତତ ଚଞ୍ଚଳ ଓ ସତେଜ ହୋଇଥା'ନ୍ତି । ସୂର୍ଯ୍ୟ ସମସ୍ତ ଭୌତିକ ସମ୍ପଦର ଉତ୍ସ । ଜୀବନୀଶକ୍ତିର ଭଣ୍ଡାର । ତା'ଛଡ଼ା ସୂର୍ଯ୍ୟଙ୍କର ଏକ ଅନବଦ୍ୟ କୃତି ହେଲା ମେଘ ସୃଷ୍ଟି । ସେ ସବୁ ଆଡ଼େ କର (କିରଣ) ପ୍ରସାରଣ କରି ସମୁଦ୍ର, ନଦ, ନଦୀ, ନିର୍ଝରିଣୀ, ନାଳ, ନର୍ଦ୍ଦମାମାନଙ୍କରୁ ବିନା କୁଣ୍ଠାରେ ଜଳ ଶୋଷଣ ଦ୍ୱାରା ମେଘ ସୃଷ୍ଟି କରନ୍ତି । ସେହି ମେଘ ଶୀତଳ, ନିର୍ମଳ, ମଧୁର ଜଳ ବର୍ଷଣରେ ଜଗତର ଜୀବନ ସଞ୍ଚାର କରିବାର କାରଣ ହୁଏ । ସଂସାର ସବୁଜ, ଶ୍ୟାମଳ ଓ ମଧୁର ଜଳଧାରାରେ ସୁନ୍ଦର, ଶୋଭନୀୟ ହୋଇଉଠେ ।

*"କର୍ମଣ୍ୟେବାଧିକାରସ୍ତେ, ମା ଫଳେଷୁ କଦାଚନ"*

କୌଣସି ଫଳଲାଭକୁ ଆଶା ନ ରଖି ନିତ୍ୟପ୍ରତି କର୍ମଧାରାରେ କେବଳ ବ୍ୟାପୃତ ରହିବାର ଦୃଷ୍ଟାନ୍ତ, ସୂର୍ଯ୍ୟଙ୍କଠାରୁ ହିଁ ମିଳିଥାଏ । କାହାରି ନିନ୍ଦା-ପ୍ରଶଂସାକୁ ଅପେକ୍ଷା ନ କରି କର୍ମଧାରା ସ୍ୱଚ୍ଛ ରହିଥାଏ । ନିନ୍ଦାରେ ଲୁଚି ଯା'ନ୍ତି ନାହିଁ କି ପ୍ରଶଂସାରେ ଫୁଲି ଉଠନ୍ତି ନାହିଁ । ବରଂ ବେଳେବେଳେ ବାଧା ପ୍ରତିବନ୍ଧକର

ସମ୍ମୁଖୀନ ହୋଇ ଥା'ନ୍ତି । ସେ ଯେଉଁ ମେଘ ସୃଷ୍ଟି କରିଥା'ନ୍ତି, ସେହି ମେଘ ଜଳଦାନ ଗର୍ବରେ ସୂର୍ଯ୍ୟଙ୍କୁ ଢାଙ୍କି ଦିଏ । କୃତଜ୍ଞତା ପ୍ରକାଶ କରିବା ପରିବର୍ତ୍ତେ କୃତଘ୍ନର କାମ କରେ । କିନ୍ତୁ କଳାମେଘ ସୂର୍ଯ୍ୟଙ୍କୁ କେତେକାଳ ଘୋଡ଼ାଇ ରଖିପାରିବ। ଶେଷରେ ଗର୍ଜନପ୍ରବଣ ମେଘ ଜଳଶୂନ୍ୟ ହେଲାପରେ ସାମାନ୍ୟ ପବନରେ ଅପସରି ଯାଏ । ସୂର୍ଯ୍ୟ ଯେଉଁ ତେଜୀୟାନ୍‌କୁ ସେହି ତେଜୀୟାନ୍ । ଯେଉଁ ସ୍ଥିରକୁ ସେହି ସ୍ଥିର । ତାଙ୍କର ଯାହା କରିବାର କଥା କରି ଚାଲିଥା'ନ୍ତି ।

ସେହିପରି ସମାଜସେବୀ ସ୍ୱେଚ୍ଛାସେବକମାନେ ସମାଜରେ ସୂର୍ଯ୍ୟସ୍ୱରୂପ । ସେମାନଙ୍କ ଉଦୟ ସ୍ୱେଚ୍ଛାରେ ଓ କର୍ମଧାରା ସମାଜ କଲ୍ୟାଣ ପାଇଁ ଉଦ୍ଦିଷ୍ଟ । ସେମାନଙ୍କୁ କେହି ଗଢ଼ି ନ ଥାନ୍ତି କିମ୍ବା ସେମାନେ କେଉଁଠାରେ ତାଲିମ୍ ପାଇ ନ ଥା'ନ୍ତି । ଏ କ୍ଷେତ୍ରରେ ଧନୀ, ବିଦ୍ୱାନ, ପରାକ୍ରମଶାଳୀ, ଦରିଦ୍ର, ଅଶିକ୍ଷିତର ପ୍ରଶ୍ନ ଉଠେ ନାହିଁ । ମନୋବୃତ୍ତି ଉପରେ ଏହା ସମ୍ପୂର୍ଣ୍ଣ ନିର୍ଭରଶୀଳ । ତ୍ୟାଗୀ ନ ହେଲେ ସେବା ହୋଇପାରିବ ନାହିଁ । କର୍ମୀ ନ ହେଲେ କାର୍ଯ୍ୟ ଅପୂର୍ଣ୍ଣ ରହେ । ଏଣୁ ସମାଜ-ସେବୀମାନଙ୍କର ଭୂମିକା ସମାଜରେ ଅତି ମହନୀୟ ।

ତ୍ୟାଗ, ସେବା, କର୍ମ ଓ ଉଜ୍ଜ୍ୱଳ ଭାବମୂର୍ତ୍ତିର ମୂର୍ତ୍ତିମନ୍ତ ପ୍ରତୀକ, ଅନନ୍ୟ ସ୍ୱେଚ୍ଛାସେବକ ସ୍ୱର୍ଗତ କେଶବବାବୁ । ସ୍ୱଚ୍ଛଳ ପରିବାରରେ ଜନ୍ମ । ଆକର୍ଷଣୀୟ ଓ ଦର୍ଶନୀୟ ଚେହେରା । ଶିକ୍ଷିତ ଓ ମାର୍ଜିତ ରୁଚିସମ୍ପନ୍ନ ଜମିଦାର ଘରର ଜାମାତା । ଚାକିରି, ଚାଷ, ବ୍ୟବସାୟ, ଶିଳ୍ପ ସବୁଥିରେ ହାତ ଦେଇଛନ୍ତି । ଚାହିଁଥିଲେ ସବୁ ପାର୍ଥିବ ସମ୍ପଦର ଶୀର୍ଷସ୍ଥାନ ମଣ୍ଡନ କରି ପାରିଥା'ନ୍ତେ । କିନ୍ତୁ ବିଧିର ବିଧାନ ଭିନ୍ନ। ସଂକୀର୍ଣ୍ଣ ମୋହ ତାଙ୍କୁ ବାନ୍ଧି ପାରି ନଥିଲା । ସେବାବ୍ରତ ତାଙ୍କୁ ଆକର୍ଷଣ କଲା । ତରୁଣ ବୟସରୁ ସହଧର୍ମିଣୀ ପରପାରିକୁ ଚାଲିଯାଇଥିଲେ । ଆଉ ସଂସାର ଜଞ୍ଜାଳ ତାଙ୍କୁ ବାନ୍ଧି ପାରି ନଥିଲା । ଗ୍ରାମାଞ୍ଚଳର ଉନ୍ନତି ତଥା ଅନୁନ୍ନତ ଜନତାର ସେବା-ପ୍ରତି ଆଗ୍ରହୀ ହେଲେ । ତାଙ୍କ ନିକଟରେ ସେବାର ସ୍ୱରୂପ ସ୍ୱତନ୍ତ୍ର ଥିଲା । କହିବା ଅପେକ୍ଷା କରିବା ଉପରେ ବେଶି ଗୁରୁତ୍ୱ ଦେଉଥିଲେ । ସେ ଏକ ଅପ୍ରକଟ ମୌନ ସାଧକ ଥିଲେ । ସାରସ୍ୱତ ସେବାର ସ୍ୱପ୍ନକୁ ସାକାର କରିବାକୁ ହେଲେ, ଆଗ୍ରହୀ, ଶିକ୍ଷାପ୍ରେମୀ ସମାଜର ସବୁ ବର୍ଗର ଲୋକମାନଙ୍କ ସାହାଯ୍ୟ ଓ ସଂଗଠନ ପ୍ରଥମେ ଆବଶ୍ୟକ । ତାହା ସହଜସାଧ୍ୟ ନ ହେଲେ ମଧ୍ୟ ନିଷ୍ଠାପର କର୍ମୀ ନିକଟରେ

କଠିନ ନୁହେଁ । ତା'ର ପ୍ରଥମ ସୋପାନ ହେଲା ଭିକ୍ଷାଦାନ ସଂଗ୍ରହ ଅଭିଯାନ । ଏହି ଅଭିଯାନରେ ଅର୍ଥ ଓ ସମର୍ଥନ ଉଭୟ ମିଳିବ ତଥା ଉଦ୍ଦେଶ୍ୟର ପ୍ରଚାର-ପ୍ରସାର ମଧ୍ୟ ହୋଇପାରିବ ।

ଭିକ୍ଷା ଓ ସେବା ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଉଭୟ ଉଭୟଙ୍କଠାରୁ ଅଭିନ୍ନ । ଜଣେ ସ୍ୱଚ୍ଛ ସ୍ୱେଚ୍ଛାସେବୀଙ୍କ ଦ୍ୱାରା ଭିକ୍ଷା ଲବ୍ଧ ଧନ ଶତକଡ଼ା ଶହେଭାଗ ଜନକଲ୍ୟାଣ କାର୍ଯ୍ୟରେ ବିନିଯୋଗ ହୋଇଥାଏ । ସ୍ୱେଚ୍ଛାସେବକମାନେ ସ୍ୱୟଂ ଈଶ୍ୱରଙ୍କ ଦୂତ ପରି କାମ କରିଥା'ନ୍ତି । କେତେଗୁଡ଼ିଏ ମହନୀୟ ଗୁଣର ଅଧିକାରୀ ନ ହେଲେ ଜଣେ ସ୍ୱେଚ୍ଛାସେବକ ହୋଇ ପାରିବ ନାହିଁ । ନିନ୍ଦା, ଅପମାନ, ଗାଳି, ପ୍ରଶଂସା, ସମାଲୋଚନା, ଶାରୀରିକ କଷ୍ଟ ଆଦିକୁ ଭ୍ରୂକ୍ଷେପ ନ କରି ମହତ୍ ଲକ୍ଷ୍ୟ ପୂରଣରେ ସତତ ମନୋନିବେଶ କରିବା ଜଣେ ସ୍ୱେଚ୍ଛାସେବୀର ସହଜାତ ପ୍ରକୃତି ।

୬କେଶବବାବୁ ଜଣେ କର୍ମବୀର, ଜନସେବକ ତଥା ମୌନ ସାଧକ ଥିଲେ । କେବଳ କଥାରେ ପ୍ରଚାରସର୍ବସ୍ୱ ନ ହୋଇ କାର୍ଯ୍ୟକରି ଦେଖାଇ ଦେଉଥିଲେ । ଚାଷୀ, ମୂଲିଆଙ୍କୁ କର୍ମଠ ତଥା ଉତ୍ସାହିତ କରିବା ପାଇଁ ମୁଣ୍ଡରେ, ଅଣ୍ଟାରେ ଗାମୁଛା ଭିଡ଼ି, କାନ୍ଧରେ କୋଦାଳ, ମଇ ଋଷି କାଦୁଅ ପାଣି ବିଲରେ ହାଜର ତ, କେତେବେଳେ ଖାତା, କଲମ ଧରି କିଛି ଲେଖାଲେଖିରେ ବ୍ୟସ୍ତ । କେତେବେଳେ ଗ୍ରାମାଞ୍ଚଳରେ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରି ଅଭାବୀ ଲୋକଙ୍କୁ କର୍ମସଂସ୍ଥାନ ଯୋଗାଇବାରେ ମନୋନିବେଶ କରନ୍ତି ତ, କେତେବେଳେ ବହି ସିଲଟ ଦେଇ ଛୋଟ ପିଲାଙ୍କୁ ପାଠ ପଢ଼ାଇବାରେ ତତ୍ପର । ଏହିପରି ସେ ବହୁମୁଖୀ କର୍ମ ପ୍ରେରଣାର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ପ୍ରତୀତ ହେଉଥିଲେ । ଅସ୍ପୃଶ୍ୟତା, ନିଶାସେବନ ଓ ବିଳାସ ବ୍ୟସନରୂପୀ ସମାଜିକ ବ୍ୟାଧି ତାଙ୍କୁ ସ୍ପର୍ଶ କରି ନ ଥିଲା କିମ୍ବା ଶାରୀରିକ ବ୍ୟାଧି କିଛି ନ ଥିଲା । ନିର୍ମଳ, ନୀରୋଗ, ତେଜୀୟାନ୍ ଶରୀର ମୃତ୍ୟୁ ପର୍ଯ୍ୟନ୍ତ ବଜାୟ ରହିଥିଲା । ଜମି ମାଲିକ ଭାବରେ କ୍ଷେତମୁଣ୍ଡରେ ଛତା ଭିଡ଼ି ବସି, ମୂଲିଆମାନଙ୍କ ଉପରେ ହୁକୁମ୍ ଜାହିର କରୁ ନ ଥିଲେ କି ଶିଳ୍ପ ପ୍ରତିଷ୍ଠା କରି ଶିଳ୍ପପତି ସାଜିବାର ଦୁରାଶା ପୋଷଣ କରି ନ ଥିଲେ । ଲୋକସମ୍ପର୍କ ରକ୍ଷା କରିବା ତଥା ଲୋକମାନଙ୍କର ଆର୍ଥିକ ସ୍ୱଚ୍ଛଳତା ଆଣିବାରେ ଜୀବନବୀମା କମ୍ପାନୀର ପ୍ରତିନିଧି ହୋଇ ଅତି ବିଶ୍ୱସ୍ତତା ସହିତ କାର୍ଯ୍ୟ କରୁଥିଲେ । କୌଣସି ରାଜନୈତିକ ଦଳ ବା ନେତାଙ୍କର

ପ୍ରକାଶ୍ୟ ପୃଷ୍ଠପୋଷକତା ତାଙ୍କର ନ ଥିଲା କି ନିର୍ବାଚନ ପ୍ରଚାର ସଭା ପାଖ ପଶୁ ନ ଥିଲେ । ଗୋପବନ୍ଧୁ ଚୌଧୁରୀ, ରମା ଦେବୀ, ରାଧାନାଥ ରଥ, ଆଦି ପ୍ରମୁଖ ଜନସେବକଙ୍କ ସହିତ ତାଙ୍କର ସଂପର୍କ ରହିଥିଲା ଏବଂ ସେମାନଙ୍କ ଆଦର୍ଶକୁ ନିଜ ଜୀବନରେ ଆଚରଣ କରୁଥିଲେ । ନିଜ ଅଞ୍ଚଳବାସୀଙ୍କର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, କୁଟୀର ଶିଳ୍ପ, କର୍ମଠତା ଆଦିର ବିକାଶ ଦିଗରେ ନିଜକୁ ନିୟୋଗ କରିଥିଲେ । ଅଶିକ୍ଷା, କୁଶିକ୍ଷା, କୁସଂସ୍କାର, ଆଳସ୍ୟ, ବିଳାସ, ଶଠତା, ସମାଲୋଚନା ଆଦି ଅଜ୍ଞାନ ଅନ୍ଧକାରରେ ଆଚ୍ଛନ୍ନ ସମାଜରେ ଆଲୋକର ସନ୍ଧାନ ଦେବା ଦୁରୂହ ବ୍ୟାପାର ହେଲେ ମଧ୍ୟ କେଶବବାବୁଙ୍କ ପକ୍ଷେ ଦୁଃସାଧ୍ୟ ନ ଥିଲା ।

ସଂସାରରେ ଅଧିକାଂଶ ଧନୀ, କୋଟିପତି ସମାଜ କଲ୍ୟାଣ କାର୍ଯ୍ୟରେ ସ୍ୱତଃ ଧନବ୍ୟୟ କରନ୍ତି ନାହିଁ । ଯେଉଁମାନେ କରନ୍ତି ବା ଯେଉଁଠାରେ ହୋଇଥାଏ, ତାହା କେବଳ ନିଜର ପ୍ରତିଷ୍ଠା ଓ ବ୍ୟବସାୟର ପ୍ରଚାର-ପ୍ରସାର ପାଇଁ । ନଦୀରେ ବହି ଯାଉଥିବା ବନ୍ୟାଜଳ ବିପର୍ଯ୍ୟୟ ସୃଷ୍ଟି କରେ, କିନ୍ତୁ ଶ୍ରମ ଓ ଅର୍ଥ ବ୍ୟୟରେ ଖନନ କରାଯାଉଥିବା କୂପ, ତଡ଼ାଗଗୁଡ଼ିକରେ ଜଳ ଆବଶ୍ୟକତା ପୂରଣ କରେ । ସ୍ୱଚ୍ଛ ସ୍ୱେଚ୍ଛାସେବୀମାନେ ସ୍ୱତଃସ୍ଫୂର୍ତ୍ତ ବ୍ୟକ୍ତିତ୍ୱ ବଳରେ ଯେଉଁ ଭିକ୍ଷାଦାନ ସଂଗ୍ରହ କରି ସେବାକାର୍ଯ୍ୟ ସଂପାଦନ କରନ୍ତି, ତାହା ବାସ୍ତବ କଲ୍ୟାଣକର ହୋଇଥାଏ । କଥାରେ ଅଛି—"ଦେବାକୁ ମରିବାକୁ କେହି ଭଲ ପାଆନ୍ତି ନାହିଁ ।" ଏହା ବହୁ ମାତ୍ରାରେ ସତ୍ୟ ହେଲେ ମଧ୍ୟ ସ୍ୱେଚ୍ଛାସେବୀ-ଦେବଦୂତମାନଙ୍କ ନିକଟରେ ଏହାର ବ୍ୟତିକ୍ରମ ଘଟିଥାଏ । କେଶବବାବୁ ସେହିପରି ଏକ ବ୍ୟତିକ୍ରମ ବ୍ୟକ୍ତିବିଶେଷ ଥିଲେ । ସୌରକର ଯେପରି ମେଧ୍ୟ-ଅମେଧ୍ୟ ସ୍ଥାନରୁ ଜଳ ଶୋଷଣ କରି ନିର୍ମଳ-ପବିତ୍ର ମେଘ ସୃଷ୍ଟି କରେ, କେଶବବାବୁ ସେହିପରି ଭିକ୍ଷାଦାନ ସଂଗ୍ରହ କରି ଶିକ୍ଷାର ଆଲୋକ ଜାଳିଦେଇ ଯାଇଛନ୍ତି, ଯାହା ପୁରୁଷ ପୁରୁଷ ଧରି ପ୍ରଜ୍ୱଳିତ ହୋଇ ରହିଥିବ ।

ଘୋର ଦୁର୍ଦ୍ଦିନ ସମୟ । ସାମାଜିକ ଅବସ୍ଥା ଓ ବ୍ୟବସ୍ଥା ବିପର୍ଯ୍ୟସ୍ତ । ନାହିଁ ସଞ୍ଚିତ ଅର୍ଥର ସମ୍ଭାର । ଶୂନ୍ୟ ସ୍ୱେଚ୍ଛାକୃତ ସହଯୋଗ, ପଛରୁ ଗୋଡ଼ ଟାଣିବାର ବିପଦ, ପ୍ରତି ପଦକ୍ଷେପରେ ନିନ୍ଦା, ଅପବାଦ ସମ୍ଭାବନା ତ ସ୍ୱାଭାବିକ, ଏ ପ୍ରକାର ବହୁମୁଖୀ ପ୍ରତିବନ୍ଧକର ସମ୍ମୁଖୀନ ହୋଇ ସାର୍ବଜନୀନ ଶିକ୍ଷାର ବିକାଶ ଘଟାଇବାକୁ

କେଶବବାବୁ ବାହାରି ପଡ଼ିଥିଲେ । ସଂପୂର୍ଣ୍ଣ ସୁପ୍ତ ଅବସ୍ଥାରେ ଥିବା ସମାଜ ମଧ୍ୟରେ ପ୍ରବେଶ କରି ଅଶିକ୍ଷା ଅନ୍ଧକାର ନିଦ୍ରାରୁ ଏକପ୍ରକାର ବାଧ୍ୟକରି ସମସ୍ତଙ୍କୁ ଉଠାଇ ଆଲୋକ ବର୍ତ୍ତିକା ଦେଖାଇଥିଲେ । ସ୍ୱଚ୍ଛଳ ପରିବାରରେ ଜନ୍ମ । ଜମିଦାରଙ୍କର ଜାମାତା ହେଲେ ମଧ୍ୟ ଖରା, ବର୍ଷା, ଶୀତର ପ୍ରକୋପକୁ ଖାତିର ନ କରି, ନିନ୍ଦା-ଅପବାଦକୁ ନ ଡରି ଦାଣ୍ଡକୁ ବାହାରି ପଡ଼ିଥିଲେ । ସଙ୍ଗରେ ମୁଷ୍ଟିମେୟ ସହଯୋଗୀଙ୍କ ସହିତ ଦ୍ୱାରେଦ୍ୱାରେ,ଗ୍ରାମେ ଗ୍ରାମେ, ବର୍ଷ ବର୍ଷ ଧରି ବୁଲି ଚାଲିଲେ ଉଚ୍ଚ ଶିକ୍ଷା ପାଇଁ ବିଦ୍ୟା ମନ୍ଦିର ପ୍ରତିଷ୍ଠା ଉଦ୍ଦେଶ୍ୟରେ । ମନ୍ଦିର ନିର୍ମାଣ ହେଲେ ଦିଅଁ ବିଜେ କରିବେ । ଦୀପାଳି ଜଳିବ । ସେହି ଆଲୋକରେ ଅନ୍ଧାରି ମୁଲକ ଆଲୋକିତ ହେବା ସହିତ ଅଜ୍ଞତାରୂପକ ଅନିଷ୍ଟକାରୀ କୀଟ-ପତଙ୍ଗ ନଷ୍ଟ ହୋଇଯିବେ । ମଣିଷ ମଣିଷପଣିଆ ଅର୍ଜନ କରିବା ସହିତ ଜୀବନକୁ ସାର୍ଥକ କରିବ । କି ସୁଦୂରପ୍ରସାରୀ ମହତ୍ ଚିନ୍ତାଧାରା ! କି ପବିତ୍ର ତଥା ମଙ୍ଗଳମୟ ପ୍ରେରଣା ! ସର୍ବ ସାଧାରଣଙ୍କର ଅକୁଣ୍ଠ ସାହାଯ୍ୟ-ସମର୍ଥନ ଲାଭକରି ଲକ୍ଷ୍ୟ ସାଧନରେ ସଫଳ ହେବା ସହଜ ନ ହେଲେ ମଧ୍ୟ ଉତ୍ସର୍ଗୀକୃତ ସ୍ୱେଚ୍ଛାସେବୀ ସମୀପରେ ତାହା ଅସାଧ୍ୟ ନୁହେଁ ବୋଲି ପ୍ରମାଣିତ ହେଲା କେଶବବାବୁଙ୍କ ଜୀବନରେ । ଯେଉଁ ମନ୍ଦିରରେ ନିୟମିତ ଦୀପାଳି ଜଳି ଚାଲିଛି, ମନ୍ଦିରରୁ ଯେଉଁ ଦୀପାଳିଗୁଡ଼ିକ ଆଲୋକିତ ହୋଇ ବାହାରିଛନ୍ତି ସେଗୁଡ଼ିକ ମୂଳ ମନ୍ଦିରର ମହତ୍ତ୍ୱ ମର୍ଯ୍ୟାଦା ବଢ଼ାଇ ଚାଲିଛନ୍ତି । ଏହି ଅବିନାଶୀ ଗୌରବର ଅଧିକାରୀ ମନ୍ଦିର ପ୍ରତିଷ୍ଠାତାଙ୍କ ଅମର ଆତ୍ମା କେବଳ ହୋଇପାରିବେ ।

ସ୍ୱର୍ଗତ କେଶବବାବୁ ସେହି ସାରସ୍ୱତ ମନ୍ଦିର ପ୍ରତିଷ୍ଠା କରି ଦୀପ ଜଳିବାର ବ୍ୟବସ୍ଥା କରି ଯାଇଛନ୍ତି । ସେହି ଦୀପାଳିଗୁଡ଼ିକ ନିଜକୁ ଆଲୋକିତ କରିବା ସହିତ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଆଲୋକ ଦାନ କରୁଛନ୍ତି । କିଏ ଚିକିତ୍ସକ ହୋଇ ରୋଗୀ ମୁଖରେ ହସ ଫୁଟାଉଛି, ଯନ୍ତ୍ରୀ ଭାବରେ ଦେଶର ବୈଷୟିକ ବିକାଶ ସାଧନ କରୁଛି, ବିଗ୍ରହପତି ରୂପରେ ଦୋଷୀ-ନିର୍ଦ୍ଦୋଷ ନିର୍ଣ୍ଣୟ କରୁଛି, ବୈଜ୍ଞାନିକ ହୋଇ ଜାତୀୟ ବିକାଶକୁ ତ୍ୱରାନ୍ୱିତ କରୁଛି, ପ୍ରଶାସନର ଡୋରିକୁ ହାତରେ ଧରି ଶାସନ ନିୟନ୍ତ୍ରଣ କରୁଛି, କିଏ ବା ନିର୍ଦ୍ଧନ ପରିବାର ପୋଷି ସମାଜରେ ପ୍ରତିଷ୍ଠିତ ହୋଇଅଛି । ଏହିପରି ବହୁବିଧ ଜୀବିକା-ଜୀବନ ସମସ୍ୟା

ସମାଧାନ ସହିତ ଦେଶ ଓ ଦଶର କଲ୍ୟାଣ ସାଧନ କରୁଛନ୍ତି । ପାରମ୍ପରିକ ଦୀପାଳି ଉତ୍ସବ ଗୋଟିଏ ଦିନରେ ସମାପ୍ତି ହେଉଥିବା ବେଳେ ମାନବ-ଜୀବନ-ବିକାଶ ଦୀପାଳି ଯୁଗ ଯୁଗ ଧରି ଶିକ୍ଷା-ମନ୍ଦିରରେ ଜଳି ସ୍ଥଳୁଥାଏ । ଯେଉଁ ଶିକ୍ଷା-ମନ୍ଦିରଗୁଡ଼ିକ ସ୍ୱର୍ଗତ କେଶବବାବୁ ତୋଳାଇଛନ୍ତି ।

ଯେଉଁ ବ୍ୟକ୍ତି ନିଜାଧୀନ ସମୟ, ଶକ୍ତି ସମ୍ବଳ ଓ ମନକୁ ବିଶ୍ୱ କଲ୍ୟାଣରେ ବ୍ୟୟ କରେ ତାହା "ବିସର୍ଗ କର୍ମ ସଂଜ୍ଞିତଃ" ରୂପେ ଅଭିହିତ । ଅର୍ଥାତ୍ ତ୍ୟାଗ ହିଁ କର୍ମ (ଗୀତା) । ଯେତେବେଳେ ମଣିଷ ମନରେ 'କର୍ମ' ବିଷୟରେ ଦ୍ୱନ୍ଦ୍ୱ ସୃଷ୍ଟି ହୁଏ; ଯଜ୍ଞ, ଦାନ, ତପସ୍ୟା ବା ନିତ୍ୟପ୍ରତି ସମ୍ପାଦିତ ଶାରୀରିକ କ୍ରିୟା ବା ପୂର୍ବଜନ୍ମ ଅର୍ଜିତ କର୍ମ ବା ଈଶ୍ୱରଙ୍କ ସୃଷ୍ଟି ରଚନା କର୍ମ, ସେତେବେଳେ ତା'ର ସମାଧାନ ହେଲା— ନା, ଏଗୁଡ଼ିକ ସ୍ୱାର୍ଥଲାଭେଚ୍ଛା ପାଇଁ ଉଦ୍ଦିଷ୍ଟ । ତେଣୁ କେଶବବାବୁଙ୍କର କର୍ମ ତ୍ୟାଗମୟ ଥିଲା । ତା' ନ ହେଲେ ଦୁଇଟି ଉଚ୍ଚ ବିଦ୍ୟାଳୟ ଓ ଗୋଟିଏ ମହାବିଦ୍ୟାଳୟ ହୋଇ ପାରି ନ ଥା'ନ୍ତା । ଏହା କେତେ ଜଣ କର୍ମଯୋଗୀଙ୍କ ଦ୍ୱାରା ସମ୍ଭବ ହୋଇପାରିଛି । ସୂର୍ଯ୍ୟଙ୍କ ଭଳି ନିର୍ବିକାର ଭାବରେ ସମସ୍ତଙ୍କଠାରୁ ସଂଗୃହୀତ ସମ୍ବଳରେ ସବୁଦିନ ପାଇଁ ସାରସ୍ୱତ ଆଲୋକ ଜାଳି ଦେଇ ଯାଇଛନ୍ତି । ତା' ସହିତ ସେବା କିପରି କରାଯାଏ, ତାହା ସପରିବାର ସମାଜରେ ଦେଖାଇଦେଇ ଦୃଷ୍ଟାନ୍ତ ହୋଇଛନ୍ତି । ଆଶା, ଏ ଅଞ୍ଚଳବାସୀ କେଶବବାବୁଙ୍କର ଆଦର୍ଶ ଓ ନିଷ୍ଠାକୁ କିଞ୍ଚିତ୍ ଅଂଶରେ ଯଦି ନିଜ ଜୀବନରେ ପ୍ରୟୋଗ କରନ୍ତି, ତା'ହେଲେ ସାମାଜିକ ସମସ୍ୟା ସୁଧୁରିବାରେ ସହାୟକ ହେବା ସହିତ ତାଙ୍କ ଅମର-ଆତ୍ମା ଶାନ୍ତିଲାଭ କରିପାରିବ ।

ଜୟ ଉତ୍କଳ ଜନନୀ !

*ପୁରାତନ ଶିକ୍ଷକ,*
*ଗୋପାଳ ସ୍ମୃତି ବିଦ୍ୟାପୀଠ*



# କୁଆଁତାରା

## ଶ୍ରୀ ବେଣୁଧର ରାଉତ

ମାନଚିତ୍ର ରେଖାପରି ବଙ୍କାସିଧା ଅସୁମାରି ପଥ,
ସେ ପଥରେ ଗଡ଼ିଗ୍ଲେ ଜୀବନିକା ରଥ ।
କେତେ ଆଶା ଅବଶୋଷ ଜୀବନର ଉତ୍ତରଣ ଭୟ,
ସମୟର ଆଇନାରେ ମିଳେ କିଛି ଆତ୍ମପରିଚୟ ।
ଏହିଭଳି ପରିବେଶେ ସେ ମନୀଷୀ-କର୍ମ-ଦୀପାବଳୀ,
ଜନଗଣ ମାନସରେ ଏବେ ପରା ଉଠୁଅଛି ଝଳି ।
ପରାଧୀନ ଅନ୍ଧକାରେ ଯେବେ ଥିଲା ଘନ ଅନ୍ଧକାର,
ଅସମୟେ ଶୁଭୁଥିଲା କାହା ଘରେ ଖାଲି ହାହାକାର ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଠୁଳଶୂନ୍ୟ ସିଲଟରେ ଲେଖି,
କେହି ଲୋକ ଜୀବନରେ ଥରେ ହେଲେ ନଥିଲେ ଯେ ଦେଖି ।
ଏ ଦେବଙ୍କ ପୂଜା ଲାଗି ସେ ସାଧକ କଲେ ଆୟୋଜନ,
ଗ୍ରାମେ ଗ୍ରାମେ ଶ୍ରଦ୍ଧା ମାଗି ନିର୍ମାଣିଲେ ବିଦ୍ୟାନିକେତନ ।
ସ୍ୱଇଚ୍ଛାରେ ସରକାରୀ ଗ୍ଚକିରିରୁ ନେଇ ଅବସର,
ବିଦ୍ୟାମଧୁ ମହାଦାନେ ସେ ମନୀଷୀ ହେଲେ ଆଗଭର ।
ଅତୀତରେ ଦିନଲିପି ବର୍ତ୍ତମାନ ନୂଆ ରୂପେ ଦିଶେ,
ସେ ପ୍ରତିଭା ଆବେଦନ ଜନଗଣ ହୃଦୟରେ ମିଶେ ।
ସିଦ୍ଧେଶ୍ୱରପୁର ପାଖ ଆକାଶରେ ସେତ କୁଆଁତରା,
ଛାତ୍ର-ଛାତ୍ରୀ ହୃଦୟରେ ଭରିଦିଏ ଦିବ୍ୟଭାବ ଝରା ।
ପାପୁଲିର ରେଖାପରି ବଙ୍କାସିଧା ଧୂଳିମାଟି ପଥ,
ବାରିହୋଇ ପଡ଼େ ସେଇ ଢ଼ଳାପଥେ କେଶବଙ୍କ ରଥ । ✤✤

*ଅଥଙ୍ଗା*
*ପୁରାତନ ଛାତ୍ର, ଗୋପାଳ ସ୍ମୃତି ବିଦ୍ୟାପୀଠ*

# ତଥାପି ମନେହୁଏ, ତୁମେ ହୋଇଅଛ ଉଭା

ଶ୍ରୀମତୀ ଅନୁରାଧା ସେନାପତି

ହେ ସିତପ୍ରଜ୍ଞ ଦିବ୍ୟପୁରୁଷ, ଧନ୍ୟ ତବ ପିତାମାତା
ତୁମ୍ଭକୁ ଜନ୍ମଦେଇ ଅର୍ଜିଛନ୍ତି ଅପୂର୍ବ କୀରତି ।
ତୁମ୍ଭର ଅସୀମ ଆନ୍ତରିକତା, ପରିବ୍ୟାପ୍ତ ଉଦାର ହୃଦୟ
ବିଶାଳ ସାଗରର ଇଚ୍ଛାଶକ୍ତି ଓ ଅଦମ୍ୟ ଚେଷ୍ଟାରେ,
ଚାରିସ୍ତମ୍ଭେ ବିରାଜିତ ସିଦ୍ଧେଶ୍ୱର ଗ୍ରାମ ମଧ୍ୟଭାଗେ "ଗୋପାଳ ସ୍ମୃତି"
ଉଚ୍ଚ ବିଦ୍ୟାଳୟ, ସାଜିବେ ମୂକସାକ୍ଷୀ ଆଜି ।
ତୁମ୍ଭେ ସ୍ରଷ୍ଟା ଯେଉଁ ଚିରନ୍ତନ ସୃଷ୍ଟିର ତା'ର ପତ୍ରପୁଷ୍ପ
ଫଳ ଏବଂ ବୃନ୍ତର ସମ୍ଭାର, ଆଜି ଭାରତର ଚତୁର୍ଦ୍ଦିଗେ,
ବିତରନ୍ତି ମହକ ତୁମ୍ଭରି ଆଶାରେ, ତୁମ୍ଭେ ସଦା ଚେଷ୍ଟିତ,
ଦରିଦ୍ର, ନିଷ୍ପେସିତ ମାନବର ଗଢିବାକୁ ଦୃଢ ଆଶା ମନୋବଳ
ଏ ପରିଣତ ବୟସରେ ମଧ୍ୟ ।
ବିଗତ ହୋଇଛି କେତୋଟି ଦିବସ ତୁମ୍ଭରି ମହାନିଦ୍ରାର,
ତଥାପି ବି ମନେହୁଏ ତୁମ୍ଭେ ହୋଇ ଉଭା,
ଢାଳୁଅଛ ସଦା ପ୍ରେମାଶୀର୍ବାଦ ।
ତବ ଆଶୀର୍ବାଦ ଲଭି, ଚେଇଁଉଠୁ ପୁଣି ଏହି ଶିକ୍ଷାନୁଷ୍ଠାନ
ଗାଇ ତୁମ୍ଭ ଗାଥା
ଏତିକି ପ୍ରଣତି ତବ ପାଶେ ମୋର
ହେ ଚିର ନମସ୍ୟ ଦିବ୍ୟପୁରୁଷ ।



*ପୂର୍ବତନ ପ୍ରଧାନ ଶିକ୍ଷୟିତ୍ରୀ*
*ଗୋ:ସ୍ମୃ: ବିଦ୍ୟାପୀଠ, ସିଦ୍ଧେଶ୍ୱରପୁର*



୧୯୬୩ ମସିହାରେ
ସ୍ୱର୍ଗତା ପତ୍ନୀ
ଦୁର୍ଗାବତୀ ଦେବୀଙ୍କ
ମର-ଶରୀର
ନିକଟରେ
ପୈତୃକ ଗୃହ
କମା[illegible]ପୁରରେ
ସ୍ୱର୍ଗତ
କେଶବଚନ୍ଦ୍ର ନନ୍ଦ



ଗୋପାଳ ସ୍ମୃତି ବିଦ୍ୟାପୀଠ, ସିଦ୍ଧେଶ୍ୱରପୁର ୧୯୫୫ ମସିହାରୁ ମ୍ୟାଟ୍ରିକୁଲେସନ୍ ପରୀକ୍ଷା ଦେଇଥିବା ଛାତ୍ରଛାତ୍ରୀ, ସ୍କୁଲ ଶିକ୍ଷକ ଏବଂ କର୍ମଚାରୀଙ୍କ ଗହଣରେ ସମ୍ପାଦକ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ



ନିମସାହି କଟକସ୍ଥ ସ୍ୱଗୃହରେ

ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦଙ୍କର

ମରଶରୀର



କଟକ ଖାନନଗର

ସ୍ୱର୍ଗଧାମ ଶ୍ମଶାନରେ

ଚିତା ବିସର୍ଜନ




ସ୍ୱର୍ଗତ କେଶବଚନ୍ଦ୍ର
ନନ୍ଦଙ୍କ ଦ୍ୱାରା
୧୯୪୮ ମସିହାରେ
ସ୍ଥାପିତ ଗୋପାଳ
ସ୍ମୃତି ବିଦ୍ୟାପୀଠ,
ସିଦ୍ଧେଶ୍ୱରପୁର ।




ସ୍ୱର୍ଗତ କେଶବଚନ୍ଦ୍ର
ନନ୍ଦଙ୍କ ଦ୍ୱାରା
୧୯୭୮
ମସିହାରେ ସ୍ଥାପିତ
କନ୍ଦରପୁର
କଲେଜ



ସ୍ୱର୍ଗତ କେଶବଚନ୍ଦ୍ର
ନନ୍ଦଙ୍କ ଦ୍ୱାରା
୧୯୬୩
ମସିହାରେ ସ୍ଥାପିତ
ଚିନ୍ତାମଣିସ୍ମୃତି
ବାଳିକା ବିଦ୍ୟାଳୟ
ଅଥଙ୍ଗା

# ଶ୍ରଦ୍ଧାଞ୍ଜଳି

✦ ଶ୍ରୀ ସୁଧାଂଶୁ ଶେଖର ଦାସ

ନୂତନ ବନ୍ଧୁଙ୍କ ବାପା ହିସାବରେ ତାଙ୍କୁ ଦୂରରୁ ଥରେଅଧେ ଦେଖିଥିଲି ଯାହା । ସେଇଟା ବି.ଏ. ପାଠପଢ଼ା ସମୟର କଥା । ସେ ସମୟଟା ହେଉଛି ଅସମୟରେ ବନ୍ଧୁମାନଙ୍କ ପାଖକୁ ଯିବାର ଓ ଅଯଥା ସମୟ ବରବାଦ କରିବାର ସମୟ । ତେଣୁ ସ୍ୱାଭାବିକ ଭାବେ 'ବାପା'ମାନଙ୍କୁ ସର୍ବଦା ଏଡ଼ାଇ ଯିବାକୁ ହୁଏ । ସତର୍କତା ସତ୍ତ୍ୱେ ହାବୁଡ଼ିଗଲେ ମୁହଁ ପୋତି ପ୍ରଣାମଟିଏ ଚଢ଼ାଇ ଦେଇ ବାଟ କାଟି ଖସିଯିବାକୁ ଓର ଉଣ୍ଡିବାକୁ ହୁଏ । ଏ ସବୁ ତ ଠିକ୍ ଫର୍ମୁଲାରେ ଗ୍ୱଲିଥିଲା । ମାତ୍ର ତାଙ୍କର ଆମ ସହିତ କଥା ହେବାର ଆଗ୍ରହ, ଆମର ଅସହଜ ଅବସ୍ଥା ବୁଝି ସାମାନ୍ୟ ହସି ଆମକୁ ସହଜ କରିପକାଇବାର ଭାବ ମତେ କ୍ରମେ ତାଙ୍କ ପାଖକୁ ଟାଣିଲା । ବନ୍ଧୁଙ୍କ ଅନୁପସ୍ଥିତିରେ ତାଙ୍କ ସଂଗେ ଛୋଟ ଛୋଟ କଥା ନେଇ ଗପିବାରେ କିଛି ଖରାପ ଲାଗିଲା ନାହିଁ; ବରଂ ଖୁସି ଲାଗିଲା । ମନେହେଲା ଆମର ଆଉ ସାଂଗମାନଙ୍କର ବାପାମାନଙ୍କ ପରି ବେତଧରା ମାଷ୍ଟ୍ରିଆ ବାପା ସେ ନୁହନ୍ତି । ଏ ଗ୍ରହଣ କ୍ରମେ ଆନ୍ତରିକତା ପର୍ଯ୍ୟାୟ ଛୁଇଁଲା । ବିଭିନ୍ନ ସମସ୍ୟା ନେଇ ତାଙ୍କ ପାଖରେ ବେଳଅବେଳରେ ପହଁଞ୍ଚେ, ଆଉ ତାଙ୍କ ପାଖକୁ ଫେରିଲା ବେଳକୁ ସମସ୍ୟା ଥିଲେ ମଧ୍ୟ ତାର ବୋଝ ହାଲୁକା ହୋଇଯାଉଥାଏ ।

ମୋର ସମସ୍ୟାକୁ ଛିନ୍ନଭିନ୍ନ କରି ବିଗ୍ୱର କଲାବେଳେ ସେ ଯେପରି ଭାବେ ଆମ ବୟସକୁ ଓହ୍ଲାଇ ଆସନ୍ତି ଆଉ ଜୀବନରେ ଅରଜିଥିବା ଅଭିଜ୍ଞତାର ପୁଟ ଦେଇ ସେ ସବୁର ସମାଧାନ କରନ୍ତି, ତାହା ମୋତେ ବାରଂବାର ବିସ୍ମିତ କରିଛି, ଆଉ ଆକର୍ଷିତ ମଧ୍ୟ କରିଛି ।

ଆମ ସମୟରେ ଗ୍ୱକିରି ପ୍ରାୟ ମିଳୁଥିଲା । ମୋତେ ମଧ୍ୟ ପାଠପଢ଼ା ସରିବା

ପୂର୍ବରୁ ମିଳିଥିଲା । କିନ୍ତୁ ମୋର କେଜାଣି କାହିଁକି ଚାକିରି ପ୍ରତି ଆଗ୍ରହ ନ ଥିଲା । ନିଜେ କିଛି କରିବା ପାଇଁ ମୋର ଇଚ୍ଛା । ସେହି ଅନିଶ୍ଚିତ ରାସ୍ତା ବାଛିବାର ନିଷ୍ପତ୍ତି ନେବା ସମୟରେ ଯେଉଁ କେତେ ଜଣଙ୍କ ସୁଚିନ୍ତିତ ବିଚାର ମୋତେ ସାହସ ଦେଇଥିଲା, ସେମାନଙ୍କ ମଧ୍ୟରେ ପ୍ରମୁଖ ହେଉଛନ୍ତି ସ୍ୱର୍ଗତ କେଶବ ନନ୍ଦ ।

କେବଳ ସେତିକି ନୁହେଁ, ବ୍ୟବସାୟ ଆରମ୍ଭର ପ୍ରଥମ ଅବସ୍ଥାରେ ଟାଇପ୍ ମେସିନ୍‌ଟିଏ ନଥାଏ । ହାତରେ ଚିଠିପତ୍ର ଲେଖିବାକୁ ହେଉଥାଏ । ବିଶେଷ କିଛି ଚିଠି ହେଲେ ବାହାରେ ଯାଇ ଟାଇପ୍ କରି ଆଣେ । ଦିନେ ସେ ମୋର ଏକ ବଖୁରିଆ ଘର — ଅଫିସ୍‌କୁ ଆସିଥିଲେ । ଦେଖିଲେ । ମୋତେ ତାଙ୍କର କଟକ ନିମସାହି ଘରକୁ ତାଙ୍କ ପାଖକୁ ଯିବାକୁ କହିଦେଇ ଗଲେ । ମୁଁ ମଧ୍ୟ ଗଲି । ତାଙ୍କର ବୃତ୍ତିଗତ ଜୀବନ ଆରମ୍ଭରୁ ତାଙ୍କର ନିଜର ଗୋଟିଏ କ୍ଷୁଦ୍ର (Portable) ଟାଇପ୍ ମେସିନ୍ ଥିଲା । ସେଇଟି ମୋତେ ଧରାଇ ଦେଲେ । ମୋ ପାଟିରୁ କଥା ବାହାରିଲା ନାହିଁ । ମୋ ସଂକୋଚ ସେ ବୁଝି ପାରିଲେ । ଚିରାଚରିତ ଆଶ୍ୱାସନାପୂର୍ଣ୍ଣ ନରମ କଣ୍ଠରେ କହିଲେ-- ଆଗ କାମ ଚଳାଅ । ମୋ ପାଖରେ ତ ପଡ଼ିରହିଛି । ମୋର ତ ଆଉ ଦରକାର ହେଉନାହିଁ ।

ସେହି ସ୍ୱର, ସେହି ଆଶ୍ୱାସନା, ସେହି ଆପଣାର ଭାବ ମୁଁ ଏ ପର୍ଯ୍ୟନ୍ତ ମଧ୍ୟ ଭୁଲି ପାରି ନାହିଁ । କ୍ରମେ ମୋର ଏକାଧିକ ଟାଇପ୍ ମେସିନ୍ ହୋଇଛି, କଂପ୍ୟୁଟର ହୋଇଛି । ଏସବୁ ଗହଳି ଭିତରେ ସେଇ ଟାଇପ୍ ମେସିନ୍‌ର ଖଟଖଟ ଶବ୍ଦ ଆଜି ମଧ୍ୟ ମୁଁ ପରିଷ୍କାର ଶୁଣିପାରୁଛି ।

ତାଙ୍କୁ ରାଗିବାର ମୁଁ ପ୍ରାୟ ଦେଖିନାହିଁ । ତାଙ୍କର ଚତୁର୍ଥ ପୁଅ, ଯେ କି ମୋର ବନ୍ଧୁ, ସେପରି ସଂଭାବନାପୂର୍ଣ୍ଣ ମାତ୍ର ଅବୁଝା ପୁଅ ପାଇଁ ଯେ କୌଣସି ବାପ ବ୍ୟସ୍ତ, ବିବ୍ରତ ହୋଇପଡ଼ିବା ସ୍ୱାଭାବିକ । ମାତ୍ର ପୁଅର ହିସାବ ଭୁଲ ସତ୍ତ୍ୱେ, ସେ କେବେ ରାଗିବାର, ବିବ୍ରତ ହୋଇପଡ଼ିବାର, ବ୍ୟସ୍ତ ହୋଇ ଭାଗ୍ୟକୁ ନିନ୍ଦିବାର ମୁଁ ଦେଖିନାହିଁ, ଶୁଣିନାହିଁ ।

ଅନ୍ୟର ସମସ୍ୟାକୁ ନିଜର ସମସ୍ୟା ବୋଲି ମନେକରି ଅନେକ ସମୟରେ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି, ନିଜେ କୌଣସି କାରଣରୁ ସାହାଯ୍ୟ କରିବାକୁ ସମର୍ଥ ନହେଲେ ଅନ୍ୟକୁ କୁହାଇ ବନ୍ଦୋବସ୍ତ କରାଇ ଦିଅନ୍ତି ।

ସେ ଜଣେ କର୍ମଯୋଗୀ, ଆପଣା କର୍ମ ଉପରେ ତାଙ୍କର ଅଖଣ୍ଡ ଆସ୍ଥା । କୌଣସି କାମ ତାଙ୍କ ପାଇଁ ଛୋଟ ନୁହେଁ, ଆପଣାର କାର୍ ଚଳାଇ ଯିବାବେଳେ ତାଙ୍କର ମୁହଁରେ ଯେଉଁ ଭାବ, ସାଇକେଲ୍ ଚଳାଇ ଯିବାବେଳେ ମଧ୍ୟ ସେଇଆ । ନିଜର ଗାଡ଼ିଟିଏ ଥାଇ ମଧ୍ୟ ପୁରୁଣା ସାଇକେଲ୍‌ଟିଏ ଧରି ଲଂବା ରାସ୍ତା ଯିବାର ମୁଁ ଦେଖିଛି । ମୁଁ ପ୍ରଭାବିତ ହୋଇଛି ।

କିପରି କେଜାଣି ଜୀବନବୀମା ପ୍ରତି ମୁଁ ସର୍ବଦା, ଆଜି ସୁଦ୍ଧା ବୀତସ୍ପୃହ । ଜୀବନବୀମା କରିବା ଦରକାର ମୁଁ ବୁଝିଛି । ତାହା ସତ୍ତ୍ୱେ ମୋର କାହିଁକି ଏ ଅନାଗ୍ରହ, ତାହା ମୁଁ ବୁଝିପାରି ନାହିଁ । ମୋତେ ବୁଝାଇ ଗୋଟିଏ ଜୀବନବୀମା ସେ କରାଇଥିଲେ । ୪/୫ ଟି କିସ୍ତି ପରେ ଆଉ ଅବହେଳାରୁ କିସ୍ତି ଦେଇପାରିଲି ନାହିଁ । ଦେଖାହେଲେ ମନେପକାଇ ଦିଅନ୍ତି । ମାତ୍ର ଥରେ ଦୁଇଥର ପରେ ଆଉ କହିଲେ ନାହିଁ । ୧୯୭୭ ମସିହାରେ ମୋ ବାହାଘର ପରେ ମୋର ଲକ୍ଷ୍ମୀସାଗର ବ୍ରିଟ୍ କଲୋନୀ ଘର ସାମନାରେ ଦିନେ ସକାଳୁ ସାଇକେଲ୍‌ରେ ଆସି ପହଁଚିଲେ । ମୋ'ଠାରୁ ଆଗରୁ ଶୁଣିଥିବାରୁ ତାଙ୍କୁ ଚିହ୍ନିବାରେ ମୋର ପତ୍ନୀଙ୍କର କିଛି ଅସୁବିଧା ହେଲା ନାହିଁ । କିଛି ସମୟ ବସି ଝାଳ ମାରିବା ପରେ, ମୋ ସ୍ତ୍ରୀ ସହିତ ପୁରୁଣା ଜୀବନବୀମାର କିସ୍ତି ସମ୍ବନ୍ଧରେ କଥା ହେଲେ । ଏପରି ହେଲା ଯେ ସେ ପଲିସିର ବାକି ଥିବା କିସ୍ତି ତ ଦିଆଗଲା, ଆଉ ଦୁଇଟି ବୀମା ମଧ୍ୟ ନୂଆ କରି କରିଲି । ଏଇ କିଛି ବର୍ଷ ତଳେ ସେ ସବୁର ଟଙ୍କା ପାଇଲି । କିସ୍ତି ଦେବାପାଇଁ କିଛି ମାତ୍ର କଷ୍ଟ ଜଣାପଡ଼ିନଥିଲା । ମାତ୍ର ଏକକାଳୀନ ଯେଉଁ ପରିମାଣ ମିଳିଲା, ତାହା କିଛି କାମରେ ଲାଗିଲା । ଖୁସି ଲାଗିଲା ।

ମୋର ପରିବାର ସହିତ ତାଙ୍କର ସଂପର୍କ ଜୀବନବୀମାରୁ; ମାତ୍ର ସମୟର ସ୍ରୋତରେ ବୀମା କେଉଁଠି ବାଟରେ ଅଟକି ରହିଗଲା । ରହିଲା କେବଳ ସଂପର୍କ । ଯେଉଁ ସଂପର୍କଟି ଜୀବନକୁ ଆଚ୍ଛନ୍ନ କରି ରଖିଲା । ଆଜି ତାଙ୍କର ଅବର୍ତ୍ତମାନରେ ମଧ୍ୟ ସେ ଆଚ୍ଛନ୍ନ ଭାବ କଟିନାହିଁ, କଟିବ ନାହିଁ ମଧ୍ୟ ।

ତମ୍ବା ପାତ ପରି ଉଜ୍ଜ୍ୱଳ ଆର୍ଯ୍ୟ ଚେହେରା । ଯାହା ବି ପରିଧାନ କଲେ ତାଙ୍କୁ ସାଜେ । ମନେହୁଏ, ତାଙ୍କ ଶରୀରରେ ଥିବାରୁ ପୋଷାକ ଅଧିକ ଉଜ୍ଜ୍ୱଳ ମନେହେଉଛି । ପୋଷାକ ତାଙ୍କୁ ସାହାଯ୍ୟ କରୁନି, ସେ ପୋଷାକକୁ ଧନ୍ୟ କରୁଛନ୍ତି ।

ସେ ସଂସାର କରିଛନ୍ତି, ମାତ୍ର ମୋର ମନେହୁଏ ସେ ସଂସାରୀ ନୁହନ୍ତି । ସଂସାର ଛାଡ଼ିଦେଇ କୌପୁନି ମାରି ହିମାଳୟ ପଳାଇବାକୁ ନିଷ୍ପତ୍ତି ନେବାପାଇଁ ସେ ଲୋକକୁ ବୋଧେ ୫ମିନିଟ୍‌ରୁ ବେଶୀ ସମୟ ଲାଗିବ ନାହିଁ । ଥରେ ନିଷ୍ପତ୍ତି ନେଲେ ଆଉଥରେ ମଧ୍ୟ ସେ ପଛକୁ ବୁଲି ଅନାଇବେ ନାହିଁ ।

ମୋ ନିଜ ଆଖିରେ ତାଙ୍କୁ ଯେପରି ଦେଖିଛି, ସେଥିରେ ମୁଗ୍ଧ ହୋଇଛି । ଯଦି କେଉଁଠାରେ କିଛି କମି ଥାଏ, ତାହା ହୁଏତ ମୋ ଦୃଷ୍ଟିର ଭ୍ରମ ହୋଇପାରେ, ତାଙ୍କ ବ୍ୟକ୍ତିତ୍ୱର ନୁହେଁ ।

ତାଙ୍କର ଆତ୍ମା ଉଚ୍ଚତର ସୋପାନ ଆରୋହଣ କରିଥିବ । ହୁଏତ ଅଧିକ ଉପଲବ୍ଧି ପାଇଁ ଅନ୍ୟ କେଉଁଠାରେ ଜନ୍ମ ନେଇ ସାରିବଣି । ଆଜି ଏ ଲେଖା ମାଧ୍ୟମରେ ତାଙ୍କୁ ମୁଁ ମୋର ଅନ୍ତରର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

*ଲକ୍ଷ୍ମୀସାଗର ଟ୍ରିଟ୍ କଲୋନୀ,*
*ଭୁବନେଶ୍ୱର*



# ଅବିସ୍ମରଣୀୟ ଅନୁଭୂତି

✦ ଶ୍ରୀ ବଟକୃଷ୍ଣ ଜେନା

ପିଲାଦିନର କଥା । ତାଳଦଣ୍ଡା କେନାଲର ଉତ୍ତର ପାର୍ଶ୍ୱରେ ଆମ ଘର ଓ ଦକ୍ଷିଣ ପାର୍ଶ୍ୱରେ ସ୍ୱର୍ଗତ ନନ୍ଦଙ୍କର ଘର । କମାପୁର । ସେ ସ୍ୱର୍ଗତ କୃଷ୍ଣଚନ୍ଦ୍ର ନନ୍ଦଙ୍କର ସାନ ପୁଅ । ବଡ଼ପୁଅଙ୍କ ନାମ ୰ବାସୁଦେବ ନନ୍ଦ । ତାଙ୍କ ଖୁଡୁତା ୰ଗଙ୍ଗାଧର ନନ୍ଦ ନିଃସନ୍ତାନ ଥିବାରୁ ତାଙ୍କୁ ପୋଷ୍ୟପୁତ୍ର କରିଥିଲେ । ଏଣୁ କାଗଜପତ୍ରରେ ତାଙ୍କ ପିତାଙ୍କ ନାମ ଗଙ୍ଗାଧର ନନ୍ଦ ହୋଇଛି । କମାପୁର ନନ୍ଦବଂଶ, ସିଦ୍ଧେଶ୍ୱରପୁର ପ୍ରହରାଜ ବଂଶର କୁଳପୁରୋହିତ ଥିଲେ । ୰ବାସୁଦେବ ନନ୍ଦ ସମ୍ବଲପୁର ବ୍ରଜରାଜ ନଗର ଓରିଏଣ୍ଟ୍ କାଗଜ କଳରେ ସେତେବେଳ ଚାକିରି କରୁଥିଲେ ଓ ୰କେଶବ ଚନ୍ଦ୍ର ନନ୍ଦ ଅବକାରୀ ବିଭାଗରେ ଚାକିରି କରୁଥିଲେ ଯେତେବେଳେ ଗ୍ରାମକୁ ଆସନ୍ତି, ତାଳଦଣ୍ଡା କେନାଲରେ ଆମେ କେନାଲ୍‌ର ଅପର ପାର୍ଶ୍ୱରେ ତାଙ୍କୁ ଦେଖୁ । ବାଳ ଚପଳତା ସମୟରେ ମଧ୍ୟ ଆମେ ତାଙ୍କର ସେତେବେଳର ଶାରୀରିକ ଚେହେରାକୁ ଦେଖି ଅଭିଭୂତ ହୋଇପଡୁଥିଲୁ । ସେ ଦୃଶ୍ୟ ଏବେ ସୁଦ୍ଧା ମନରେ ଶିହରଣ ସୃଷ୍ଟି କରେ ।

ସ୍ୱର୍ଗତ କେଶବ ନନ୍ଦ ୰ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସାନଭାଇ ୰ବଟକୃଷ୍ଣ ପ୍ରହରାଜଙ୍କ କନ୍ୟା ଦୁର୍ଗାଦେବୀଙ୍କୁ ବିବାହ କରିଥିଲେ । ଉଭୟଙ୍କ ଚାଲିଚଳନ, ଆଚାର-ବ୍ୟବହାର ଅନ୍ୟମାନଙ୍କ ପାଇଁ ଅନୁକରଣୀୟ ଥିଲା । ତାଙ୍କର ବହୁତ ଚାଷଜମି ଥିଲା । ସେ ଜମିରେ ଅଖିମୁଠି ଦେବାକୁ ନିଜେ ଯାଉଥିଲେ ତଥା କୃଷିକାର୍ଯ୍ୟରେ ସକ୍ରିୟ ଯୋଗଦାନ କରୁଥିଲେ । ଦୁର୍ଗାଦେବୀ ଗୋରୁଗାଈଙ୍କର ଯତ୍ନ ନିଜେ ନେଉଥିଲେ ।

*ଯସ୍ମିନ୍ ଦେଶେ ନ ସମ୍ମାନୋ ନ ପ୍ରୀତିର୍ନଚ ବାନ୍ଧବାଃ ।*
*ନଚ ବିଦ୍ୟାଗମଃ କଶ୍ଚିତ୍ ନ ତତ୍ର ଦିବସଂ ବସେତ୍ ।*

ନୀତିକାର ଗ୍ରଣକ୍ୟ କହିଛନ୍ତି— ଯେଉଁ ଅଞ୍ଚଳରେ ବିଦ୍ୟାର୍ଜନରେ ସୁବିଧା ସୁଯୋଗ ନ ଥିବ ସେ ସ୍ଥାନ ବସବାସ ଯୋଗ୍ୟ ନୁହେଁ । ଏହି ଅଭାବ ପୂରଣ କରିବା ପାଇଁ ସ୍ୱର୍ଗତ ନନ୍ଦ ଗୋପାଳ ସ୍ମୃତି ବିଦ୍ୟାପୀଠ ସ୍ଥାପନ କରି ଏ ଅଞ୍ଚଳରେ ବିଦ୍ୟା ଅଧ୍ୟୟନର ସୁଯୋଗ ସୃଷ୍ଟି କରିଥିଲେ । ଅଥଙ୍ଗା ଗ୍ରାମରେ ଏକ ବାଳିକା ବିଦ୍ୟାଳୟ ମଧ୍ୟ ସ୍ଥାପନ କରିଥିଲେ । ତା'ପରେ ମହାବିଦ୍ୟାଳୟ ସ୍ଥାପନରେ ତାଙ୍କର ଅବଦାନ ଭୁଲି ହେବ ନାହିଁ । ଗାଁଗଣ୍ଡାରୁ ଝୁଲାମୁଣିରେ ଗ୍ରଉଳ, ପଇସା, ଟଙ୍କା ନିଃସଙ୍କୋଚରେ ଆଦାୟ କରି ବିରାଟ ଅନୁଷ୍ଠାନ ଗଢ଼ିବା କେବଳ ସେହି ଉଦ୍‌ଯୋଗୀ ପୁରୁଷଙ୍କ ଦ୍ୱାରା ସମ୍ଭବ ହୋଇଛି ।

ତାଙ୍କର ପିତା ସେ ସମୟରେ ଗ୍ରାଜୁଏଟ୍ ଥିଲେ । ସେ ଦର୍ପଣୀ ରାଜ୍ୟର ଦେୱାନ ପଦବୀରେ ନିଜର କର୍ମନିଷ୍ଠା ବଳରେ ଉକ୍ତ ରାଜ୍ୟର ପ୍ରଭୂତ ଉନ୍ନତି ସାଧନ କରିଥିଲେ ଓ ରାଏସାହେବ ଉପାଧି ପାଇଥିଲେ । କେଶବବାବୁ ଦର୍ପଣୀ ରାଜ୍ୟର ରାଣୀଙ୍କୁ କଲେଜ୍ ସ୍ଥାପନ ସମୟରେ ଆମନ୍ତ୍ରଣ କରି ଆଣିଥିଲେ । ସ୍ୱର୍ଗତ ନନ୍ଦ ଏହିପରି ଭାବରେ ନିଜର ବ୍ୟକ୍ତିତ୍ୱ ଓ ନିଷ୍ଠା ବଳରେ, ଆଠ'ଣା, ଟଙ୍କାଏ ଠାରୁ ଶହ ହଜାର, ଲକ୍ଷ ପର୍ଯ୍ୟନ୍ତ ସଂଗ୍ରହ କରି ଅନୁଷ୍ଠାନ ଗଢ଼ିଥିଲେ । ତାଙ୍କର କର୍ତ୍ତବ୍ୟନିଷ୍ଠାରେ ଅନୁପ୍ରାଣିତ ହୋଇ ଅନେକ ଅକୁଣ୍ଠ ସାହାଯ୍ୟ କରିବାକୁ ଆଗେଇ ଆସୁଥିଲେ ।

ଏଣୁ ସ୍ୱର୍ଗତ ନନ୍ଦଙ୍କ ସ୍ମୃତିରକ୍ଷା ପାଇଁ ସ୍ଥାୟୀ ସ୍ମାରକୀ ପ୍ରତିଷ୍ଠା କରିବାକୁ ମୁଁ ସ୍ଥାନୀୟ ଜନସାଧାରଣଙ୍କୁ ନିବେଦନ କରୁଅଛି ।

*ଅଭାରପୁର, କଟକ ସଦର*



# ଜୀବନକୁ ବୁଝିପାରିଥିବା ମଣିଷଟିଏ

✦ ଶ୍ରୀ ଅନାଦି ଚରଣ ମହାପାତ୍ର

ପରିବାରର ମୁଖ୍ୟ ବାପା ଗ୍ଚଲିଗଲେ ସପରିବାରେ ସମସ୍ତେ ଭାଙ୍ଗିପଡ଼ନ୍ତି । କାରଣ ଜନ୍ମଠାରୁ ଲାଳନପାଳନ, ଶିକ୍ଷା, ସଂସ୍କୃତି, ପରମ୍ପରା ପ୍ରତିଷ୍ଠା ସବୁଥିରେ ତାଙ୍କ କରଣିର ଛାପ । ଆଜି ୨୦୦୫, ଅଗଷ୍ଟ ୬, ଶନିବାର । ଗୋପାଳ ସ୍ମୃତି ବିଦ୍ୟାପୀଠରେ ପ୍ରାଙ୍ଗଣ ଭରପୂର୍ । ମହା ସମାରୋହ ଅନୁଷ୍ଠିତ । ଏ ଶୋକସଭା କାହା ତିରୋଧାନରେ ? କିଏ ସେ ସ୍ୱର୍ଗତ ? ସେ ହେଉଛନ୍ତି ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ । ଏ ଅଞ୍ଚଳର ଶିକ୍ଷିତ ସମାଜର ଜନକ । ପୁଞ୍ଜିପତି, କୋଟିପତି, ଧନାଢ୍ୟର ଅନୁଦାନରେ ନୁହେଁ, ପଲ୍ଲୀବାସୀଙ୍କ ଠାରୁ କାନିପତା ମୁଷ୍ଟି ଭିକ୍ଷାରେ ...

ଗୋଟିଏ ନୁହେଁ, ଏକାଦିକ୍ରମେ ତିନି ତିନିଟି ଶିକ୍ଷାନୁଷ୍ଠାନ ଏ ଅଞ୍ଚଳ ପାଇଁ ଶିକ୍ଷାର ତ୍ରିବେଣୀ— ଗୋପାଳ ସ୍ମୃତି ବିଦ୍ୟାପୀଠ, ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟାମନ୍ଦିର, କନ୍ଦରପୁର କଲେଜ ଯାହାଙ୍କ ଯୋଗୁଁ ସମ୍ଭବ, ସ୍ୱର୍ଗତ ସେହି ଅମର ଆତ୍ମା କେଶବ ଚନ୍ଦ୍ର ନନ୍ଦଙ୍କ ପାଇଁ ଶୋକସଭା ।

ଅଗଷ୍ଟ ୫ ତାରିଖ ଶୁକ୍ରବାର ଓ ଛଅ ତାରିଖ ଶନିବାର ଦିନ ମାଳିକାପ୍ରସିଦ୍ଧ ପୁଣ୍ୟତୋୟା ରହଯୋଡ଼ି(ରହବଟ)ରେ ତିଳତର୍ପଣ ଗୋପାଳ ସ୍ମୃତି ବିଦ୍ୟାପୀଠରେ ଶୋକସଭା ପାଇଁ ନିରାଡ଼ମ୍ବର ପ୍ରସ୍ତୁତିପର୍ବ । ମୂଷଳଧାରାରେ ଅବିଶ୍ରାନ୍ତ ବର୍ଷା । ସମସ୍ତ ଉଦ୍ୟୋଗ କ'ଣ ବୃଥା ଯିବ ?

"ବର୍ଷା ଛାଡ଼ିଯାଉ ପ୍ରଭୁ !" ଶ୍ରଦ୍ଧାଳୁ ଗୁଣମୁଗ୍ଧମାନଙ୍କ ସମାବେଶ ଜମି ଜମି ଆସୁଛି । ଆଶ୍ଚର୍ଯ୍ୟର କଥା । ହଠାତ୍ ଶ୍ରାବଣର ମେଘମେଦୁର ଆକାଶ ପରିଷ୍କାର ହୋଇଗଲା । ସମସ୍ତେ ମୁଗ୍ଧଚକିତ । ଶୋକ ସମାରୋହକୁ ସର୍ବାଙ୍ଗସୁନ୍ଦର କରିବାକୁ, ଯାହା କେବଳ ପୁଣ୍ୟାତ୍ମାମାନଙ୍କ କ୍ଷେତ୍ରରେ ସମ୍ଭବ ହୋଇଥାଏ ।

## ଗୋପାଳ ସ୍ମୃତି ବିଦ୍ୟାପୀଠ ଓ କେଶବଚନ୍ଦ୍ର ନନ୍ଦ

ଗୋପାଳ ସ୍ମୃତି ବିଦ୍ୟାପୀଠର ବହୁ ପୂର୍ବରୁ ଏଠାରେ ଲକ୍ଷ୍ମୀଧର ମଧ୍ୟ ଇଂରାଜୀ ବିଦ୍ୟାଳୟ ଥିଲା । ଏହି ମାଇନର ସ୍କୁଲର ଛାତ୍ର ଆମ୍ଭେମାନେ । ୧୯୫୦ରେ ରେଭେନ୍ସା କଲିଜିଏଟ୍ ସ୍କୁଲରେ ବୋର୍ଡ଼ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେଲାପରେ ଗୋପଳ ସ୍ମୃତି ବିଦ୍ୟାପୀଠରେ ଆମେ ନାମ ଲେଖାଇଲୁ ।

କେଶବବାବୁଙ୍କ ବଡ଼ପୁଅ ଝୁଲୁ(କାହ୍ନୁ ପ୍ରସାଦ ନନ୍ଦ), କୈଳାସ ମିଶ୍ର, ପୂର୍ଣ୍ଣଚନ୍ଦ୍ର ପ୍ରହରାଜ, ଆମ ଗାଁ ଝରିଭାଇ, ସାହିର ଈଶ୍ୱର ପତି, ଘନ ପତି(ବିରିବାଟୀ), ନୃସିଂହ ମହାପାତ୍ର(ରଘୁନାଥପୁର), ଯୋଗେନ୍ଦ୍ର ପ୍ରଧାନ(କମରପଦା) ପ୍ରଭୃତି ଆମେ ସବୁ ୧୯୫୩ର ମାଟ୍ରିକ୍ ଛାତ୍ର ।

ପ୍ରଖ୍ୟାତ ଦାର୍ଶନିକ ସ୍ୱର୍ଗତ ରତ୍ନାକର ପତି, କେଶବ ଚନ୍ଦ୍ର ନନ୍ଦ, ଉପେନ୍ଦ୍ର ନାରାୟଣ ଆଗ୍ରୱାଲ୍ୟ ପ୍ରମୁଖ ପିତୃପ୍ରତିମ ବ୍ୟକ୍ତିମାନଙ୍କର ଗୋପାଳ ସ୍ମୃତି ବିଦ୍ୟାପୀଠ ପାଇଁ ଉଦ୍ୟୋଗ-ସ୍ମୃତି କେବଳ ଯାହା ମନେଅଛି ।

ସେତେବେଳେ ଅବିଭକ୍ତ କଟକ ଜିଲ୍ଲାର ମହାନଦୀ, କାଠଯୋଡ଼ି ତ୍ରିକୋଣ ଭୂଖଣ୍ଡ ମଧ୍ୟରେ ଜଗତ୍‌ସିଂହପୁରର ଶ୍ରୀକୃଷ୍ଣ ଏକାଡେମୀ, ତିର୍ତ୍ତୋଲର ମଣିଚରଣ ଶାରଳା ଏକାଡେମୀ, କଟକର ରେଭେନ୍ସା କଲିଜିଏଟ୍ ସ୍କୁଲକୁ ଛାଡ଼ିଦେଲେ ବୋଧହୁଏ ଅନ୍ୟ କୌଣସି ହାଇସ୍କୁଲର ନାମଧାମ ଥିଲାଭଳି ମନେହୁଏ ନାହିଁ । ଏବେ ଏ ସବୁ ଅଞ୍ଚଳରେ ଯେତେ ଯେତେ ହାଇସ୍କୁଲ ଗଢ଼ିଉଠିଛି ଅଗ୍ରଗଣ୍ୟ ଗୋପାଳ ସ୍ମୃତି ବିଦ୍ୟାପୀଠର ଶୁଭ ପ୍ରତିଷ୍ଠା ଯେ ପରବର୍ତ୍ତୀ ଏ ସମସ୍ତ ହାଇସ୍କୁଲଗୁଡ଼ିକ ପାଇଁ ପ୍ରେରଣାର ଉତ୍ସ ହୋଇଥିଲା । ଏହା ସର୍ବାଦୌ ସ୍ୱୀକାର୍ଯ୍ୟ ।

ଗତିରାଉତପାଟଣା, ରାଜହଂସ, କୋରକରା, ପାଟସୁନ୍ଦରପୁର, ବିରିବାଟୀ, କିଶୋର ନଗର, ରଘୁନାଥପୁର, ବିରିଡ଼ି ଶଙ୍ଖାରୀସାହି ଲଗାୟତ ଗ୍ଲିଶ ମାଇଲ ଚଉହଦୀ ଭିତର ଗାଁମାନଙ୍କ ପାଇଁ ଏ ବିଦ୍ୟାଳୟଟି ଏକମାତ୍ର ଶିକ୍ଷାନୁଷ୍ଠାନ ଥିଲା ।

ସିଦ୍ଧେଶ୍ୱରପୁରର କେଶବଚନ୍ଦ୍ର ନନ୍ଦ, ଭବାନୀ ଶଙ୍କର ପ୍ରହରାଜ, ଦେବେନ୍ଦ୍ର ଆଗ୍ରୱାଲ୍ୟ, ସଚ୍ଚି ନନ୍ଦଙ୍କ ଘରେ ରହି ପିଲାମାନେ ଏ ବିଦ୍ୟାଳୟରେ ପଢୁଥିଲେ । ପୁରୁଣା ଏମ.ଇ. ସ୍କୁଲର(୧୮୭୯) ହଷ୍ଟେଲଟିଏ ବି ଥିଲା । ଦୂରଦୂରାନ୍ତରୁ ପିଲାଏ

ସାଇକେଲରେ ଯା'ଆସ କରୁଥିଲେ । ମାସକୁ ବାରସେର ଚାଉଳ, ଦୁଇସେର ଭଙ୍ଗାମୁଗ, ଚାରିଟଙ୍କା ହଷ୍ଟେଲ ଚାର୍ଜ ଦେବାକୁ ହେଉଥିଲା । ନୀଳକଣ୍ଠ ଭାଇନାଙ୍କ ପିଆଜି, ବରା, କଖାରୁ ଫୁଲରି ବାଇଗଣି ଗୋଟାକୁ ଛ'ନୂଆ ପଇସା । ଅନୁବାବୁଙ୍କ ବଗିଚାରେ ପଇସା ଦେଇ ପିଜୁଳି, ଜାମୁରୋଳ, କିଣି ଖାଉ । ମନେ ଅଛି ଥରେ ଜନୈକ ଶିକ୍ଷକ କ୍ଷୀରୋଦ ତ୍ରିପାଠୀଙ୍କ ସହିତ ଭବାନୀ ସାର୍‌ଙ୍କର କୌଣସି କାରଣରୁ ଉଚ୍ଚବାଚ ହେବାରୁ ଭାବାନୀବାବୁ ଖଣ୍ଡା ଧରି ବାହାରି ଆସିଥିଲେ । ଏ ବିବାଦ ସେତେବେଳେ କେଶବବାବୁଙ୍କ ମଧ୍ୟସ୍ଥତା ଯୋଗୁଁ ଥଣ୍ଡା ପଡ଼ିଯାଇଥିଲା ।

### ଚିନ୍ତାମଣି ସ୍ମୃତି ବାଳିକା ବିଦ୍ୟା ମନ୍ଦିର ଓ କେଶବବାବୁ

ସିଦ୍ଧେଶ୍ୱରପୁର ରାସ୍ତାକଡ଼ 'ବଗିଚା ତୋଟା' (ଆଜିର ରେଳବାଇ ଲେଭେଲ କ୍ରସିଂ ପାଖ ସାନ୍ତାଳ ବସ୍ତି) । ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ପୂର୍ବତନ ବରିଷ୍ଠ କେନ୍ଦ୍ରମନ୍ତ୍ରୀ ରାଜ୍ୟପାଳ ସ୍ୱର୍ଗତ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ପାର୍ଲ୍ୟାମେଣ୍ଟ ନିର୍ବାଚନ ପାଇଁ ସଭା ଚାଲିଥାଏ । (୧୯୬୧/୬୨) ସେତେବେଳେ କଂଗ୍ରେସିଆ ଟୋକା ଭାବରେ ୩/୪ ଖଣ୍ଡ ଗାଁ'ଗହଳିରେ ମୁଁ ଟିକିଏ ଜଣାଶୁଣାକୁ ଆସୁଥାଏ । କେଶବବାବୁ ଆଉ ମୁଁ ଗୋଟିଏ ବାଳିକା ଏମ.ଇ.ସ୍କୁଲ ପାଇଁ ଦରଖାସ୍ତଟିଏ ନିତ୍ୟାନନ୍ଦବାବୁଙ୍କୁ ଦେଲୁ । ଏ କଥା ମୋର ପାଶୋର ଯାଇଥାଏ । କେଶବବାବୁ କିନ୍ତୁ ଏ ବାବଦରେ ଖୁବ୍ ସଚେତନ ଥା'ନ୍ତି ।

ମନେପଡୁଛି ଏହାର କେତେମାସ ପରର କଥା । ଆମ ଗାଁ ମେଲଣ ଦାଣ୍ଡରେ ଆମେ କେତେଜଣ ଯୁବକ ଶଗଡ଼ ଉପରେ ବସିଥାଉ । ସକାଳୁ ସକାଳୁ କେଶବବାବୁ ପହଞ୍ଚିଲେ । କହିଲେ, "ଅନାଦି ଆମ ବାଳିକା ସ୍କୁଲ ମଞ୍ଜୁର ମିଳିଗଲା । କ'ଣ କରିବା ପିଲା ଯୋଗାଡ଼ କଥା ? (ସେତେବେଳକୁ ସ୍କୁଲର କିନ୍ତୁ ନାମ ଗନ୍ଧ ନାହିଁ ) ଷଷ୍ଠଶ୍ରେଣୀ ଆରମ୍ଭ ପାଇଁ ନିହାତି ପଚିଶି/ତିରିଶି ଜଣ ଝିଅପିଲା ଦରକାର । ଶେଷକୁ ଆମ ଖଞ୍ଜାର ତିନୋଟି ଝିଅ, ଯେଉଁମାନେକି କେଉଁକାଳୁ ପାଠପଢ଼ା ଛାଡ଼ି ଘରେ ବସିଥିଲେ (ପ୍ରମିଳା ମହାପାତ୍ର, କୁସୁମ ମହାପାତ୍ର, ହାଡ଼ି ଦେଈ), ସେମାନଙ୍କୁ ନେଇ ଷଷ୍ଠ ଆରମ୍ଭ.କଲୁ ।

ଆମ ଅଞ୍ଚଳର ଜଣାଶୁଣା ସ୍ୱାଧୀନତା ସଂଗ୍ରାମୀ ହଳଦିଆପଡ଼ାର ଜଗନ୍ନାଥ

ସାହୁଙ୍କୁ ଭେଟିଲୁ । ତାଙ୍କ ଝିଅ କ୍ଷେମାକୁ ଏହି ବିଦ୍ୟାଳୟରେ ଶିକ୍ଷକତା କରିବା ପାଇଁ ଅନୁରୋଧ କଲୁ । ଜଗନ୍ନାଥବାବୁ ଗାନ୍ଧିବାଦୀ, ସ୍ୱାଧୀନତା ସଂଗ୍ରାମୀ । ସେବାମୂଳକ କାର୍ଯ୍ୟପାଇଁ ସ୍ୱୀକୃତି ଦେଲେ । ପରେ ପରେ କଇଜଙ୍ଗା ବଣିଆ ସାହିର ରାଧୁ ସାହୁଙ୍କ ଝିଅ ଶୈଳକୁ ମଧ୍ୟ ସେକେଣ୍ଡ୍ ଟିଚର ଭାବେ ପାଇଥିଲୁ ।

ସେକାଳ କଥା । ଶିକ୍ଷକତା ପାଇଁ ଉଚ୍ଚଶିକ୍ଷିତ ପୁଅଟିଏ ପାଇବା ତ କାଠିକର ପାଠ । ତହିଁରେ ପୁଣି ଝିଅ । ବହୁ ଖୋଜାଖୋଜି କରି ଏହି ଦୁଇଜଣଙ୍କୁ ପାଇଲୁ ।

**ସ୍କୁଲ ପାଇଁ ଘର—**

ପିଲା ମିଳିଲେ । ଶିକ୍ଷୟିତ୍ରୀ ମିଳିଲେ । ହେଲେ ଘର ?- ଛାତ ଛପର ନ ଥିବା ଅଥଙ୍ଗା କଚେରିବାଗି ପୁରୁଣା ଖମାର ଘର । ଚୁନ ପଲସ୍ତରା ଛାଡ଼ିଯାଇ ଇଟା ଯୋଡ଼େଇ ଦିଶିଲାଣି । ଖ୍ୱଲଛପର କରାଗଲା । ଝଡ଼ାଝଡ଼ି ଲିପାପୋଛା କରିଦେଇ ଟିକିଏ ଚୁନ ଲେପି ଦେଲୁ । ସେହି ଘରେ ଏମ.ଇ. ସ୍କୁଲ ଆରମ୍ଭ ହେଲା ।

**ପରିଚାଳନା କମିଟି—**

କେଶବବାବୁ, କମ୍ୟୁନିଷ୍ଟ ନେତା ପ୍ରହଲ୍ଲାଦ ସେଠୀ ଓ ମୁଁ ଏହି ତିନିଜଣଙ୍କୁ ନେଇ ପ୍ରଥମ ମ୍ୟାନେଜିଙ୍ଗ୍ କମିଟି ଗଢ଼ାହେଲା ।

**ଏମ.ଇ. ସ୍କୁଲ ପରେ ଗାର୍ଲସ୍ ହାଇସ୍କୁଲ ପାଇଁ ଉଦ୍ୟମ—**

ଅଥଙ୍ଗା ମଉଜାଟି ପ୍ରଖ୍ୟାତ ଆଇନଜୀବୀ, ସାହିତ୍ୟିକ, ଜମିଦାର ରାୟବାହାଦୁର ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟଙ୍କ ଜମିଦାରୀ ସିରସ୍ତା ଅନ୍ତର୍ଭୁକ୍ତ । ତାଙ୍କ ପୁଅ କାଳୀ ପ୍ରସନ୍ନ ଆଚାର୍ଯ୍ୟ (କାଳୀବାବୁ) ପ୍ରାୟ ଅଥଙ୍ଗା ମଉଜାରେ ରହୁଥା'ନ୍ତି ।

ଏବେ ଯେଉଁଠାରେ ବାଳିକା ହାଇସ୍କୁଲଟି ଗଢ଼ିଉଠିଛି, ସେ ଜାଗାଟି ପଡ଼ିଆ ଥିଲା । କେତୋଟି ପିଜୁଳିଗଛ ଆଉ ଟୁବଟିଏ ବି ଥିଲା । ସେ ଜାଗାଖଣ୍ଡକ ପାଇଁ କାଳୀବାବୁଙ୍କ ସଙ୍ଗେ ଆଲୋଚନା କରିବାରେ କାଳୀବାବୁ କହିଲେ—"ବାପାଙ୍କୁ ପଚାର ।"

ଦିନେ ସକାଳୁ ସକାଳୁ କେଶବବାବୁ ଓ ମୁଁ କଟକ ତଳତେଲେଙ୍ଗା ବଜାରସ୍ଥ ଚିନ୍ତାମଣିବାବୁଙ୍କ କୋଠିରେ ପହଞ୍ଚିଲୁ । ଆଗରୁ ପିଲାଦିନେ ମାଟ୍ରିକ କ୍ଲାସର ସାହିତ୍ୟ

ପ୍ରବେଶରେ ତାଙ୍କର ଗୋଟିଏ ଲମ୍ବା ବିଷୟ(ତାଜମହଲ) ପଢ଼ିଥିଲି; କିନ୍ତୁ ତାଙ୍କୁ ଦେଖି ନଥିଲି । ଚିନ୍ତାମଣିବାବୁଙ୍କୁ ସେଇଠି ଦେଖିଲି— ଦୀର୍ଘକାୟ, ସୁନ୍ଦର ସ୍ୱାସ୍ଥ୍ୟ, ଚିକ୍କଣ କଳା । ଗଲାବେଳେ ବଡ଼ ବସ୍‌ରେ ଯାଇଥିଲୁ । ଆସିଲାବେଳେ ଦିଆସିଲି ଖୋଳ ବସ୍‌ରେ ଫେରିଲୁ । ବସ୍ ଭଡ଼ା ଓ ରିକ୍ସା ଭଡ଼ା କେଶବବାବୁ ତାଙ୍କ ପକେଟରୁ ଦିଅନ୍ତି ।

**କନ୍ଦରପୁର କଲେଜ ଓ କେଶବବାବୁ—**

କେଶବବାବୁ କନ୍ଦରପୁର କଲେଜ ସଂପର୍କରେ ଆସିଲାବେଳକୁ ଆମ୍ଭେ ନିଯୁକ୍ତ କର୍ମରେ ଅନ୍ୟତ୍ର ଦୂରଦୂରାନ୍ତରେ ଥିବାଯୋଗୁଁ କଲେଜ କାର୍ଯ୍ୟରେ ଆମ୍ଭ ସଂପର୍କ କ୍ରମେ ଧିମେଇ ଯାଇଥିଲା । ମଧ୍ୟବର୍ତ୍ତୀ ସମୟରେ କେଶବବାବୁଙ୍କ ସଂପୃକ୍ତି ଓ ସହଯୋଗ କଲେଜ କାର୍ଯ୍ୟକୁ ପ୍ରଗତିଶୀଳ କରିଥିଲା । ଏହା ବୁଝାଇ କହିବାର ନୁହେଁ ।

ନୂତନ କଲେଜଟିକୁ ଆର୍ଥିକ ସ୍ୱଚ୍ଛଳତା ପାଇଁ କେତେଗୁଡ଼ିଏ ଉପାଦେୟ ପ୍ରସ୍ତାବ ଆସିଥିଲା । ମାତ୍ର କେତେଜଣ ପ୍ରତିକୂଳ ମତବାଦୀଙ୍କ ନକରାତ୍ମକ ମନୋଭାବ ଯୋଗୁଁ ସେ ସମସ୍ତ ପ୍ରସ୍ତାବ କେବଳ ପ୍ରସ୍ତାବନାରେ ହିଁ ରହିଗଲା । କାରଣ "ଧନ, ମନ, କଳା, କୌଶଳ, ଜ୍ଞାନ, ବିଜ୍ଞାନାଦି ସର୍ବଶକ୍ତି ବିନିମୟରେ ସୁନ୍ଦର ମନ୍ଦିରଟିଏ ବି ସାମାନ୍ୟ ହାତୁଡ଼ିଟିର ବିରୋଧ ବିଘାତରେ ବିକୃତ ବିକଳାଙ୍ଗ ହୋଇ ମନ୍ଦିରରୁ ଭୂତକୋଠିର ବିକୃତରୂପ ବହନ କରିପାରେ ।" ଏ ସମ୍ବନ୍ଧେ ବିଶଦ ବିବରଣୀ ଅଶୋଭନୀୟ ।

**କଲେଜରେ Functional ଶିକ୍ଷା—**

କେଶବବାବୁଙ୍କ ଇଚ୍ଛା, ଛାତ୍ରୀମାନଙ୍କ ପାଇଁ କଲେଜରେ କିଛି ଧନ୍ଦାମୂଳକ ଶିକ୍ଷା ରହୁ । ଆମ ଗାଁ' 'ବିଶ୍ୱଭଗ୍ନୀ ମହିଳା ସମିତି' ରାଜ୍ୟ ସମାଜ କଲ୍ୟାଣ ବୋର୍ଡ଼ରୁ ଗାଁର ବେକାରୀ ମହିଳାଙ୍କ ନିଯୁକ୍ତି ପାଇଁ ଦଶଟି ସିଲେଇ ମେସିନ୍ ପାଇଥାଏ । ମୋ ଝିଆରି ସ୍ୱର୍ଗତା କବିତା ମହାପାତ୍ର ଏହାର ପ୍ରେସିଡେଣ୍ଟ ଥାଏ । ପାରାବିଲର ପଦ୍ମାବତୀ ବାରିକ ସିଲେଇ ଶିକ୍ଷୟିତ୍ରୀ ଭାବେ ନିଯୁକ୍ତି ପାଇଥା'ନ୍ତି ।

ଦିନେ 'ଦୁଲ୍ଲାଦେବୀଙ୍କ ପାଖ ବଟ ସେଠୀ ଘର ନାଳ ବନ୍ଧରେ କେଶବବାବୁଙ୍କ ସହିତ ଦେଖାହେଲା । କହିଲେ— ଅନାଦି, ଭଲ ବେଳରେ ଦେଖା ହୋଇଗଲା ।

ତୁମ ପାଖକୁ ଯାଉଥିଲି । କଥା କ'ଣ ପଗ୍ଭରିବାରୁ କହିଲେ, "ତମ ମହିଳା ସମିତିରୁ କଲେଜକୁ କିଛିଦିନ ପାଇଁ ଗୋଟିଏ ସିଲେଇ ମେସିନ ଯଦି ମିଳିପାରନ୍ତା Functional Training Classଟିଏ ଖୋଲିଦେଇ ପାରନ୍ତେ । ସବୁ ତ ଜାଣୁଛ । ନଗଦ କିଣିବାକୁ ନଅ ଶହ ଟଙ୍କା କେଉଁଠୁ ପାଇବା । ଏତିକି କରିପାରିଲେ ବଡ଼ ସାହାଯ୍ୟ ହୁଅନ୍ତା ।

ପହିଲେ ମୁଁ ଟିକିଏ ଥମିଗଲି । କାରଣ ମେସିନ୍‌ଗୁଡ଼ିକ ସରକାରୀ ଗ୍ରାଣ୍ଟର । ଅନ୍ୟତ୍ର ସ୍ଥାନାନ୍ତରିତ ହେଲେ Welfare Officer ଙ୍କ Visit ବେଳକୁ କାଳେ କିଛି ସମସ୍ୟା ହୋଇପାରେ । ତଥାପି କହିଲି, "ହଉ ଗାଁକୁ ଗ୍ଭଲନ୍ତୁ, ମହିଳା ସମିତିରେ ପହଞ୍ଚିଲୁ । ପିଲାମାନେ କ୍ଲାସରେ ଥିଲେ । ସେମାନେ ସମସ୍ତେ କେଶବବାବୁଙ୍କୁ ଚିହ୍ନିଥିଲେ । ଉଠି ପ୍ରଣାମ କଲେ । ଗୋଟିଏ ବୁଦ୍ଧି ପାଞ୍ଚିଲି । କହିଲି, "ମଉସା କଲେଜକୁ ଗ୍ଭନ୍ଦା ପାଇଁ ଆସିଛନ୍ତି ।" ଗ୍ଭନ୍ଦା କଥା ଶୁଣି ପିଲାମାନେ ପରସ୍ପରକୁ ଗ୍ଭହାଁଚୁହିଁ ହେଲେ । କହିଲି, ଆରେ ନଅ ଶହ ଗ୍ଭନ୍ଦା ଦିଅ । ନଚେତ୍ ୩/୪ ମାସ ପାଇଁ ମଉସାଙ୍କୁ ଗୋଟିଏ ମେସିନ୍ ଦିଅ । କଲେଜରେ କିଣା ହେଲେ ସେମାନେ ଆମକୁ ଫେରାଇ ଦେବେ । ସମସ୍ତେ ଖୁସିରେ ରାଜି ହୋଇଗଲେ । ଗାଁ ପିଲାଙ୍କ ଦ୍ୱାରା ମେସିନ୍‌ଟି କଲେଜକୁ ପରଦିନ ପଠାଇ ଦେଲି । ସମୟକ୍ରମେ ମେସିନ୍ ଫେରିଆସିବା କଥା ସମସ୍ତେ ଭୁଲିଗଲେ । କିନ୍ତୁ ଦଶ ଜଣଙ୍କ ନାମରେ ଯେ ଦଶଟି ମେସିନ୍ ଋଣରେ ଆସିଥିଲା, ମୋ ଭଉଣୀ ଶାନ୍ତିଲତା ମହାପାତ୍ର ନାଁରେ ଥିବା ମେସିନ୍‌ଟି କଲେଜରେ ରହିଗଲା ସବୁଦିନ ପାଇଁ । ଏ ମେସିନ କଥା ଥରେ ଅଧେ କଲେଜ ବାର୍ଷିକ ବିବରଣୀରେ ସ୍ଥାନିତ ଓ ପଠିତ ହୋଇଥିବା ଶୁଣି ମନ ଉତ୍‌ଫୁଲ୍ଲ ହୋଇଛି । ସେତେବେଳେ ମନେପଡ଼େ ସେ ଦିନର ମହିଳା ସମିତିର ମେସିନ୍ ଦେବାକଥା ଓ କେଶବବାବୁଙ୍କ ସେବାସର୍ବସ୍ୱ କାର୍ଯ୍ୟବ୍ୟସ୍ତ ଚିତ୍ରଟି ମାନସପଟକୁ ଆପେ ଆପେ ଗ୍ଭଲିଆସେ । ଆନୁଷ୍ଠାନିକ ଗ୍ଭନ୍ଦା ଆଦାୟ କ୍ଷେତ୍ରରେ କେଶବବାବୁଙ୍କ ଶିଷ୍ଟଶାଳୀନ ଅନୁସୃତ ପନ୍ଥା ଅବଶ୍ୟ ଶିକ୍ଷଣୀୟ ।

ସ୍ୱର୍ଗତ ନନ୍ଦଙ୍କ କାର୍ଯ୍ୟକାଳକୁ ବିଗ୍ଭରକୁ ନେଲେ ସେ ବେଳ ଲୋକଙ୍କ ଶ୍ରଦ୍ଧା ସହାନୁଭୂତି, ବିଶ୍ୱସନୀୟତା, ତାଙ୍କ ଗଠନମୂଳକ କାର୍ଯ୍ୟପାଇଁ ଯେ ଅନୁକୂଳ ଥିଲା, ଏହା ନିଃସନ୍ଦେହ । କିନ୍ତୁ ଆଜି ଆକାଶ ପାତାଳ ଗ୍ଭରିଆଡ଼େ ଯେଉଁଠି କଳୁଷିତ

ସାମାଜିକ ଅବସ୍ଥାଓ୍ୱା. । ପ୍ରଶ୍ନ ଉଠେ— ସେ ଥିଲେ କ'ଣ ଆଜି ଆଉ ସେମିତି କରି ପାରିଥା'ନ୍ତେ ? ଏପରିକି ନିଜ ହାତରୁ ପଇସା ଦେଇ ଗ୍ରାମ୍ୟ ପରିମଳ ପାଇଁ ଗାଁ ଦାଣ୍ଡକଡ଼ରୁ ଗୋବର ଖାତଟିକୁ ଅନ୍ୟତ୍ର ସ୍ଥାନାନ୍ତରିତ କରିବା ବା ବରପାଲି ପାଇଖାନାଟିଏ ବସାଇବା ପାଇଁ ଯଦି ସେ ଆଜି କହିଥା'ନ୍ତେ, କାର୍ଯ୍ୟକାରିତା ତ ଦୂରର କଥା. ଗାଁ ଲୋକଙ୍କ ଅବିଶ୍ୱାସ ଓ ଔଦ୍ଧତ୍ୟପୂର୍ଣ୍ଣ କଟୂକ୍ତି ଟୀକା ଟିପ୍ପଣୀରେ ମର୍ମାନ୍ତିକ ଆଘାତ ପାଇଥା'ନ୍ତେ ।

## ଆଞ୍ଚଳିକ ଶାନ୍ତି ସଦ୍‌ଭାବନା ଓ କେଶବବାବୁ

ଏ ତ ଗଲା ସ୍ୱର୍ଗତ ନନ୍ଦଙ୍କ ଶିକ୍ଷାସଂପର୍କିତ ଜୀବନଚିତ୍ର । ଏଥିସହିତ ତାଙ୍କର ଆଉ ଗୋଟିଏ ବିଶେଷ ମହନୀୟ ଗୁଣ ଥିଲା— ଆଞ୍ଚଳିକ ଶାନ୍ତି ସଦ୍‌ଭାବନା ପ୍ରତିଷ୍ଠା । ୧୯୬୫-୬୬ ମସିହା ଏପ୍ରିଲ, ମେ' ମାସର ଘଟଣା । କେଶବବାବୁଙ୍କର ଗୋଟିଏ ଧଳା ରଙ୍ଗର କାର୍ । ଏଲ.ଆଇ.ସି. କାମରେ ସେ ମଝିରେ ମଝିରେ କୁଜଙ୍ଗ ଯା'ଆସ କରନ୍ତି । ସେତେବେଳେ ମୁଁ କୁଜଙ୍ଗ କୋ-ଅପରେଟିଭ୍ ବ୍ୟାଙ୍କରେ ଚାକିରି କରିଥାଏ । ମୁଁ କୁଜଙ୍ଗ ଜଗନ୍ନାଥପୁରରେ ରହୁଥାଏ । କେଶବବାବୁ ଥରେ ମୋ ବସା ବାଟ ଦେଇ ଗଲାବେଳେ ବସା ଫାଟକରେ ଚଢ଼ି ଖେଳୁଥିବା ମୋ ଅଢ଼େଇବର୍ଷର ପୁଅ ବିଭୁକୁ (ବସାରେ କହି) ତାଙ୍କ କାର୍‌ରେ ନେଇ ବ୍ୟାଙ୍କରେ ପହଞ୍ଚିଲେ । ଆଉ "ତୁମ ହିରୋପୁଅକୁ ନିଅ" ବୋଲି କହିଲେ ।

ଏଲ.ଆଇ.ସି. କାମ ସରିଲା । ମୋତେ ବାହାରକୁ ଡାକି କହିଲେ, "ଅନାଦି, ତୁମେ ଯଥାଶୀଘ୍ର ଗାଁରେ ପହଞ୍ଚ । ସିଦ୍ଧେଶ୍ୱରପୁର ବାଉରୀ ସାହି ଆଉ ତୁମ ଗରାମ ପରିଡ଼ାଘର ମଧ୍ୟରେ ଧରମପୁର ଗହୀରରେ ମୁଗ କିଆରୀରେ ଛେଳି, ମେଣ୍ଢା ପଶିବାକୁ ନେଇ ବାଡ଼ିଆପିଟା ହୋଇଛନ୍ତି । ତିନିଦିନ ହେଲା ମଣ୍ଡପ ପାଖରେ ନିଶାପ ପାଇଁ ବାଉରୀମାନେ ମେଳି ହେଉଛନ୍ତି । ତାଙ୍କର ଜିଦ୍— ମାଡ଼ ମାରିଥିବା ଦୁଇଜଣ ଲୋକ ନିଶାପକୁ ନ ଆସିଲେ ନିଶାପ ହେବ ନାହିଁ । ଘଟଣାଟି ଗାଁ-ଗାଁ ଭିତରେ ଗୁରୁତର ଅବସ୍ଥାକୁ ଗଲାଣି । ଶୀଘ୍ର ଯାଇ ଆପୋଷରେ ମିମାଂସା ପାଇଁ ଚେଷ୍ଟା କର । ସେ ଦିନ ଅଫିସ ପରେ ବସାରେ କହିଦେଇ କଟକ ବସ୍ ଧରିଲି । ସିଦ୍ଧେଶ୍ୱରପୁର ଦେଇ ଗାଁକୁ ଗଲାବେଳେ ନାନା ଶଙ୍କାଆଶଙ୍କାରେ ମନ ଟିକିଏ ଦବି ଯାଉଥାଏ । ହରିଜନ ବସ୍ତି. ରାଗଟାଗରେ କ'ଣ କହିଦେଇ ପାରନ୍ତି ।

ଯାହାହେଉ ଗାଁରେ ପହଞ୍ଚିଲା ବେଳକୁ ରାତି ସାଢ଼େ ନଅଟା । ଗାଁ'ଟା ସାରାଲୋକ ଦାଣ୍ଡରେ ମେଳା ମେଳା । ମୋତେ ଦେଖୁ ଦେଖୁ ଗାଁ ମାମଲତକାର ହେମଭାଇ କହିଲେ, "ହେଇଟି ପରା କ୍ଲବ ପ୍ରେସିଡେଣ୍ଟ ଆସିଲାଣି ।" ଗଉରା କହିଲା— ପ୍ରେସିଡେଣ୍ଟ ଛାଡ଼ି ଗଭର୍ଣ୍ଣର ହୁଅନ୍ତୁ ସେମାନେ ନିଜେ ନିଶାପକୁ ଯାଆନ୍ତୁ । ଆମେ କିନ୍ତୁ ହାଡ଼ିବନ୍ଧୁ, ପୁରୋତ୍ତମଙ୍କୁ ନିଶାପକୁ ନେବୁନାହିଁ । ହରିଜନ ଲୋକ, ନିଶାପ ନାଁରେ କାଳେ ହଠାତ୍ ହାତ ଉଠାଉଠି କରିଦେବେ, ସେମାନଙ୍କୁ ବିଶ୍ୱାସ ଅଛି ? ଯାଉଛ ଯଦି ଚାରି/ପାଞ୍ଚଜଣ କେବଳ ମାମଲତକାର ଯାଅ ।" ସେଇଆ ହେଲା, ଆମେ ପାଞ୍ଚ/ସାତଜଣ ବାହାରିଲୁ । ସିଦ୍ଧେଶ୍ୱରପୁର ମଣ୍ଡପ ପାଖରେ ପହଞ୍ଚିଲା ବେଳକୁ ସେଠାରେ କେହି ନଥିଲେ । ଜଣେ ଦୁଇଜଣ ଗଞ୍ଜେଇ ଧରି ବସିଥିଲେ । ନିଶାପ କଥା ପଚାରିବାରୁ କହିଲେ, "ହଁ ଚାରି ପାଞ୍ଚଜଣ ତ ବସିଥିଲେ, ଗଲେଣି ବାହାରି ।"

ସେତେବେଳକୁ ରାତି ୧୧ଟା ହେଲାଣି । କନ୍ଦରପୁର ବଜାରଆଡୁ ହରିଜନ ସାହିର ମୁଖିଆ ଗନ୍ଧର୍ବ ଭୋଇ ଆସୁଥିଲେ । ତାଙ୍କୁ ଡାକି କେଶବବାବୁଙ୍କ ଘରଆଡ଼କୁ ଗଲୁ । କେଶବବାବୁ ପ୍ରବଳ ଗରମ ଯୋଗୁ ସପ, ତକିଆ ଧରି କୋଠା ବାରଣ୍ଡାଆଡୁ ଆସୁଥିଲେ । ଆମକୁ ଦେଖି ଆଉ ଦୁଇଖଣ୍ଡ ସପ ଆଣିବାକୁ ବରାଦ କରି ଆମ ସାଙ୍ଗରେ କଳଘର ଆଡ଼କୁ ଆସିଲେ । ଆମକୁ ଦେଖି ସେ ଗାଁର ଆଉ କିଛି ସବର୍ଣ୍ଣ-ଅସବର୍ଣ୍ଣ ଧୀରେ ଧୀରେ କଳଘର ବାହାରେ ଜମି ଚୁପ୍‌ଚାପ୍ ହେଉଥା'ନ୍ତି । କିଛି ସମୟ ବସିଲୁ । ସମସ୍ତେ ଗୁମ୍‌ସୁମ୍ । ଦୁଲାଦେବୀଙ୍କୁ ସୁମରଣା କରି ଆରମ୍ଭ କଲି, "ଗନ୍ଧିଆ ଭାଇ ! କ'ଣ ଗୋଟାଏ ଅଘଟଣ ଘଟିଯାଇଛି । ଖରାଦିନ । ବୁଲା ଗୋରୁଗାଈ । ଫସଲ ଫୁସୁଲାରେ ପଶିବାରୁ ଯଦି ଦୁଇ ଗୋଷ୍ଠୀଙ୍କ ମଧ୍ୟରେ ଟିକେ ଉଚ୍ଚବାଚ ହୋଇଯାଇଛି, ତେବେ ସେହି କଥାକୁ ଧରି ବସିଲେ ଚଳିବ ? ଆମେ ମାନୁଛୁ । ସେମାନେ ଭୋଇସାଇଆଙ୍କୁ ଆଗ ହାତ ଉଠାଇ ଥିବାରୁ ସେମାନଙ୍କର ଭୁଲ । ଆମ ଗାଁରେ ମଧ୍ୟ ସେମାନଙ୍କର ଏ ପ୍ରକାର ଔଦ୍ଧତ୍ୟକୁ କେହି ପସନ୍ଦ କରୁନାହାନ୍ତି । ଯାହା ତ ହେବାର ହେଲାଣି । ତା' ବୋଲି ଆମ ଛୁଆ ପିଲାଏ କ'ଣ ତୁମ ଗାଁ ବାଟେ ଆଉ ଯିବେ ନାହିଁ । ହଉ, ଯଦି କହିବ, କାଲିଠାରୁ ପଛେ ଆମେ ଆଉ ଏ ବାଟେ ଆସିବୁ ନାହିଁ !"

କେଶବବାବୁ ଆଦ୍ୟରୁ ନୀରବରେ ବସିଥିଲେ । ଭାବପ୍ରବଣ ହୋଇ କହି ପକାଇଲେ, ''ଅନାଦି ତ ନିଶାପ ସାରିଦେଇଛି । ଆଉ କ'ଣ କହୁଛ ଗନ୍ଧର୍ବ ?'' ଗନ୍ଧର୍ବ ଠି଼ଆ ହୋଇପଡ଼ି କହିଲା— ଥାଉ ବାବୁ ! ଆଉ କିଛି କୁହନାହିଁ । ସାଆନ-ପାତ୍ର ହୋଇ ଆମେ କେଉଁ କାଳରୁ ଚଳିଆସୁଛୁ । ଆମେ ମୂଲିଆ ଲୋକ ଯଦି ବା ଜନ୍ତୁଟା ଦି'ପୁଳା ଖାଇଦେଲା, ସେମାନେ ଆମକୁ ମାଇଲେ । ବାବୁ ତ (ମୋ ଆଡ଼କୁ ଚାହିଁ) କହି ସାରିଲେଣି । ଆମେ ଆଉ କ'ଣ ଅଧିକା କହିବୁ ! ଯାହା ହବାର ହୋଇଗଲା । ଉଠନ୍ତୁ ବାବୁ, ଯା'କୁ ସିନା କହନ୍ତି ନିଶାପ !''

ପାନ-ବିଡ଼ି ପୁଡ଼ିଆରୁ ଖଣ୍ଡେ ଖଣ୍ଡେ ଧରି ପରମ ତୃପ୍ତିରେ ସମସ୍ତେ ଉଠିଲୁ । ଗାଁରେ ପହଞ୍ଚିଲା ବେଳକୁ ରାତି ସାଢ଼େ ଗୋଟାଏ । .... ସେ ଦିନ କେଶବବାବୁଙ୍କ ଯୋଗୁ ସେ ଦି'ଟା ଗାଁ ଭିତରେ ଯେତେବଡ଼ ବିବାଦଟା ଟଳିଗଲା, ଯାବତ ଜୀବନ ମନେ ରହିବ । ଆଜିକାଲିର ନିଶାପ ଦେଖିଲେ ସେ ଦିନର କଥା ମନେପଡ଼େ । ସ୍ମୃତିକୁ ଚାଲି ଆସନ୍ତି କେଶବବାବୁ, ଗନ୍ଧର୍ବ ଭୋଇ । ....

.... ଧୂଳିଧୂସରିତ ସ୍ମୃତି ତଳେ ଆହୁରି ଅନେକ ଘଟଣା ବି ଲୁଚକାଳି ଖେଳେ । ପିଲାଦିନେ ସ୍କୁଲରେ ପଢ଼ିଲାବେଳେ ସହାଧ୍ୟାୟୀ ରବି ବେହେରାର (ମଧ୍ୟ ଶାସନ) ଗୁଡ଼ାଖୁ ଘସାକୁ ନେଇ ସାଥୀ ସୁର ଦାସ (ଶଂଖାରୀ ସାହି) ଓ ମୋତେ (ଯଦିଓ ଆମେ ଦୁହେଁ ଗୁଡ଼ାଖୁ ଘସି ନଥିଲୁ) ଖେଳ ଶିକ୍ଷକ ଅନାଥ ବାବୁଙ୍କ କଡ଼ା ନିର୍ଦ୍ଦେଶରେ ଅଫିସ ସାମ୍ନା କୂଅ ମୂଳେ ଆଣ୍ଠେଇବାକୁ ହୋଇଥିଲା । ବିନା ଦୋଷରେ ଶାରୀରିକ ଦଣ୍ଡ ସେ ଦିନର ବାଳୁତ ପ୍ରାଣରେ ନୀରବ ବିକ୍ଷୋଭ ଖେଳାଇଥିଲା । ଛାତ୍ର-ନିର୍ଯାତନାର ଏ ନିର୍ମମ ବିଚାରଶୂନ୍ୟ ଦୃଶ୍ୟ ଭାଗ୍ୟକୁ ପରମଦୟାଳୁ କେଶବବାବୁଙ୍କ ଦୃଷ୍ଟିରେ ପଡ଼ିଲା । ଆମେ ଦଣ୍ଡରୁ ମୁକ୍ତି ପାଇଲୁ ।

ଆଉ ଗୋଟିଏ ଘଟଣା ମନେ ଅଛି— କେଶବବାବୁଙ୍କ ଉଦ୍ୟମରେ ଯୁବନେତା ବିଜୁ ପଟ୍ଟନାୟକ ଥରେ ଆମ ଏ ବିଦ୍ୟାଳୟକୁ ଆସିଥିଲେ । ଏତେ ବଡ଼ ଦ୍ୱାରବନ୍ଧ ଦେଇ ଅଫିସ ଭିତରକୁ ପଶିଲାବେଳେ ତାଙ୍କୁ ମୁଣ୍ଡ ନୁଆଇଁ ପଶିବାକୁ ହୋଇଥିଲା । ବିଜୁ ପଟ୍ଟନାୟକ ଖୁବ୍ ଡେଙ୍ଗା, ଗୋରା ଥିଲେ । ଧଳା ସୁଟ୍-ପ୍ୟାଣ୍ଟରେ ଏ ଯୁବକ ସେତେବେଳେ ଆମ ବାଳକ ଦୃଷ୍ଟିରେ ଖୁବ୍ ଚମତ୍କାର ଦିଶୁଥିବା ମନେ ଅଛି । ସେ ବେଳକୁ ଚାହିଁ ସେ ଏ ବିଦ୍ୟାଳୟକୁ ଦୁଇହଜାର ଟଙ୍କା ଅନୁଦାନ ଘୋଷଣା

କରିଥିଲେ; ଯାହା ସେତେବେଳକୁ ଗ୍ରହିଁ ପ୍ରଶଂସାରେ ଖୁବ୍ ଚର୍ଚ୍ଚାର ବିଷୟ ହୋଇଥିଲା ଏ ଅଞ୍ଚଳରେ ।

ସ୍ମରଣିକା ଭିତରେ ଏ ସମସ୍ତ ତାତ୍କାଳିକ ସମୟ-ସମାଜର ତିକ୍ତ-ମଧୁର ଚିତ୍ର ଆପେ ଆପେ ସ୍ମୃତିର ପରଦା ଉପରକୁ ଧସି ପଶି ଆସେ । ପିଲାଦିନର ବାଳୁତ କୋମଳ ସ୍ମୃତିରେ ସାଇତା ଆପଣାର ଅନେକଙ୍କୁ ମନ ଖୋଜି ବସେ । ସ୍ମୃତିର ଉଜୁଡ଼ା ଅସଜଡ଼ା ଗଦା ଭିତରୁ କେତେକଙ୍କୁ ପଳିତ-ଗଳିତାବସ୍ଥାରେ ପାଏ ତ, ଆଉ କେତେକଙ୍କୁ ନ ପାଇ ନିୟତିର ନିଷ୍ଠୁର ଅମୋଘ-ବିଧାନ ପାଖେ ମୁଣ୍ଡ ନୁଆଏଁ । ମୁଣ୍ଡ ନୁଆଏଁ ଏ ଅଞ୍ଚଳ ପିତୃପ୍ରତିମ ପ୍ରଣମ୍ୟ କେଶବ ଚନ୍ଦ୍ର ଚନ୍ଦ ମହୋଦୟଙ୍କ ଚରଣେ—

''ହେ ଦିବଂଗତ ! ତୁମ ଆତ୍ମା ଚିର ଶାନ୍ତି ଲଭୁ ।''

*ପୁରାତନ ଛାତ୍ର-୧୯୫୩, ଗରାମ*



# କେଶବ ମଉସା

✦ ଶ୍ରୀ ଗୁରୁ ପ୍ରସାଦ ମହାନ୍ତି

ଏକବିଂଶ ଶତାବ୍ଦୀ ପୃଥିବୀର ମାଟି ଛୁଇଁଲା ବେଳକୁ ମୋ ପରି ମଣିଷ ସବୁ ଷାଠିଏ ପାର ହୋଇ ସାରିଲୁଣି । ସେଥିପାଇଁ କେଶବମଉସାଙ୍କୁ 'ମଉସା' ବୋଲି ସମ୍ବୋଧନ କରୁଥିଲି ଓ କରୁଥିବି । ଏକବିଂଶ ଶତାବ୍ଦୀର ପିଲାମାନଙ୍କ ପାଇଁ ମଉସା, ପିଉସୀମାନେ ସିନା ଅଙ୍କଲ୍ ପାହ୍ୟାକୁ ଉତ୍ତୀର୍ଣ୍ଣ ହୋଇଯାଇଛନ୍ତି, ମା, ବୋଉମାନେ ମମି ପାଲଟିଯାଇଛନ୍ତି ଓ ମିଶର୍ ଦେଶର ପିରାମିଡ୍‌ର ମମିମାନେ ଏବେ ଆମ ଘରବାଡ଼ିମାନଙ୍କରେ ଚଳପ୍ରଚଳ ହେଲେଣି । ଆମେ ତ ବିଂଶ ଶତାବ୍ଦୀର ପୁରୁଣା ମଣିଷ, ଆମର ଆଉ ପରିଚୟ କ'ଣ ? ବିଶ୍ୱବ୍ୟାଙ୍କ ଓ ବିଶ୍ୱ ବାଣିଜ୍ୟ ସଂସ୍ଥା (W.T.O.)ର ଜଗତୀକରଣ ନୀତି ମଣିଷକୁ ସମୂଳ କରିବା ଦିନଠାରୁ ତାଙ୍କ ଉତ୍ପନ୍ନ ବନ୍ୟାରେ ଆମେ ଉବୁଟୁବୁ ହେଉଛୁ ନିଜର ପରିଚୟ ଖୋଜି ।

କେଶବ ମଉସାଙ୍କ ସହିତ ମୋ ସମ୍ପର୍କ ଯୋଡ଼ିବା ଭିତରେ ରେଭେନ୍ସା କଲେଜ୍‌ର ଛାତ୍ରାବସ୍ଥାରୁ ଆଜି ପର୍ଯ୍ୟନ୍ତ ବନ୍ଧୁ ହୋଇ ରହିଥିବା ଗୋପାଳ(ବୁଲୁ) ଓ ନାରଣ(ଶଂଖି) ଆସିଯା'ନ୍ତି । ଗୋପାଳ ସହ ବନ୍ଧୁତା ଜମିଥିଲା ତୃତୀୟ ବର୍ଷ କଳା ଶ୍ରେଣୀରୁ । 'ତା' ଘରକୁ ଯିବାଆସିବା ଭିତରେ ନାରଣ ସହିତ ପରିଚୟ । ସେ ସେତେବେଳେ ପରିବା ଗ୍ରୁଷ ଓ ବିଭିନ୍ନ ଗଛ ଲଗାଇବାରେ ତତ୍ପରତା ପ୍ରକାଶ କରୁଥିଲେ, ମୋତେ ତାହା ଅନୁପ୍ରାଣିତ କରୁଥିଲା । କେଶବମଉସାଙ୍କୁ ଜାଣିବା ପୂର୍ବରୁ ମୁଁ କେବଳ ଗୋପାଳ ଓ ନାରଣଙ୍କୁ ନୁହଁ, ତାଙ୍କ ମାମୁଁ ଭବାନୀବାବୁଙ୍କୁ ବି ଜାଣିଥିଲି । ଦୋଳମୁଣ୍ଡାଇ ଛକର ଆଗକୁ, ଏବେ ଯେଉଁଠି ବିଦ୍ୟୁତ୍ ସରବରାହ ଅଫିସ୍‌ଟି କାର୍ଯ୍ୟ କରୁଛି, ସେଇ ପାଖରେ ଗୋଟିଏ ନିମ୍ବ ଗଛକୁ ଲାଗି ଏକ ଟାଇଲ୍ ଛପର ଘରେ ସେ ରହୁଥା'ନ୍ତି ଓ ରାଣୀହାଟ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ବିଜ୍ଞାନ

ଶିକ୍ଷକ ଭାବରେ କାର୍ଯ୍ୟ କରୁଥା'ନ୍ତି । ସେ ଭଲ ବେହେଲା ବାଦକ ଥିଲେ । ୧୯୫୮ ଠାରୁ ୧୯୭୮ ଭିତରେ ମୁଁ ଗୋପାଳର ନିମସାହି ଘରକୁ ଯେତେଥର ଯାଇଛି, ମୋର ସାକ୍ଷାତ ହୁଏ ନାରଣ ସହିତ । ସେ କେଶବମଉସାଙ୍କ ତୃତୀୟ ପୁଅ । ଚେହେରା କେଶବ ମଉସାଙ୍କର । ମହିଦାସ ବଜାର ଛାଡ଼ି ହରିପୁରରେ ଘରତୋଳି ରହିବା ପରେ ନାରଣ ନିକଟକୁ ଗଲେ କଦବା କେମିତି କେଶବମଉସାଙ୍କ ସହ ଭେଟ ହୁଏ । ପରିଚୟ ଥାଏ ସାମାନ୍ୟ । ସେ ଖାଲି ଜାଣନ୍ତି ଯେ, ମୁଁ ଗୋପାଳ (ବୁଲୁ)ର ସାଙ୍ଗ ।

ଦିନ ବା ବର୍ଷ ଠିକ୍ ମନେ ନାହିଁ । ସେ ଗୋଟିଏ ଛୁଟିଦିନ ହେବ ବୋଧେ । ମଉସା ମୋ ଅଫିସ୍ ଭିତରକୁ ପଶିଆସିଲେ । ମୁଁ ମୋ ଓକିଲାତି କାର୍ଯ୍ୟକ୍ରମରେ ବ୍ୟସ୍ତ ଥାଏ । ସେ ଗୋଟିଏ ଚୌକିରେ ବସିପଡ଼ି "ମୁଁ ଜୀବନବୀମା କେତେ ଟଙ୍କାର କରିଛି" ବୋଲି ପ୍ରଶ୍ନ କରିବା ପାଇଁ ପରାମର୍ଶ ଦେଲେ । ମୁଁ ତ ଏକବାରେ ଡରିଗଲି । ଟଙ୍କା ଠିକ୍ ସମୟରେ ନ ଦେଇପାରିଥିବା ହେତୁ, ମୋର ପ୍ରଥମ ବୀମା ଚୁକ୍ତିଟି ଅକାମି ହୋଇ ଯାଇଥାଏ । ଛୋଟ ବୀମା ଚୁକ୍ତିଟିଏ ତଥାପି ବି ଥାଏ । ତାଙ୍କୁ ମୋ ଅବସ୍ଥା କଥା କେବଳ ସୂଚାଇଲି । ଆମେ ଏପରି ଏକ ଯୁଗରେ ଜନ୍ମ ହେଲୁ ଯେ, ବୟୋଜ୍ୟେଷ୍ଠ ନିଜର ମଣିଷକୁ ବି ସବୁକଥା ଖୋଲି କହିବାକୁ ବା ତାଙ୍କ ସହ ସ୍ପଷ୍ଟ ଭାବରେ କିଛି ଆଲୋଚନା କରିବାକୁ ସଂକୋଚ କରୁଥିଲୁ ତାଙ୍କ ହସହସ ମୁହଁରେ ଆଉ ଗୋଟିଏ ଜୀବନବୀମ । "ନିକୁଛିଆରେ ପଚିଶହଜାର କରିବାକୁ" ପରାମର୍ଶ ଦେଲେ ନାହିଁ, ମୋର କେବେ ଟଙ୍କା ଦେବାରେ ଅସୁବିଧା ହେଲେ, ସେ କଥା ବୁଝିବାର ପ୍ରତିଶ୍ରୁତି ଦେଇ ସଂପୃକ୍ତ ଫର୍ମରେ ମୋ ଦସ୍ତଖତ କରାଇ ନେଲେ ଓ ବର୍ଷକୁ ଚାରିଥର କିସ୍ତି ଦେବା ପରିବର୍ତ୍ତେ ଦୁଇଥର ଦେବାର ବ୍ୟବସ୍ଥା କଲେ ଓ ୬ ମାସରେ କିଛି କିଛି ସଂଚୟ କରି ରଖିଲେ, "କିସ୍ତି ଦେବାରେ ଅସୁବିଧା ହେବ ନାହିଁ"ର ସାହସ ମୋ ମନରେ ସଂଚାର କଲେ । "ମୋର ଭବିଷ୍ୟତ ସତେ ଯେପରି ତାଙ୍କ ପିଲାର ଭବିଷ୍ୟତ" ସେଇ ଚେତନା ଭିତରେ ତାଙ୍କର ବ୍ୟସ୍ତତା ମୁଁ ଅନୁମାନ କରୁଥାଏ । ତାଙ୍କ ପରାମର୍ଶ ଯୋଗୁଁ ବୀମା ଟଙ୍କା ଗୋଟିଏ ଝିଅ ବିଭାଘରକୁ ଅନେକାଂଶରେ ତୁଲାଇ ନେଲା ।

ପୁରୁଣାକାଳିଆ ବାପାମାନେ ନିଜ ପିଲାମାନଙ୍କ ପରି ସେମାନଙ୍କ ସାଙ୍ଗସାଥିଙ୍କୁ

ନିଜର ଭାବି ସେମାନଙ୍କ ଭବିଷ୍ୟତର କଳ୍ପନାରେ କେତେବେଳେ ଆଶଙ୍କିତ ତ ଅନ୍ୟ କେତେବେଳେ ଆମୋଦିତ ହେଉଥିଲେ । ସେଥିପାଇଁ ତ ବାପଟିକୁ ଆକାଶ ସହିତ ଆମ ଭାରତୀୟ ସଂସ୍କୃତି ତୁଳନା କରିଛି, ତା'ର ବିସ୍ତାରିତ ଚେତନା ଯୋଗୁଁ । ଏକବିଂଶ ବା ପର ଶତାବ୍ଦୀର ବାପାମାନଙ୍କର ସ୍ତର କେତେ ବିସ୍ତାରିତ ହେବ, ସେଥିରେ ମୋ' ପରି ମଣିଷମାନଙ୍କର ଆଶଙ୍କା ଉପୁଜିବା ସ୍ୱାଭାବିକ୍ ।

କେଶବମଉସା କ୍ୱଚିତ କଟକ ଆସୁଥିଲେ । ଗାଁରେ ତାଙ୍କର ହରେକ୍ କାର୍ଯ୍ୟକ୍ରମ । ତିନି ତିନିଟା ଅନୁଷ୍ଠାନକୁ ଗଢି ତୋଳିବାର ଦାୟିତ୍ୱ କେବଳ ନୁହେଁ, ଜଂଜାଳ ବହନ କରିଥିଲେ । ଗୃହ ଥିଲା ତାଙ୍କର ଅତି ଆପଣାର । ସେ ସବୁକୁ ଛାଡ଼ି ନିଜର ସ୍ୱାଧୀନ ଚଳଣି ଓ ସ୍ୱାଭିମାନକୁ ଅଣ୍ଟାରେ ଖୋସି, କଟକରେ ପୁଅ ନିକଟରେ ବାର୍ଦ୍ଧକ୍ୟ କଟାଇବାକୁ ସେ ପସନ୍ଦ କରୁ ନଥିଲେ । ଶରୀର ଖରାପ ହେଲେ ତାଙ୍କୁ କଟକ ଆଣିବାକୁ ପଡ଼େ । ସାକ୍ଷାତ୍ ହେଲେ, ସବୁକଥା ପଗ୍ଭରି ବୁଝନ୍ତି । ମୁଁ ତାଙ୍କ ମୁହଁରେ ନୈରାଶ୍ୟର ଛାପ କେବେ ଦେଖିନାହିଁ । ସେ ଥିଲେ ଜଣେ ଅତ୍ୟନ୍ତ କର୍ମଠ ବ୍ୟକ୍ତି, ସଦା ଚଳଚଞ୍ଚଳ ।

ସେ ତାଙ୍କର ଶେଷନିଶ୍ୱାସ ଛାଡ଼ିବାର କିଛି ଦିନ ପୂର୍ବରୁ ଚେତାଶୂନ୍ୟ ଅବସ୍ଥାରେ ରହିଥିବା ଯୋଗୁଁ, ବହୁବାର ଯାଇ ସାକ୍ଷାତ ହୋଇ ପାରିନାହିଁ । ଆମେ ସବୁ ଆଜି ତଳବରଡ଼ା ମଣିଷ । ଆମ ପୂଜ୍ୟ ତଳ ବରଡ଼ା ସବୁ ଖସିଯିବା ପରେ ଆମେ ମଝି ବରଡ଼ା ତଳକୁ ଖସି ଆସିଲୁଣି, ଭୂଇଁରେ ଖସି ପଡ଼ିବାର ପ୍ରସ୍ତୁତିରେ । ତାଙ୍କ ସମ୍ପର୍କରେ କିଛି ଲେଖିବାବେଳେ, ତାଙ୍କ ହସହସ ମୁହଁ ସାମ୍ନାରେ ଦିଶିଯାଉଛି । ଯେପରି ସେ ସେପାରିରେ ବି କାହାକୁ ଭୁଲିନାହାନ୍ତି । ଭୁଲିବାକୁ ପ୍ରୟାସ କରିନାହାନ୍ତି ।

ସ୍ୱର୍ଗ ଯଦି ଥାଏ, କେହିତ ଜୀବିତାବସ୍ଥାରେ ତାକୁ ଦେଖି ପାରିନାହିଁ, ସେ ସେଠାରେ ବି ନିଶ୍ଚିନ୍ତରେ ଚଲାବୁଲା କରୁଥିବେ, ପୃଥିବୀରେ ସେ ରହଣିକାଳୀନ ଅଭ୍ୟାସ ଯୋଗୁଁ । ତାଙ୍କ ପାଇଁ ଆମର ଶ୍ରଦ୍ଧାଂଜଳି ଛଡ଼ା କ'ଣ ଆଉ ବା ଅଛି ?

*ଆଡ଼ଭୋକେଟ୍*
*ହରିପୁର ରୋଡ୍, କଟକ-୧*



# ଅଭୁଲା ଅତୀତ

✦ ଶ୍ରୀ ରାମହରି ଦାସ

ଗୋପାଳ ସ୍ମୃତି ବିଦ୍ୟାପୀଠ (ପୂର୍ବେ ସିଦ୍ଧେଶ୍ୱରପୁର ହାଇସ୍କୁଲ୍ ଥିଲା) ବର୍ତ୍ତମାନ ବିରାଟ ସରକାରୀ ଅନୁଷ୍ଠାନରେ ପରିଣତ ହୋଇ ବହୁଲୋକଙ୍କର ଜୀବନ-ଜୀବିକା ସମସ୍ୟା ଦୂର କରୁଅଛି । ଉକ୍ତ ସ୍କୁଲ୍‌ରୁ ଅଗଣିତ ଛାତ୍ରଛାତ୍ରୀ ଉତ୍ତୀର୍ଣ୍ଣ ହୋଇ ପ୍ରତିଷ୍ଠିତ ପଦପଦବୀରେ କେତେକ ଜୀବିକା ନିର୍ବାହ ସହିତ ଓଡ଼ିଶାରେ ନାମ ଅର୍ଜିଛନ୍ତି । କିନ୍ତୁ ସେହି ସ୍କୁଲର ପ୍ରାଣ ପ୍ରତିଷ୍ଠାତା ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ ଓ ସ୍ୱନାମଧନ୍ୟ ଶିକ୍ଷାବିତ୍ ସ୍ୱର୍ଗତ ରତ୍ନାକର ପତି ଆଜି ନାହାନ୍ତି । ୧୯୪୫ ମସିହାରେ ଏହି ଅନୁଷ୍ଠାନ ଉପରୋକ୍ତ ଦୁଇଜଣଙ୍କର ପରିକଳ୍ପନା ଓ ବଦାନ୍ୟତାରେ ଗଢି ଉଠିଥିଲା । ଯାହାଦ୍ୱାରା ଏହି ଅଞ୍ଚଳର ଗରିବ ପରିବାରର ପିଲାମାନେ ଏଠାରେ ପାଠ ପଢି ଶିକ୍ଷିତ ହୋଇ ପାରିଛନ୍ତି । ନଚେତ୍ ବସ୍ତାନିରେ ଡୋର ବନ୍ଧାହୋଇ ରହିଥାନ୍ତା ଏବଂ ମୂଲ ଲାଗିବାକୁ ବାଧ୍ୟ ହୋଇଥା'ନ୍ତେ । ସେତେବେଳେ ଏହି ପାଖଆଖରେ କୌଣସି ହାଇସ୍କୁଲ୍ ନ ଥିଲା । ପିଲାଙ୍କୁ ପାଠ ପଢିବାକୁ କଟକ ବା ଜଗତ୍‌ସିଂହପୁର ଯିବାକୁ ପଡୁଥିଲା । ଯାହାକି କେତେକ ଅବସ୍ଥାସମ୍ପନ୍ନ ପରିବାର ପକ୍ଷେ ସମ୍ଭବ ହୋଇ ପାରୁଥିଲା ।

ମୁଁ ସିଦ୍ଧେଶ୍ୱରପୁର ମାଇନର୍ ସ୍କୁଲ୍‌ରୁ ୧୯୪୭ରେ ପାଶ୍ କଲା ପରେ ହାଇସ୍କୁଲରେ ପଢିବା ପାଇଁ ମୋର ଘରର ଆର୍ଥିକ ଅବସ୍ଥା ଶୋଚନୀୟ ଥିବାରୁ ପ୍ରାୟ ପଢା ଆଶା ଛାଡ଼ିଦେଇଥିଲି । ଏଥିପାଇଁ ଶିକ୍ଷାବିତ୍ ପ୍ରାଣକୃଷ୍ଣ ପରିଜା ଓ ଆମ ଅଞ୍ଚଳର ସେତେବେଳର ମନ୍ତ୍ରୀ ରାଜକୃଷ୍ଣ ବୋଷଙ୍କ ସହାୟତା ପାଇଁ ଯାଇ ନିରାଶ ହୋଇଥିଲି । କିନ୍ତୁ ଭଗବାନ୍‌ଙ୍କ ଦୟାରୁ ଅସୁରେଶ୍ୱର ଅଞ୍ଚଳରେ ଜଣେ ଆର୍ଥିକସମ୍ପନ୍ନ ବ୍ୟକ୍ତି ମୋ ସହ ପରିଚିତ ହୋଇ ମୋତେ ପଢାଇବାର ଆଶାଦେଇ ତାଙ୍କ ଗ୍ରାମ

ଶୁକରପଡ଼ାକୁ ନେଇଥିଲେ । ନାମଲେଖା ସମୟ ଅତିକ୍ରାନ୍ତ ହୋଇଥିବାରୁ ତା' ପରବର୍ଷ ନାମ ଲେଖାଇବାର ଆଶ୍ୱାସନା ପାଇ ତାଙ୍କ ଘରେ ରହିଲି । ଏହି ସମୟରେ ସିଦ୍ଧେଶ୍ୱରପୁର ହାଇସ୍କୁଲ ଆରମ୍ଭ ହେବାରୁ ସ୍ୱର୍ଗତ ନନ୍ଦ ମହାଶୟ ସପ୍ତମ ପାଶ୍ କରିଥିବା ପୁରୁଣା ପିଲାମାନଙ୍କର ଖୋଜ୍ ଖବର ନେଇ ସେମାନଙ୍କୁ ଆଣି ନବମ ଶ୍ରେଣୀରେ ନାମ ଲେଖାଇବାର ପ୍ରୟାସ କରୁଥିଲେ । ସେ ମୋ ବାପାଙ୍କୁ ଡକାଇ ମୋତେ ଆଣିବାର ବନ୍ଦୋବସ୍ତ କଲେ । ମୁଁ ଅଷ୍ଟମରେ ପଢ଼ିବି ବୋଲି ଚିନ୍ତାକରି କେତେକ ପୁରୁଣା ଅଷ୍ଟମ ଶ୍ରେଣୀ ବହି ଯୋଗାଡ଼କରି ସ୍କୁଲ୍‌କୁ ଆସିଲି, କିନ୍ତୁ ମନରେ ମୋର ଗ୍ଲାନି ରହିଯାଇଥାଏ ଯେ, ମୋ ସହ ମାଇନର୍ ପାଶ୍ କରିଥିବା ସହପାଠୀମାନେ ନବମରେ ପଢ଼ିବେ ଓ ମୁଁ ଅଷ୍ଟମରେ ପଢ଼ିବି । ମାତ୍ର ଭଗବାନ୍‌ଙ୍କ ଆଶୀର୍ବାଦରୁ ମୋତେ ଜାଣିଥିବା ମାଇନର୍ ସ୍କୁଲର ଶିକ୍ଷକମାନେ, "ମୁଁ ନବମରେ ପଢ଼ିଲେ ପାରିବି" ବୋଲି କଥାବାର୍ତ୍ତା ହୋଇ କେଶବବାବୁଙ୍କୁ କହିବାରୁ ମୋର ମୌଖିକ ପରୀକ୍ଷା ଅଙ୍କ ଓ ଇଂରାଜୀ କରାଇ ନବମରେ ନାମ ଲେଖାଇଦେଲେ ।

ପିଲାମାନଙ୍କ ରହିବା ପାଇଁ କୌଣସି ଛାତ୍ରାବାସ ସୁବିଧା ନ ଥିବାରୁ କେଶବବାବୁ ତାଙ୍କ ନିଜ ଘରେ ମୋ ପରି ଦୂରଦୂରାନ୍ତ ପିଲାମାନଙ୍କୁ ରଖି ମେସ୍ କିପରି ଚାଲିବ, ତା' ବ୍ୟବସ୍ଥା କରିଥିଲେ । ସେ ହାଇସ୍କୁଲର ଘରଦ୍ୱାର କିପରି ହେବ ଓ ଶିକ୍ଷକମାନେ କିପରି କେଉଁଠାରୁ ଆସିବେ, ସେ ବିଷୟରେ ସର୍ବଦା ଚିନ୍ତିତ ଥିଲେ । ଧାନକଟା ସମୟରେ କେତେକ ପିଲାଙ୍କୁ ସାଙ୍ଗରେ ନେଇ ପାଂଆଖ ଚାଷୀଙ୍କଠାରୁ ଛଣ ସଂଗ୍ରହ କରି ଘର ଛପରର ବ୍ୟବସ୍ଥା କରୁଥିଲେ । ଏହି ଅନୁଷ୍ଠାନ କିପରି ଚାଲିବ, ସେଥିପାଇଁ ପଇସାପତ୍ର କେଉଁଠୁ ଆସିବ, ତାହା ତାଙ୍କୁ ଓ ରତ୍ନାକର ବାବୁଙ୍କୁ ଜଣା । ସ୍କୁଲ୍‌ରେ ପାଠପଢ଼ା କିପରି ହେବ, ସେ ବିଷୟରେ ଆମର ପ୍ରଧାନ ଶିକ୍ଷକ ଥିବା ସ୍ୱର୍ଗତ ଧର୍ମାନନ୍ଦ ତ୍ରିପାଠୀଙ୍କ ଉପରେ ଛାଡ଼ିଦେଇଥା'ନ୍ତି ।

କେଶବବାବୁଙ୍କର ସ୍ତ୍ରୀ ଭୀଷଣ ରୋଗାକ୍ରାନ୍ତ । ତାଙ୍କ ଘରେ ଆମେ ପ୍ରଥମରୁ ରହିଥିବାବେଳେ ଦେଖିଛୁ, ସେ ରୋଗିଣୀ ସ୍ତ୍ରୀ ପ୍ରତି ସେତେ ନଜର ନ ଦେଇ ପ୍ରାୟ ପ୍ରତିଦିନ ସକାଳୁ ଖଣ୍ଡେ ଆଣ୍ଠୁ ଲୁଚୁ ନଥିବା ଖଦଡ଼ ଲୁଗା, ଖଣ୍ଡେ ଖଦଡ଼ ଗାମୁଛା, ଫତେଇ ଖଣ୍ଡେ ଓ ଖଦଡ଼ ବ୍ୟାଗ୍ ଧରି ଚାଲିଯାଆନ୍ତି ଯେ, ସନ୍ଧ୍ୟାକୁ ଫେରନ୍ତି । ସବୁ ସମୟରେ ସ୍କୁଲର ଉନ୍ନତି କିପରି ହେବ, ପିଲାମାନେ କିପରି

ଭଲ ପଢ଼ିବେ, ତାହା ହିଁ ତାଙ୍କର ମୁଖ୍ୟ ଚିନ୍ତା ଥିଲା । ପିଲାମାନଙ୍କ ପ୍ରତି ତାଙ୍କର ଅମାୟିକ ସ୍ନେହ ଓ ଶ୍ରଦ୍ଧା କଦାପି ବଞ୍ଚିଥିବା ପର୍ଯ୍ୟନ୍ତ ମୁଁ ଭୁଲି ପାରିବି ନାହିଁ । ତାଙ୍କର ଅମର ଆତ୍ମା ନିଶ୍ଚିତ ଖୁସିରେ ଥିବ ବୋଲି ଆଶା । ତାଙ୍କର ବଦାନ୍ୟତା, ସ୍ନେହ, ଶ୍ରଦ୍ଧା ଓ ଗରିବ ପିଲାମାନଙ୍କ ପ୍ରତି ଅବଦାନ ତାଙ୍କୁ ଚିରଦିନ ଅମର କରି ରଖିବ । ତାଙ୍କର ଅମର ଆତ୍ମା ପ୍ରତି ମୋର ଚିର ପ୍ରଣାମ ନିବେଦନ କରି ରହୁଛି ।

*କୋଯିନ୍ଦା*
*ପୁରାତନ ଛାତ୍ର, ଗୋ:ସ୍ମୃ:ବିଦ୍ୟାପୀଠ*
*କିଶୋର ନଗର, (୧୯୫୧ ମାଟ୍ରିକ୍ ବ୍ୟାଚ୍, ସିଦ୍ଧେଶ୍ୱରପୁର, ହାଇସ୍କୁଲ୍)*



# ମହତ୍ତ୍ୱପ୍ରାପ୍ତିର ଶୁଭ ମୁହୂର୍ତ୍ତ

✦ ଶ୍ରୀ ଅନାଥବନ୍ଧୁ ପ୍ରଧାନ

ଜଗତ୍‌ସିଂହପୁର ଏସ୍.କେ ଏକାଡେମୀରେ ମୁଁ କିଛି ଦିନ ଶିକ୍ଷକତା ଆରମ୍ଭ କରିଥାଏ । ଛୁଟିରେ ଘରକୁ ଆସିଥାଏ । ଖଟ ଉପରେ ଶୋଇଥାଏ । ସେ ମହାତ୍ମା ମୋ ଶୋଇବା ଘର ଭିତରକୁ ପଶିଆସି ମୋ ଖଟ ଉପରେ କଡ଼କୁ ଲାଗି ବସିପଡ଼ିଲେ । ତାଙ୍କୁ ଦେଖି ମୁଁ ସଂଭ୍ରମ ସଙ୍କୋଚରେ ଉଠି ବସିଲି ଓ ଆସିବାର କାରଣ ବିନୟ ଭାବରେ ପ୍ରଶ୍ନ କଲି । ସେ କହିଲେ, "ତୁମେ ଯଦି ଆମ ବିଦ୍ୟାଳୟରେ ଶିକ୍ଷକତା କରନ୍ତ, ତା'ହେଲେ ଗୋଟିଏ ବଡ଼ ସାହାଯ୍ୟ ହୁଅନ୍ତା ।" ବିଦ୍ୟାଳୟ ପ୍ରତିଷ୍ଠା ପଥରେ ଶିକ୍ଷକଟିଏ ପାଇବା ପାଇଁ ତାଙ୍କର ଏ ଆପ୍ରାଣ ଉଦ୍ୟମ ଦେଖି ମୁଁ ତାଙ୍କୁ ସେ ଦିନ ନାସ୍ତିବାଣୀ ଶୁଣାଇ ପାରି ନ ଥିଲି । ଆଉ ଛୋଟ 'ହଁ'ଟିଏ ଦେଇ ତାଙ୍କୁ ବିଦାୟ ଦେଇଦେଲି । ତା'ପର ଠାରୁ ମୁଁ ସେ ବିଦ୍ୟାଳୟରେ ପ୍ରଥମ ଖେଳ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲି । ସେହି ମହାତ୍ମା ହେଉଛନ୍ତି ସ୍ୱର୍ଗତ କେଶବଚନ୍ଦ୍ର ନନ୍ଦ । ସେ କେବଳ ଜଣେ ଶିକ୍ଷାନୁରାଗୀ ନ ଥିଲେ, ବହୁ ମହନୀୟ ଗୁଣାବଳୀ ତାଙ୍କ ସାମଗ୍ରିକ ବ୍ୟକ୍ତିତ୍ୱକୁ ଉଜ୍ଜ୍ୱଳ ଓ ଚମତ୍କୃତ କରିଥିଲା । ସାଧାରଣ ମନୁଷ୍ୟଠାରୁ ସେ କିଭଳି ଅନନ୍ୟ ଓ ବ୍ୟତିକ୍ରମ ଥିଲେ, ନିମ୍ନ ବର୍ଣ୍ଣିତ ଅଭୁଲା ଘଟଣାଟିରୁ ସହଜରେ ଅନୁମାନ କରପାରିବେ—

ସିଦ୍ଧେଶ୍ୱରପୁରରେ ପ୍ରତିଷ୍ଠିତ ଏହି ବିଦ୍ୟାଳୟଟିର ଛୁଆଣି ପାଇଁ ପ୍ରାୟ ପ୍ରତିବର୍ଷ କେଶବବାବୁ କେତେଜଣ ଶିକ୍ଷକ ଓ ଛାତ୍ରମାନଙ୍କୁ ନେଇ ନଡ଼ା ସଂଗ୍ରହରେ ଯା'ନ୍ତି । ସେ ବର୍ଷ ମୁଁ ଆଉ କେଶବବାବୁ କେତେକ ପିଲାଙ୍କୁ ଧରି ବିରିବାଟୀ ନିକଟବର୍ତ୍ତୀ ଗାଁଗୁଡ଼ିକରୁ ନଡ଼ା ସଂଗ୍ରହ ପାଇଁ ଯାଇଥାଉ । ନଡ଼ା ସଂଗ୍ରହ ହେଲା । ସଂଗୃହୀତ ନଡ଼ାକୁ ପିଲାମାନଙ୍କ ମୁଣ୍ଡରେ ଦେଇ ଆମେ ଦୁହେଁ କଟକରୁ ଫେରନ୍ତା ବସ୍‌ରେ

କନ୍ଦରପୁରକୁ ଆସିବା ପାଇଁ ବିରିବାଟୀ 'ଲକ୍' ପାଖରେ ଅପେକ୍ଷା କରିଥାଉ । ଏତିକିବେଳେ କଟକଆଡୁ ଗୋଟିଏ ଛୋଟ ବସ୍ 'ଲକ୍' ପାଖରେ ଆସି ଠିଆହେଲା । ବସ୍ ଭିତରେ ଯାତ୍ରୀମାନେ ହାଉଳି ଖାଇ ଅସ୍ତବ୍ୟସ୍ତ ହୋଇ ପଡ଼ିଲେ । ପ୍ରାଣ ବିକଳରେ ବସ୍ ଭିତରୁ ତରବରରେ ଯେ ଯାହାର ଛୁଆପିଲା ଧରି ଓହ୍ଲାଇ ପଡ଼ିଲେ । ଖାଲି ଶୁଭୁଥାଏ, ''କଥା ସରିଗଲା; ଯ୍ୟା'କୁ ତୁରନ୍ତ ବସ୍‌ରୁ ଫୋପାଡ଼ିଦିଅ । ନହେଲେ ସମସ୍ତଙ୍କ ଅବସ୍ଥା ବାର୍ ବାଜିଯିବ ।'' ସତକୁ ସତ ଲୋକଟିକୁ ବସ୍ ତଳକୁ ଗଡ଼ାଇ ଦିଆଗଲା । ଆଉ ଅନ୍ୟ ଯାତ୍ରୀମାନଙ୍କୁ ନେଇ ବସ୍‌ଟି ତରବରରେ ତଳଆଡ଼କୁ ପଳାଇଗଲା । କିଛି ଲୋକ ଲୋକଟିଠାରୁ ନିରାପଦ ଦୂରରେ ଠିଆ ହୋଇ ମଣ୍ଡଳାକାରରେ ଭୀତଶଂକିତ ଓ ଘୃଣା କଣ୍ଠରେ ଆଗପଛ ଅନେଇ ପଳାଇବାକୁ ଉଦ୍ୟତ ହେଉଥା'ନ୍ତି । କଥାଟି କିଛି ବୁଝି ହେଉ ନଥାଏ ! ଧୀରେଧୀରେ କେଶବବାବୁ ଆଉ ମୁଁ ସେହିଆଡ଼କୁ ଗଲୁ । ଜଣେ ଲୋକ ତାଗିଦ କଣ୍ଠରେ କହିଲା. ''କୁଆଡ଼େ ଆସୁଛ ହୋ ? ଲୋକଟାକୁ ପରା ଓଲାଉଠା 'ମହାମାରୀ' ଆସି ଘୋଟିଗଲାଣି । ଆଉ କ'ଣ ଏ ଗାଁ ଗଣ୍ଡା ରହିବ ? ପାରୁଛ ତ ଯିଏ ଯୁଆଡ଼େ ପଳେଇଯାଅ ।'' (ସେହି ସମୟରେ ଓଲାଉଠା ମହାମାରୀ ଅନୁଗୋଳରୁ ଉପକୂଳବର୍ତ୍ତୀ କଟକ, ପୁରୀ, ଯାଜପୁର ଅଞ୍ଚଳରେ କୋକୁଆଭୟ ସୃଷ୍ଟି କରିଥାଏ) । ଆମେ ଦୁହେଁ କିଛି ନ ମାନି ଲୋକଟି ପାଖକୁ ଗଲୁ । ସେତେବେଳକୁ ଲୋକଟି ଝାଡ଼ାବାନ୍ତିରେ ତୋଳା ଖୋସି ଦେଲାଣି ! ତା' ପାଟିରୁ କଥା ବାହାରୁ ନ ଥାଏ । ସମସ୍ତେ କହିଲେ, ''ଯ୍ୟା' କଥା ଆଉ ନୁହଁ । ଏହି ଦଣ୍ଡକର, କାହିଁକି ଅନେଇଛ, ପଳେଇ ଚାଲ ।'' କେଶବବାବୁଙ୍କୁ ଅନେଇ କହିଲି, ''ସାର୍ ଆମେ ଫେରିବା ପରା ।'' ସେ କହିଲେ, ''ଅନାଥ ଲୋକଟିକୁ ଏହି ଅବସ୍ଥାରେ ଛାଡ଼ି .... ?

ମୋତେ ପ୍ରବଳ ଭୋକ; ମାତ୍ର ତାଙ୍କ ମହାନ୍ ମାନବବାଦୀ ଚେତନା ପାଖରେ ମୋ ପାଟିକୁ ଆଉ କିଛି ଆସିଲା ନାହିଁ । ମୁଁ ଅଗତ୍ୟା ଚୁପ୍ ରହିଲି । ଏହା ଭିତରେ କେତୋଟି ବସ୍‌କୁ କେଶବବାବୁ ଅଟକାଇବା ପାଇଁ ଚେଷ୍ଟା କରିଲେଣି । ରୋଗୀକୁ ଅନ୍ତତଃ କଟକଯାଏ ନେବାକୁ ଅନୁରୋଧ କରୁଛନ୍ତି । ହେଲେ ଏଭଳି ରୋଗୀକୁ କିଏ ବା ନେବ ? ଡ୍ରାଇଭର ଓ କଣ୍ଡକ୍ଟରଙ୍କ କହିବା ଆଗରୁ ଯାତ୍ରୀମାନେ 'ନାହିଁ ନାହିଁ' ବୋଲି ଗର୍ଜନ କରୁଥା'ନ୍ତି । ଗାଡ଼ି ପରେ ଗାଡ଼ି ଚାଲି ଯାଉଥାଏ ।

କେତେ ବେଳକେ ଖଣ୍ଡେ ସରକାରୀ ଗାଡ଼ି(ଜିପ୍) ତଳଆଡ଼ୁ ଆସିଲା । କେଶବବାବୁ ବହୁ ଅନୁରୋଧ କରି ସେହି ଗାଡ଼ିକୁ ଅଟକାଇଲେ । ଆମେ ଦୁହେଁ ରୋଗୀଟିକୁ ନେଇ କଟକ ଓ.ଏମ୍.ପି. ଛକ ପାଖରେ ପହଞ୍ଚିଲୁ । ସେଠି ଯାହା ଦେଖିଲୁ ଆମର ଆଉ ଭରସା ରହିଲା ନାହିଁ । ମହାମାରୀରେ ଆକ୍ରାନ୍ତ କୁଡ଼ କୁଡ଼ ରୋଗୀ ଅନୁଗୁଳରୁ ଆସି କଟକ ବଡ଼ ଡାକ୍ତରଖାନାରେ ଭର୍ତ୍ତି ହୋଇ ଯାଇଥା'ନ୍ତି । ତଥାପି ରୋଗୀଙ୍କ ପାଇଁ ସ୍ଥାନାଭାବ ହେବାରୁ କଟକ ବଡ଼ ଡାକ୍ତରଖାନା ବାହାରେ ରାଣୀହାଟ ରେଳ ଷ୍ଟେସନ ଠାରୁ ଓ.ଏମ୍.ପି. ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ସେନା ଛାଉଣୀ ଭଳି ଅସ୍ଥାୟୀ ଚିକିତ୍ସା କେନ୍ଦ୍ରମାନ ତମ୍ବୁ ପକାଯାଇ ନିର୍ମାଣ କରାଯାଇଥାଏ । ଯୁଆଡ଼େ ଦେଖିବ ରୋଗୀ ଆଉ ରୋଗୀ । କଟକ ସହର ସଢ଼ି ପଚି ଯାଉଥାଏ । ଭାରି ଭୟ ଭୟ ଲାଗୁଥାଏ । ସେତେବେଳେ ସେଠି ଆମ କଥା ଶୁଣୁଛି କିଏ ? ଯାହାହେଉ ଜଣେ ଡାକ୍ତର ଦେଖା ହୋଇଗଲେ । କେଶବବାବୁଙ୍କର ସେ ଚିହ୍ନା । କେଶବବାବୁଙ୍କ ଅନୁରୋଧ ରକ୍ଷାକରି ସେ ରୋଗୀକୁ ଦେଖିଲେ ଓ ଔଷଧପତ୍ର ଦେଲେ । କେନ୍ଦ୍ରରେ ରଖାଇବାର ବ୍ୟବସ୍ଥା କରାଇଦେଲେ । ଆମେ ଟିକେ ଆଶ୍ୱସ୍ତ ହେଲୁ । ସେଦିନ ମୁଁ ବସ୍‌ରେ ଘରକୁ ଫେରିଆସିଲି । କେଶବବାବୁ ତାଙ୍କ କଟକ ବସା ବା କେଉଁଠି ରହିଲେ ମୋର ମନେ ନାହିଁ ।

ତହିଁ ପରଦିନ । କେଶବବାବୁଙ୍କ ମନ ଲାଗିଥାଏ । ଚିକିତ୍ସା ଛାଉଣୀରେ ପହଁଚି ଯାହା ଦେଖିଲେ, ତାଙ୍କ ଆନନ୍ଦର ସୀମା ରହିଲା ନାହିଁ । ରୋଗୀଟି ଉଠି ନିଜ ବିଛଣାରେ ବସିଛି । ଡାକ୍ତର କହିଲେ, "ଆଉ ତା'ର କିଛି ଭୟ ନାହିଁ, ସେ ଏବେ ଗାଁକୁ ଯାଇ ପାରିବ ।" କେଶବବାବୁ କହୁଥିଲେ — ସେ ଲୋକଟିର ଘର କାଳେ ମାଛଗାଁ ଅଞ୍ଚଳର କେଉଁ ସମୁଦ୍ରକୂଳିଆ ଗାଁରେ ।

କେଶବବାବୁ ଆଜି ନାହାନ୍ତି । ହେଲେ ସେ ଦିନର ଏହି ଘଟଣା ଆଜି ପିଲାମାନଙ୍କୁ କାହାଣୀ ଭଳି ଲାଗୁଥିବ । ସତ କି ମିଛ ବୋଲି ମନରେ ସନ୍ଦେହ ଉଠୁଥିବ । ହେଲେ, ଏ ସବୁ ଅକ୍ଷରେ ଅକ୍ଷରେ ସତ । ସନ୍ଦେହ ଅବିଶ୍ୱାସର ଅବହାଓ୍ୱା ଆମ ମନକୁ ଏତେ ଆଚ୍ଛନ୍ନ କରିଦେଇଛି ଯେ, ସତ କଥାଗୁଡ଼ାକୁ ଏବେ ଆଉ ବିଶ୍ୱାସ କରି ହେଉନାହିଁ । କାରଣ, ଆମେ ଆଜି ଅସତ୍ୟ ଓ ଅବିଶ୍ୱାସର ମାଟି ପାଣି ପବନରେ ବଞ୍ଚିଛୁ ।

ତାଙ୍କ 'ସ୍ମରଣିକା' ପ୍ରକାଶ ଅବକାଶରେ ମୁଁ ମୋର ବୃଦ୍ଧବୟସ୍କ ମସ୍ତିଷ୍କରୁ ବହୁ ଦିନରୁ ସଞ୍ଚିତ ଏହି ପବିତ୍ର ସ୍ମୃତିକୁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଦେଉଅଛି । ତାଙ୍କ ଆତ୍ମା ଚିରଶାନ୍ତି ଲଭୁ ।

*(ପ୍ରୋକ୍ତ ଆଲେଖ୍ୟଟି ଅନାଥବନ୍ଧୁ ପ୍ରଧାନ, କଟକ ଶିକ୍ଷାମଣ୍ଡଳର ଫିଜିକାଲ ଇନ୍‌ସପେକ୍ଟର ତଥା ଗୋପାଳ ସ୍ମୃତି ବିଦ୍ୟାପୀଠର ପୁରାତନ ଖେଳ ଶିକ୍ଷକଙ୍କ ମୁଖନିଃସୃତ ସ୍ମୃତି-ଅଭିବ୍ୟକ୍ତି . ବାର୍ଦ୍ଧକ୍ୟ ପୀଡ଼ାଗ୍ରସ୍ତ ହେତୁ ଏ ସମସ୍ତ ଅନୁଭୂତିକୁ ଲେଖିବାକୁ ଅସାମର୍ଥ୍ୟ ପ୍ରକାଶ କରିବାରୁ 'ପ୍ରହରାଜ ପ୍ରତିଭା ପୂଜା ପରିଷଦ' ତରଫରୁ ତାଙ୍କ ଅନୁଭୂତିକୁ ସଂଗ୍ରହ କରାଯାଇଥିଲା . ଦୁଃଖର କଥା ଯେ; ସଂଗ୍ରହ କରିବାର କିଛି ମାସ ଅନ୍ତେ ପ୍ରଣମ୍ୟ ଅନାଥବନ୍ଧୁ ପ୍ରଧାନଙ୍କର ତା୬.୭.୨୦୦୬ରେ ଦେହାନ୍ତ ହୋଇ ଯାଇଅଛି ।)*

ସଂଗ୍ରାହକ—ଶ୍ରୀ କାଳି ପ୍ରସାଦ ମହାପାତ୍ର, ସଭାପତି ପ୍ରହରାଜ ପ୍ରତିଭା ପୂଜା ପରିଷଦ, ସିଦ୍ଧେଶ୍ୱରପୁର



# ମରିନାହିଁ ସେ ତ ମରଣଜୟୀ

✦ ଅଧ୍ୟାପକ ବେଣୁଧର ମିଶ୍ର

ଆମ ଅଞ୍ଚଳରେ ଶିକ୍ଷାର ପ୍ରସାର ପ୍ରସଙ୍ଗରେ ଆଲୋଚନା କଲାବେଳେ ଯେଉଁ ମହାମନା ନିଃସ୍ୱାର୍ଥପର କର୍ମୀମାନଙ୍କ କଥା ସ୍ୱତଃ ମନକୁ ଆସିଥାଏ, ସେମାନଙ୍କ ମଧ୍ୟରେ ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦଙ୍କ ନାମ ସର୍ବାଗ୍ରଗଣ୍ୟ । ଏଠାରେ ଯେଉଁ ଭୌଗୋଳିକ ଅଞ୍ଚଳ କଥା କୁହାଯାଉଛି, ତାହା କଟକ-ଜଗତ୍‌ସିଂହପୁର ରାସ୍ତାରେ (ସେତେବେଳେ ପାରାଦ୍ୱୀପ ଏକ ଅଜ୍ଞାତ ଅଞ୍ଚଳ ଥିଲା) କନ୍ଦରପୁରକୁ କେନ୍ଦ୍ର କରି ଚତୁର୍ଦ୍ଦିଗରେ ପ୍ରାୟ କୋଡ଼ିଏ ପଚିଶଖଣ୍ଡ ଗ୍ରାମାଞ୍ଚଳକୁ ସୂଚିତ କରୁଅଛି । ଅବଶ୍ୟ ଶଂସିତ ସମୟ ବେଳକୁ କନ୍ଦରପୁରରେ ସ୍ୱର୍ଗତ ହଂସନାଥ ଓତାଙ୍କ ସ୍ଥାପିତ ସାଧାରଣ ପରିଚାଳିତ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଓ ସିଦ୍ଧେଶ୍ୱରପୁରରେ ସେଠାକାର ଜମିଦାର ସ୍ୱର୍ଗତ ନରସିଂହ ପ୍ରହରାଜଙ୍କ ସ୍ଥାପିତ ମଧ୍ୟ ଇଂରାଜୀ ବିଦ୍ୟାଳୟ ଦୁଇଗୋଟି ଆଲୋକ ସ୍ତମ୍ଭ ପରି ଏ ଅଞ୍ଚଳରେ ଶିକ୍ଷାର ପ୍ରସାରରେ କାର୍ଯ୍ୟରତ ଥିଲା । କିନ୍ତୁ ଉଚ୍ଚ ଇଂରାଜୀ ଶ୍ରେଣୀରେ ପିଲାଙ୍କୁ ପଢାଇବା ପାଇଁ ୧୫/୨୦ ମାଇଲ୍ ଦୂରରେ କଟକ ସହରକୁ ଯିବାକୁ ପଡୁଥିଲା, ଯାହା ଏ ଅଞ୍ଚଳର ଅଭିଭାବକମାନଙ୍କ ପକ୍ଷରେ ଆଦୌ ସହଜସାଧ୍ୟ ନ ଥିଲା । ଏହା ପ୍ରାକ୍ ସ୍ୱାଧୀନତା ଓ ସ୍ୱାଧୀନତାର ଠିକ୍ ପରବର୍ତ୍ତୀ ସମୟର ଅବସ୍ଥା ।

ମୋର ମନେପଡ଼େ, ମୁଁ କନ୍ଦରପୁର ପ୍ରାଥମିକ ବିଦ୍ୟାଳୟରେ ଦ୍ୱିତୀୟ ଶ୍ରେଣୀରେ ସ୍କୁଲ ପାଠପଢ଼ା ଆରମ୍ଭ କଲି । ଯାତାୟାତର ବହୁ ଅସୁବିଧା ଥିଲା । ଯଦିଓ ସିଧା ରାସ୍ତାରେ ଆମ ଘରଠାରୁ କନ୍ଦରପୁର ବର୍ତ୍ତମାନ ତିନି କି.ମି. ଦୂର; କିନ୍ତୁ ସେତେବେଳେ, ବିଶେଷକରି ବର୍ଷା ଋତୁରେ ପାଇକା ନଦୀ ପାରହୋଇ ଆମକୁ ପ୍ରତିଦିନ ପାଞ୍ଚ ମାଇଲ ଲେଖାଏଁ ଦଶ ମାଇଲ ରାସ୍ତା ଚାଲି ଚାଲି ସ୍କୁଲକୁ ଯିବାଆସିବା କରିବାକୁ ପଡୁଥିଲା ।

ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦ ସିଦ୍ଧେଶ୍ୱରପୁରର ଜମିଦାରୀ ଖାନଦାନି ବଂଶରେ ଜନ୍ମ ହୋଇଥିଲେ । ସେତେବେଳେ ସରକାରୀ ଚାକିରିରେ ମଧ୍ୟ ସାମିଲ ହୋଇଥିଲେ । ବହୁ ଉଚ୍ଚ ପଦବୀରେ ଭବିଷ୍ୟତରେ ସ୍ଥାପିତ ହେବାର ସମ୍ଭାବନା ଥିଲା । କିନ୍ତୁ ସେ ସବୁର ମାୟାପାଶ ଛିନ୍ନ କରି ଲୋକସେବା ଉଦ୍ଦେଶ୍ୟରେ ସେ ଚାକିରିରୁ ଅବ୍ୟାହତି ନେଇ ଗାଁକୁ ଫେରିଆସିଲେ । ତାଙ୍କର ପାରିବାରିକ ପରିବେଶ ମଧ୍ୟ ତାଙ୍କୁ ଏ ଦିଗରେ ଯଥେଷ୍ଟ ସହାୟତା ପ୍ରଦାନ କରିଥିଲା । ତାଙ୍କର ଧର୍ମପତ୍ନୀ ଜଣେ ଧର୍ମପରାୟଣା ମହିୟସୀ ମହିଳା ଥିଲେ । ରାମଚରିତ ମାନସ ପାରାୟଣ ତାଙ୍କର ନିତ୍ୟନୈମିତ୍ତିକ ଅଭ୍ୟାସ ଥିଲା । ଯୌଥ ପରିବାରକୁ ଆପଣାର ସ୍ନେହ ମମତା ବଳରେ ଏକ ଆନନ୍ଦମୟ ବାତାବରଣ ମଧ୍ୟରେ ସୁରୁଖୁରୁରେ ଚଳାଇ ନେଉଥିଲେ । ତେଣୁ ଚାକିରି ସମୟର ଧରାବନ୍ଧା ଜୀବନରୁ ମୁକୁଳି ଆସି ନନ୍ଦ ମହାଶୟ ସାମାଜିକ ଦାୟବଦ୍ଧତା ପରିପୂରଣ ନିମିତ୍ତ ତାଙ୍କର ସମସ୍ତ ସମୟ ବିନିଯୋଗ କରିବାର ଅପୂର୍ବ ସୁଯୋଗ ଲାଭକଲେ ।

ବ୍ୟକ୍ତିଗତ ଭାବରେ ସେ ଥିଲେ ସ୍ୱଳ୍ପଭାଷୀ ତଥା ମିଷ୍ଟଭାଷୀ । କାହାରି ମନରେ କଷ୍ଟଦେବା ଭଳି କଥା ସେ କେବେ କହିବାର କେହି ମନେ ପକାଇ ପାରିବ ନାହିଁ । ତଥାପି ସେ ଥିଲେ ଦୃଢ଼ମନା । ସିଦ୍ଧେଶ୍ୱରପୁରରେ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିବା ତାଙ୍କର ପ୍ରଥମ ସଂକଳ୍ପ ଥିଲା । ଏହି କାର୍ଯ୍ୟରେ ଅବଶ୍ୟ ସେ ସ୍ଥାନୀୟ କିଛି ଭଦ୍ରବ୍ୟକ୍ତିଙ୍କ ସହାୟତା ଗ୍ରହଣ କରିଥିଲେ । ଅବସରପ୍ରାପ୍ତ ପ୍ରଫେସର ⁄ରତ୍ନାକର ପତିଙ୍କ ସଭାପତିତ୍ୱରେ ଗୋଟିଏ ପରିଚାଳନା ସମିତି ଗଠନ କରି ସେ ଏହି ଦିଗରେ ଅଗ୍ରସର ହେଲେ । କେବେ ଆଉ ପଛକୁ ଫେରି ଚାହିଁ-ନାହାଁନ୍ତି । 'ଚରୈବେତି, ଚରୈବେତି, ଚରନ୍ ଏବ ମଧୁ ବିନ୍ଦତି' ମନ୍ତ୍ରରେ ଦୀକ୍ଷିତ ସ୍ୱର୍ଗତ ନନ୍ଦ ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇ ମଧ୍ୟ ତାଙ୍କର ଉଦ୍ଦେଶ୍ୟ ସାଧନରେ ସଫଳକାମ ହୋଇପାରିଛନ୍ତି ।

'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ର ପ୍ରଣେତା ପ୍ରଥିତଯଶା ସୁସାହିତ୍ୟିକ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଅମ୍ଳାନ ସ୍ମୃତିରେ 'ଗୋପାଳ ସ୍ମୃତି ବଦ୍ୟାପୀଠ' ନାମରେ ଉଚ୍ଚ ଇଂରାଜୀ ବିଦ୍ୟାଳୟଟି ଆରମ୍ଭ ହେଲା ଲକ୍ଷ୍ମୀଧର ମଧ୍ୟ ଇଂରାଜୀ ବଦ୍ୟାଳୟ ପରିସରରେ । ମଧ୍ୟଇଂରାଜୀ ବିଦ୍ୟାଳୟର ଶ୍ରେଣୀଗୃହ ଓ କାର୍ଯ୍ୟାଳୟ ପୁରୁଣା

କାଳର ବଙ୍ଗଳା ଭଳି ଏକ ଘରେ ଗଲୁଥିଲା । ସେ ଘରକୁ ଦେଖିଲେ ଯେ କୌଣସି ଲୋକର ମନରେ ଏକ ଗୁରୁଗମ୍ଭୀର ଭାବ ସୃଷ୍ଟି ହେଉଥିଲା । ଏବେ ଅବଶ୍ୟ ସେ ଘର ଆଉ ନାହିଁ । ନୂଆ ଶ୍ରେଣୀଗୃହ ତୋଳିବା ଆଳରେ ସେହି ଐତିହ୍ୟପୂର୍ଣ୍ଣ ମହିମାବିମଣ୍ଡିତ ଗୃହକୁ ଧୂଳିସାତ୍ କରିଦିଆଯାଇଛି ।

ବିଦ୍ୟାଳୟ ଏକ ମନ୍ଦିର । ଏହାର ସୁପରିଚାଳନା ପାଇଁ ଉପଯୁକ୍ତ ଶିକ୍ଷକ ଚୟନ ଏକ ସୁକଠିନ ବ୍ୟାପାର । ଏ ଦିଗରେ ସ୍ୱର୍ଗତ ନନ୍ଦ ଖୁବ୍ ସତର୍କତାର ସହ କାର୍ଯ୍ୟ ସଂପାଦନ କରିଥିଲେ । ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ ଶ୍ରୀଯୁକ୍ତ ଭବାନୀଶଙ୍କର ପ୍ରହରାଜ, ଶ୍ରୀଯୁକ୍ତ ବଟକୃଷ୍ଣ ମିଶ୍ର, ଶ୍ରୀଯୁକ୍ତ ନଟବର ସାହୁ, ଶ୍ରୀଯୁକ୍ତ ନିଶାକର ଦାସ, ଶ୍ରୀଯୁକ୍ତ ଅନାଥବନ୍ଧୁ ପ୍ରଧାନ ପ୍ରମୁଖ ସୁଶିକ୍ଷିତ, ଆଦର୍ଶବାଦ୍ ତଥା ନିଃସ୍ୱାର୍ଥପର ଯୁବଗୋଷ୍ଠୀ ଅନ୍ୟ କୌଣସି ଚାକିରି ଅପେକ୍ଷା ଶିକ୍ଷାଦାନକୁ ଜୀବନର ବ୍ରତ ହିସାବରେ ଗ୍ରହଣ କରିଥିଲେ । ସପ୍ତମ ଶ୍ରେଣୀ ବୃତ୍ତି ପରୀକ୍ଷା ଦେବାପାଇଁ ବଟ ସାର୍ ମୋତେ ତାଙ୍କର ନିଜ କୋଠରିରେ ବାସସ୍ଥାନ ଦେଇ ପାଠ ପଢ଼ାଉଥିଲେ । ମାଟ୍ରିକ ପରୀକ୍ଷା ପୂର୍ବରୁ ଭବାନୀସାର୍ ମୋତେ ଓ ଆଉ କେତେଜଣ ସହପାଠୀଙ୍କୁ ବିନା ପାରିଶ୍ରମିକରେ ବିଜ୍ଞାନ, ଗଣିତ ଓ ଇଂରାଜୀ ବିଷୟ ତାଙ୍କ ଘରେ ସ୍କୁଲ ସମୟ ବାହାରେ ପଢ଼ାଉଥିଲେ । ଦଶହରା ଛୁଟିରେ ସ୍କୁଲ ମେସ୍ ବନ୍ଦ ହୋଇଯିବାରୁ ତାଙ୍କ ଘରେ ମୋର ଦୁଇଓଳି ଖାଇବାର ବ୍ୟବସ୍ଥା କରିଥିଲେ । ଏବେ ଏସବୁ ସ୍ୱପ୍ନର ବିଷୟ । ଏଭଳି ଶିକ୍ଷକ କୋଟିକରେ ଗୋଟିଏ ମିଳିବା ଅସମ୍ଭବ । ଏସବୁ ମୂଳରେ ପ୍ରେରଣାଦାୟକ ଥିଲେ କେଶବବାବୁ । ସ୍ୱର୍ଗତ ନନ୍ଦଙ୍କୁ ପ୍ରାୟ ସମସ୍ତେ ଶ୍ରଦ୍ଧାର ସହିତ ଏହି ନାମରେ ଡାକୁଥିଲେ ।

ପ୍ରଧାନ ଶିକ୍ଷକ ଚୟନରେ ମଧ୍ୟ ସେ ଥିଲେ ଖୁବ୍ ସାବଧାନ । କାରଣ ସେ ହେଉଛନ୍ତି ଶିକ୍ଷାଳୟର ନେତା ଓ ଆଦର୍ଶ । ଆମ ସମୟର ଅନେକ ପ୍ରଧାନ ଶିକ୍ଷକଙ୍କ ମଧ୍ୟରୁ ଶ୍ରୀଯୁକ୍ତ ନୃସିଂହ ଚରଣ କାନୁନ୍‌ଗୋଙ୍କ ପ୍ରଧାନ ଶିକ୍ଷକତା ସମୟରେ ବିଦ୍ୟାଳୟରେ ଏକ ଅଭୂତପୂର୍ବ ପରିବର୍ତ୍ତନ ସୃଷ୍ଟି ହେଲା । ବିଦ୍ୟାଳୟ ପରିସରରେ ପ୍ରବେଶ ମାତ୍ରେ ପିଲାମାନେ ଏଣେତେଣେ ନଯାଇ ଗୋଟିଏ ଧାଡ଼ିରେ ଶ୍ରେଣୀଗୃହକୁ ଯାଉଥିଲେ । ବିଦ୍ୟାଳୟ ମଧ୍ୟରେ ସଂପୂର୍ଣ୍ଣ ନୀରବତା ରାଜୁତି କରୁଥିଲା । କେଶବବାବୁଙ୍କ ନିର୍ଦ୍ଦେଶରେ ତାଙ୍କରି ପିଲାମାନେ ବିଦ୍ୟାଳୟରେ ଏକ ନୂଆ ପଦ୍ଧତି

ଆରମ୍ଭ କଲେ । ବିଦ୍ୟାଳୟରେ ପ୍ରବେଶ କଲାବେଳେ ଓ ଛୁଟି ହୋଇଯିବାବେଳେ ଧାଡ଼ିରେ ଆସି ପ୍ରତ୍ୟେକ ପିଲା ଶ୍ରୀଯୁକ୍ତ କାନୁନ୍‌ଗୋଙ୍କ ପାଖରେ ନତଜାନୁ ପ୍ରଣାମ କରୁଥିଲେ । କ୍ରମେ ସବୁପିଲା ସମାନ ଆଚରଣ କଲେ । ସାର୍ ଖଣ୍ଡେ Easy chairରେ ତାଙ୍କ କୋଠରି ସାମନା ବାରଣ୍ଡାରେ ବସିଥା'ନ୍ତି । ପିଲାମାନେ ଜଣକ ପରେ ଜଣେ ପ୍ରଣାମକରି ଯାଉଥା'ନ୍ତି । ଗ୍ରରିଆଡ଼େ ନୀରବ ନିସ୍ତବ୍ଧ । ସେ ଦୃଶ୍ୟ ମନେପଡ଼ିଲେ ଏବେ ମଧ୍ୟ ହୃଦୟରେ ଆବେଗ ସୃଷ୍ଟି ହୁଏ । ଏହାର ମୂଳରେ ଥିଲା କେଶବବାବୁଙ୍କ ଦୂରଦୃଷ୍ଟି ଓ ପ୍ରେରଣା ।

ଏମିତି ଲେଖିବସିଲେ କେଶବବାବୁଙ୍କ ବିଷୟରେ ଅନେକ କଥା ମନକୁ ଆସେ । 'ଧାର ପାଣି ପଥର କାଟେ' ଭଳି ଏହି ମିଷ୍ଟଭାଷୀ ବ୍ୟକ୍ତିଙ୍କ ଦୂରଦୃଷ୍ଟି, ମନୋବଳ ଓ ଆଦର୍ଶସମ୍ପନ୍ନ ଚିନ୍ତାଧାରା ଯେ କେତେ ଦୂର ପ୍ରଭାବ ବିସ୍ତାର କରିପାରେ ତାହା କେବଳ ତାଙ୍କୁ ଅତି ନିକଟରୁ ଦେଖିଥିବା ଲୋକେ ହିଁ ଅନୁଭବ କରି-ପାରିବେ । ତେବେ ତାଙ୍କରି ପ୍ରଚେଷ୍ଟାରେ ବିଦ୍ୟାଳୟଟି କ୍ରମଶଃ ଏକ ଆଦର୍ଶ ଶିକ୍ଷାନୁଷ୍ଠାନରେ ପରିଣତ ହୋଇପାରିଥିଲା ।

ସମୟକ୍ରମେ ଗୋପାଳ ସ୍ମୃତି ବିଦ୍ୟାପୀଠ ଏକ ସରକାରୀ ଅନୁଷ୍ଠାନରେ ପରିଣତ ହୋଇଗଲା । ତା'ପରେ କେଶବବାବୁ ନୀରବରେ ବସି ରହି ନ ଥିଲେ । ଆରମ୍ଭ କଲେ ଅଥଙ୍ଗାରେ ଏକ ବାଳିକା ବିଦ୍ୟାଳୟ । ଝିଅ ପିଲାଙ୍କ ପାଇଁ ଶିକ୍ଷାଳୟଟିଏ ଆରମ୍ଭ କଲାବେଳକୁ ନାନା ଲୋକ ନାନା କଥା କହିଲେ । ବହୁତ ସମାଲୋଚନା ହେଲା । କିନ୍ତୁ ସେ ତାଙ୍କ ଲକ୍ଷ୍ୟରେ ଅଟଳ ଥିଲେ । କେବେହେଲେ ପଛକୁ ଫେରି ଗ୍ରହିଁନାହାନ୍ତି । ବହୁ ବାଧାବିଘ୍ନ ସତ୍ତ୍ୱେ ସେ ବିଦ୍ୟାଳୟଟି ଏବେ ଏକ ସରକାରୀ ଅନୁଷ୍ଠାନରେ ପରିଣତ ହୋଇପାରିଛି ।

ଏତିକିରେ ତାଙ୍କର ଉଦ୍‌ଯୋଗୀ ମନ ଶାନ୍ତ ହୋଇ ପାରି ନ ଥିଲା । ସେ ଆରମ୍ଭ କଲେ ଉଚ୍ଚଶିକ୍ଷା ପାଇଁ ଆଉ ଗୋଟିଏ ଅନୁଷ୍ଠାନ— କନ୍ଦରପୁର ମହାବିଦ୍ୟାଳୟ । ତା'ର ପ୍ରସ୍ତୁତିପର୍ବ ଆରମ୍ଭ ହୋଇଥିଲା ଏକ ସାଧାରଣ ସଭାରେ, ଯେଉଁଥିରେ ମୁଁ ମଧ୍ୟ ସାମିଲ ଥିଲି । କନ୍ଦରପୁର ପ୍ରାଥମିକ ବିଦ୍ୟାଳୟ ପ୍ରାଙ୍ଗଣରେ ଅନୁଷ୍ଠିତ ସେଇ ସଭାରେ ମହାବିଦ୍ୟାଳୟ ପ୍ରତିଷ୍ଠା କରିବାର ଯେଉଁ ବୀଜ ବପନ କରାଯାଇଥିଲା, ତା'ର ଫଳଶ୍ରୁତି ରୂପେ ଆଜିର ସରକାରୀ ଅନୁଦାନପ୍ରାପ୍ତ 'କନ୍ଦରପୁର

କଲେଜ' ନିଜ ଶୈଳୀରେ ମୁଣ୍ଡ ଟେକି ଠିଆ ହୋଇଛି । କଲେଜ ଚାଲିବାର କିଛିଦିନ ପରେ କୌଣସି ଏକ ପରିସ୍ଥିତିରେ କେଶବବାବୁ ସଂପାଦକ ଦାୟିତ୍ୱରୁ ଅବ୍ୟାହତି ନେଇନେଲେ । ନୂତନ ପରିଚାଳକମାନେ ସେମାନଙ୍କ ନିଜସ୍ୱ ଢ଼ଙ୍ଗରେ ମହାବିଦ୍ୟାଳୟର ପରିଚାଳନା କରିବାକୁ ଲାଗିଲେ । ତଥାପି ପ୍ରତିଷ୍ଠାତା ଓ ସଂପାଦକ ଭାବରେ ସେ ଯେତିକି କରିଯାଇଥିଲେ, ସେଇ ଭୂମି ଉପରେ ଅନୁଷ୍ଠାନଟି ନିଜ ଲକ୍ଷ୍ୟରେ ଆଗେଇ ଚାଲିଛି ।

ଶିକ୍ଷା ଏକ ସାମାଜିକ ମୂଳଧନ । ଏହାର ଆବଶ୍ୟକତା ହୃଦୟଙ୍ଗମ କରି କେଶବବାବୁ ଏ ଅଞ୍ଚଳରେ ଯେତିକି କାର୍ଯ୍ୟ କରିଯାଇଛନ୍ତି, ତାହା ତାଙ୍କୁ ଚିରଦିନ ପାଇଁ ସ୍ମରଣୀୟ କରି ରଖିବ । ତାଙ୍କ ତିରୋଧାନର ବର୍ଷପୂର୍ତ୍ତି ଅବସରରେ ଗୋଟିଏ କଥା ମନକୁ ଆସୁଛି ଯେ ଆଜି ସେ ପାର୍ଥିବ ଶରୀରରେ ବିଦ୍ୟମାନ ନ ଥିଲେ ମଧ୍ୟ ତାଙ୍କ ହାତଗଢ଼ା ଏଇ ଶିକ୍ଷାନୁଷ୍ଠାନଗୁଡ଼ିକ ତାଙ୍କର ସ୍ମୃତି ସବୁଦିନ ପାଇଁ ବହନ କରି ରହିଥିବ । ଲୌକିକ ଦୃଷ୍ଟିରୁ ସେ ମରି ଯାଇଥିଲେ ମଧ୍ୟ ଆଜି ମରଣଜୟୀ ନ୍ୟାୟରେ ଚିରଭାସ୍ୱର ଅଛନ୍ତି ଓ ରହିଥିବେ ମଧ୍ୟ ।

*ଦାମୋଦରପୁର, କଟକ*





ନିମସାହି-କଟକ ସ୍ୱଗୃହରେ ସ୍ୱର୍ଗତ କେଶବଚନ୍ଦ୍ର ନନ୍ଦଙ୍କ ମରଶରୀର
ନିକଟରେ ଉପସ୍ଥିତ ପୁଅ ଏବଂ ପୁତୁରାମାନେ



ଗ୍ରାମ କମାପୁର ପୈତୃକ ବାସଗୃହ ସମ୍ମୁଖରେ
ସ୍ୱର୍ଗତ କେଶବ ଚନ୍ଦ୍ର ନନ୍ଦଙ୍କର ମର-ଶରୀର ନିକଟରେ
ଉପସ୍ଥିତ ପୁଅ, ପୁତୁରା ଏବଂ ଗ୍ରାମବାସୀ